# ସ୍ମୃତିର ଝଲକ

ଇଂ. ଗୌରଚନ୍ଦ୍ର ମହାପାତ୍ର



ରେଣୁବାଳା ପ୍ରକାଶନୀ
ଢେଙ୍କାନାଳ

# ସ୍ମୃତିର ଝଲକ (ଭ୍ରମଣ କାହାଣୀ)

ଲେଖକ :
ଇଂ. ଗୌରଚନ୍ଦ୍ର ମହାପାତ୍ର
୧୮୪(ଏଫ୍), ଜୟଦୁର୍ଗା ନଗର,
ଭୁବନେଶ୍ୱର-୭୫୧୦୦୭
ଭ୍ରାମ୍ୟମାଣ ଦୂରଭାଷ-
୯୪୩୭୨୩୮୩୫୦

ପ୍ରଥମ ପ୍ରକାଶ : ୨୦୧୦

ପ୍ରକାଶକ :
ରେଣୁବାଳା ପ୍ରକାଶନୀ
ଜୟଗୋପାଳ ସାହି, ଢେଙ୍କାନାଳ
ଭ୍ରାମ୍ୟମାଣ ଦୂରଭାଷ-
୯୮୬୧୪୩୩୯୩୦

ମୁଦ୍ରଣ :
ସଂସାର ପ୍ରେସ୍
ତଳତେଲେଙ୍ଗା ବଜାର,
କଟକ-୯
ଦୂରଭାଷ : ୨୪୨୦୦୭୫,
୨୪୨୨୫୯୭

ପ୍ରଚ୍ଛଦ : ପ୍ରଭାକର

ମୂଲ୍ୟ : ୧୦୦ ଟଙ୍କା

SMRUTIRA JHALAK

*Writer:*
**Er. Goura Chandra Mahapatra**
184 F, Jayadurga Nagar,
Bhubaneswar-751007
Mob: 91-9437238350

*First Edition:* 2010

*Published by:*
**Renubala Prakashani**
Jayagopal Sahi
Dhenkanal
Mob: 91-9861433930

*Printed at:*
Sansar Press
Talatelenga Bazar, Cuttack-9
Phone-2420075, 2422597

*Cover design*: Pravakar

**Price: Rs. 100.00**

# ଉତ୍ସର୍ଗ

ସ୍ୱର୍ଗତ ବୃନ୍ଦାବନ ଚନ୍ଦ୍ର ମହାପାତ୍ର- ପତ୍ନୀ ଉଷାରାଣୀ ମହାପାତ୍ର,
ସ୍ୱର୍ଗତ ଗୋକୁଳଚନ୍ଦ୍ର ମହାପାତ୍ର - ପତ୍ନୀ ସରୋଜିନୀ ମହାପାତ୍ର,
ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର- ପତ୍ନୀ ଗତିରାଣୀ ମହାପାତ୍ର,
ଏହି ଭାଇନା ଓ ଭାଉଜମାନଙ୍କର ସଦିଚ୍ଛା ଏବଂ
ପ୍ରେରଣାକୁ ପାଥେୟ କରି ସାହିତ୍ୟସେବାରେ ଆଗେଇଛି ।

ମୋର ଅନ୍ତରର କୃତଜ୍ଞତା ଜଣାଇବା ସହ
'ସ୍ମୃତିର ଝଲକ' ପୁସ୍ତକ ସଂକଳନକୁ
ସେମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରୁଅଛି ।

--ଲେଖକ

# ଅଭିମତ

ଇଂ. ଗୌରଚନ୍ଦ୍ର ମହାପାତ୍ର ଭାରତର ଅନେକ ତୀର୍ଥସ୍ଥାନ ତଥା ଦର୍ଶନୀୟ ସ୍ଥାନ ବୁଲି ଆସିବା ପରେ ନିଜର ଅଭିଜ୍ଞତାକୁ ନେଇ 'ସ୍ମୃତିର ଝଲକ' ପୁସ୍ତକଟି ରଚନା କରିଛନ୍ତି । ଭ୍ରମଣ କାହାଣୀ ଉପରେ ଆଧାରିତ ଏହି ପୁସ୍ତକଟି ପାଠକଙ୍କ ପାଇଁ ବେଶ୍ ରୁଚିକର ହୋଇଛି । ଭାଷା ଅତୀବ ସରଳ ହୋଇଥିବା ବେଳେ ବର୍ଣ୍ଣନା ଚାତୁରୀ ମଧ୍ୟ ପ୍ରାଞ୍ଜଳ ହୋଇଛି । ଛାତ୍ରଛାତ୍ରୀଙ୍କ ଜ୍ଞାନାର୍ଜନ ଓ ପର୍ଯ୍ୟଟକଙ୍କ ପଥ ପ୍ରଦର୍ଶନ ପାଇଁ ଏହା ଏକ ଉପାଦେୟ ପୁସ୍ତକ । ଲେଖକଙ୍କ ସଫଳତା କାମନା କରିବା ସହ ପୁସ୍ତକଟି ସମସ୍ତଙ୍କ ଆଦରଣୀୟ ହେବ ବୋଲି ଆଶା କରୁଅଛି ।

ଡକ୍ଟର ନିଶାମଣି ମିଶ୍ର

'ଆଲେଖିକା'
ଶହୀଦ ନଗର, ଭୁବନେଶ୍ୱର



ବାଳକୃଷ୍ଣ ସାହିତ୍ୟ ସଂସଦ ପକ୍ଷରୁ ଓଡ଼ିଶା ଗୌରବ ସମ୍ମାନରେ ସମ୍ମାନିତ ।
ଅଭିନନ୍ଦନ ଗାର୍ଡ଼େନ, ଢେଙ୍କାନାଳ



ସାହିତ୍ୟ ପତ୍ରିକା 'ବିଭାବନା' ପକ୍ଷରୁ ଶ୍ରୀ ମହାପାତ୍ର ଓ ତାଙ୍କ ସହଧର୍ମିଣୀ
ଶ୍ରୀମତୀ ଶୈଳବାଳା ମହାପାତ୍ର ଯୁଗଳବନ୍ଦୀ ସମ୍ମାନରେ ସମ୍ମାନିତ।
ଗଡ଼ଗଡ଼ିଆ ଘାଟ, ଢେଙ୍କାନାଳ।

# ନିଜକଥା

ଜୀବନରେ ଅନେକ ଦର୍ଶନୀୟ ସ୍ଥାନ ଭ୍ରମଣ କରିବାର ସୁଯୋଗ ପାଇଛି । ପରିବାରବର୍ଗଙ୍କ ସହ ଭ୍ରମଣ କଲାବେଳେ ବହୁ ଭିନ୍ନ ଭାଷାଭାଷୀ ଲୋକଙ୍କ ସଂପର୍କରେ ଆସିଛି । ଦେବାଦେବୀ ମନ୍ଦିର ଓ ଦର୍ଶନୀୟ ସ୍ଥାନଗୁଡ଼ିକ ଦେଖି ପ୍ରତ୍ୟକ୍ଷ ଅନୁଭୂତି ଲାଭ କରିଛି । ସମସ୍ତ ସ୍ମୃତିରୁ କିଛି ସ୍ମୃତି ହୃଦୟରେ ଗଭୀର ରେଖାପାତ କରିଛି । ସେଥିରୁ କିଛି "ସ୍ମୃତିର ଝଲକ" ହୋଇ ମନ ପରଦାର ବାହାରକୁ ଆସିଛି । ତାକୁ ବାନ୍ଧି ରଖିବାକୁ ଚେଷ୍ଟା କରିଛି ମୋର ଭ୍ରମଣ କାହାଣୀ, "ସ୍ମୃତି ଝଲକ"ରେ । ପାଠକମାନେ ସହୃଦୟତାର ସହ ପୁସ୍ତକଟି ପାଠ କରି ଏହି ଦର୍ଶନୀୟ ସ୍ଥାନଗୁଡ଼ିକର ମହନୀୟତା ଉପଲବ୍ଧି କରିବେ ବୋଲି ବିଶ୍ୱାସ । କିଛି ଦୋଷତ୍ରୁଟି ଥିଲେ ଦର୍ଶାଇ ଦେଲେ ଉପକୃତ ହେବି ।

"ସ୍ମୃତିର ଝଲକ" ପୁସ୍ତକ ପ୍ରକାଶନରେ ମୋର ଧର୍ମପତ୍ନୀ ଶ୍ରୀମତୀ ଶୈଳବାଳା ମହାପାତ୍ର ଓ ବିଭାବନାର ସଂପାଦକ ଶ୍ରୀ ମନୋରଞ୍ଜନ ନନ୍ଦ ପ୍ରତ୍ୟକ୍ଷ ଭାବରେ ସହଯୋଗ କରିଛନ୍ତି । 'ରେଣୁବାଳା ପ୍ରକାଶନୀ'ର ପ୍ରକାଶିକା ଶ୍ରୀମତୀ ରେଣୁବାଳା ନନ୍ଦ ପ୍ରକାଶନ ଦାୟିତ୍ୱ ସୂଚାରୁ ରୂପେ ପରିଚାଳନା କରିଛନ୍ତି । ସମସ୍ତଙ୍କୁ ମୋର ଅନ୍ତରର ଗଭୀରତମ ପ୍ରଦେଶରୁ କୃତଜ୍ଞତା ଜଣାଉଛି ।

ମୋର ଏହି କାମ ପାଇଁ ମୋର ଭାଇମାନେ, ତାଙ୍କର ସ୍ତ୍ରୀମାନେ, ପୁଅ-ବୋହୂ, ଝିଅ-ଜ୍ୱାଇଁ, ପୁତୁରା-ପୁତୁରାବୋହୂ, ଝିଆରୀ-ଝିଆରୀଜୋଇଁ ମାନଙ୍କର ଅକୁଣ୍ଠ ସହଯୋଗ ପାଇଛି--ଏଥିପାଇଁ ସମସ୍ତଙ୍କୁ ଧନ୍ୟବାଦ ଜଣାଉଛି ।

ଇଂ ଗୌରଚନ୍ଦ୍ର ମହାପାତ୍ର

# ଏଥିରେ ଅଛି....





# ପୂର୍ବାଭାସ

ମୋର ପୁଅ ଶ୍ରୀମାନ ଦେବାଶିଷ ମହାପାତ୍ର ମୁମ୍ବାଇ ବ୍ୟାଙ୍କରେ କାର୍ଯ୍ୟରତ ଥିବାବେଳେ ଆମ ଦୁଇଜଣ (ସ୍ୱାମୀ-ସ୍ତ୍ରୀ)ଙ୍କୁ ମୁମ୍ବାଇ ଯିବାପାଇଁ ଘନ୍‌ଘନ ଫୋନ୍ କରୁଥିଲା । ତା'ର କଥା ମାନି ମୁଁ ଏବଂ ମୋର ସ୍ତ୍ରୀ ଶ୍ରୀମତୀ ଶୈଳବାଳା ମହାପାତ୍ର ମୁମ୍ବାଇ ଯାଇଥିଲୁ । ସେଠାରେ ରହିଥିବା ସମୟରେ ମୁମ୍ବାଇର ସମସ୍ତ ଦର୍ଶନୀୟ ସ୍ଥାନ ଦେଖିଲୁ । ତା' ପରେ ଶିରିଡ଼ି ସାଇବାବାଙ୍କୁ ଦର୍ଶନ କରିଥିଲୁ । ପୁଅ, ବୋହୂ, ନାତି ସହିତ ପୁନଶ୍ଚ ଔରଙ୍ଗାବାଦ ଯାଇଥିଲୁ । ସେ ସବୁ ଏବେ ସ୍ମୃତିପଟରେ ଝଲକୁଛି ।

ତା'ର ଦୁଇବର୍ଷ ପରେ ଦକ୍ଷିଣ ଭାରତର କିଛି ଦର୍ଶନୀୟ ସ୍ଥାନ ପରିଭ୍ରମଣରେ ଯାଇ ମନରେ ବହୁତ ଆନନ୍ଦ ଆସିଥିଲା । ଏହାପରେ ମୋର ସାନଝିଅ ଏବଂ ସାନଜ୍ୱାଇଁଙ୍କର ବଦଳି ହୋଇଗଲା ଆରବ ସାଗର ଉପକଣ୍ଠ କର୍ଣ୍ଣାଟକର କାରବାର ନୌସେନାକୁ । ସେମାନଙ୍କ ପାଖକୁ ଯିବାକୁ ପତ୍ନୀଙ୍କର ଅହେତୁକ ଜିଜ୍ଞାସା ଥିଲା; କିନ୍ତୁ ଭୁବନେଶ୍ୱରରେ ମୋର ଗୋଟିଏ ବହି "ଅସ୍ତିତ୍ୱରେ ଅଶିକ୍ଷିତା" ପ୍ରକାଶ ପାଇଥିଲା ୧୦/୬/୦୯ ତାରିଖରେ । ଏହି ଉଦ୍‌ଘାଟନୀ ଉତ୍ସବରେ ମୋର ପରିବାରର ସମସ୍ତ ସଦସ୍ୟ ଯୋଗ ଦେଇଥିଲେ । ସମସ୍ତେ ବହୁତ ଖୁସି ହୋଇଥିଲେ । ମୋର ସ୍ତ୍ରୀଙ୍କ ଇଚ୍ଛାରେ ଆମେମାନେ କାରବାର ଯିବାକୁ ମନସ୍ଥ କରିଥିଲୁ ।

ସେଥିପାଇଁ ୧୧/୬/୦୯ରେ ପ୍ଲେନ୍ ଟିକେଟ୍ ଆଗରୁ କରାଯାଇଥିଲା ଓ ଆମେ ଯିବାକୁ ପ୍ରସ୍ତୁତ ହୋଇଥିଲୁ ।



## ଯାତ୍ରା ଆରମ୍ଭ

### (ପଶ୍ଚିମ ଘାଟରେ ଆରବସାଗର କୂଳରେ ଥିବା କାରବାର(ନୌସେନା ଘାଟି)କୁ ଯାତ୍ରା

ଭୁବନେଶ୍ୱର ବିମାନଘାଟୀକୁ ଆସିଥିଲୁ ଦିନ ୮.୪୫ ମିନିଟ୍‌ରେ ୧୧.୬.୦୯ ତାରିଖ ଦିନ। ସକାଳୁ ସମସ୍ତ ନିତ୍ୟକ୍ରମ ସାରି ଜଳଖିଆ କରି ଦେଇଥିଲୁ। ମୁଁ ଏବଂ ମୋର ସ୍ତ୍ରୀ ଶୈଳବାଳା ମହାପାତ୍ର ପୁଅ-ବୋହୂ ଓ ନାତି ସାଥିରେ ବିମାନଘାଟୀକୁ ଆସିଥିଲୁ। ଦେବାଶିଷ (ପୁଅ)ର ଅଫିସ ଥିବାରୁ ଆମ ଦୁଇଜଣଙ୍କୁ କାର୍‌ରେ ଆଣି ବିମାନଘାଟୀ ପାଖରେ ଛାଡ଼ିଦେଇଗଲା। ଆମେଦୁହେଁ ଦୁଇଟି ଲଗେଜ୍‌କୁ ଧରି ବିମାନଘାଟୀର ପ୍ରବେଶ ଦ୍ୱାରରେ ଆସୁଥିବା ଝିଅ-ଜ୍ୱାଇଁ, ନାତୁଣୀମାନଙ୍କୁ ଅପେକ୍ଷା କଲୁ। ସେମାନେ ମଧ୍ୟ ଆସି ୯.୨୦ ମିନିଟ୍ ମଧ୍ୟରେ ପହଞ୍ଚିଗଲେ। ବାପି ତାଙ୍କର କାର୍‌ରେ ଆଣି ତାଙ୍କୁ ଛାଡ଼ି ଦେଇଗଲେ।

ଆମେମାନେ ବିମାନ ଯିବା ପ୍ରବେଶ ପଥ ଦେଇ ଭିତରେ ଆସି ପହଞ୍ଚିଲୁ। ଆମର ବମ୍ବେ ଯିବା ଟିକେଟ୍ ସବୁ ଚେକ୍ ସରିଗଲା। କିଙ୍ଗ୍ ଫିସର୍‌ରେ ଆମର ଟିକେଟ୍ ହୋଇଥିଲା। ଜଣ ପିଛା ଗୋଆକୁ ୭୬୬୦ ଟଙ୍କା ପଡ଼ିଥିଲା। ସିକ୍ୟୁରିଟି ଚେକ୍ ପରେ ଆମେମାନେ ଯାଇ ଉଦ୍ଦିଷ୍ଟ ହଲ୍‌ରେ ଅପେକ୍ଷା କଲୁ। ବିମାନଟି ପ୍ରାୟ ଠିକ୍ ସମୟରେ ଆସି ଅବତରଣ କଲା। ମୋର ଜ୍ୱାଇଁ ଶ୍ରୀମାନ୍ ଶିବପଦ ରଥ, ଝିଅ ସ୍ମିତା ରଥ, ସ୍ତ୍ରୀ ଶୈଳବାଳା, ନାତୁଣୀ ଦୁଇଜଣ ଶ୍ରେଷ୍ଠା ରଥ ଏବଂ ଶ୍ରେୟସୀ ରଥ ବିମାନ ମଧ୍ୟକୁ ପ୍ରବେଶ କଲୁ। ମୋର ଜୀବନର ଏହା ହେଉଛି ଦ୍ୱିତୀୟ ବିମାନ ଯାତ୍ରା। ପ୍ରଥମଥର ଆମେ କଲିକତାରୁ ଗୌହାଟୀ ଯାଇଥିଲୁ ସିଲଂ ଯିବା ଉଦ୍ଦେଶ୍ୟରେ। ଏଥର ଗୋଆ ଯାଉଛୁ ବିମାନରେ ବସି। ଆକାଶର ମେଘମାଳା

ଭିତର ଦେଇ ବିମାନ ଆଗେଇ ଯାଉଥିବାର ମନୋମୁଗ୍ଧକର ଅନୁଭବ ମାନସପଟକୁ ଆନନ୍ଦ ଯୋଗାଉଥିଲା । ମୁଁ ଆଉ ମୋର ସ୍ତ୍ରୀ ଆଗପଟ ସିଟ୍‌ରେ ଏବଂ ମୋର ନାତୁଣୀମାନେ ପଛ ସିଟ୍‌ରେ ବସି ବିମାନରେ ଆକାଶରେ ଉଡ଼ିଯିବାର ଅନୁଭୂତିକୁ ଉପଭୋଗ କରୁଥିଲେ ।

ଭୁବନେଶ୍ୱରରୁ ୧୦.୩୦ ମିନିଟ୍‌ରେ ବିମାନ ଛାଡ଼ିଲା ସୁନ୍ଦର ଚକ୍କର ଦେଇ। ଆମେମାନେ ବେଲ୍‌ଟ ପିନ୍ଧିଲୁ । ତଳକୁ ଚାହିଁଲୁ, ଆକାଶକୁ ଚାହିଁଲୁ । ସେଥିରେ କିଛି ଭାବ ତରଙ୍ଗ ଉଠିଥିଲା । ଆମେ ଆକାଶରେ ଉଡୁଛୁ, ମେଘମାନଙ୍କ ସହିତ ଖେଳି ଖେଳି ଯାଉଛୁ । ମନରେ ଶିହରଣ ଆସୁଥାଏ । ସୁନ୍ଦର ଝିଅଗୁଡ଼ିକ ଆମମାନଙ୍କର ଯତ୍ନ ନେବାପାଇଁ ଆଗେଇ ଆସୁଥା'ନ୍ତି । ସେମାନେ ହେଉଛନ୍ତି ଏୟାର୍‌ହୋଷ୍ଟେସ୍ । ଖାଇବା ପାଇଁ ବ୍ରେକ୍‌ଫାଷ୍ଟ୍ ଦେଲେ । ମଧୁର ବ୍ୟବହାର । ପ୍ୟାକେଟ୍ ଖୋଲିଲି ଖାଇବା ପାଇଁ, ଭୋକ ହେଉଥିଲା । ଗୋଟିଏ ସୁସଜ୍ଜିତ ପ୍ୟାକେଟରେ ଥିଲା ଗୋଟିଏ ଆଳୁଚପ୍, ତା' ସହିତ ତରକାରୀ ଏବଂ ଅନ୍ୟରେ କିଛି ଗୋଟା ମୁଗକୁ ସୁନ୍ଦର ଭାବରେ ତିଆରି କରି ଚୋବାଇବା ଖାଦ୍ୟ ଏବଂ ଗୋଟିଏ କପ୍‌ରେ କିଛି ସ୍ୱାଦିଷ୍ଟ ଖିରି ଜାତୀୟ ପଦାର୍ଥ । ଆନନ୍ଦରେ ଖାଇଦେଲୁ । ପାଣି ପିଇଲୁ । ବିମାନଟି ୧୨.୩୦ ମିନିଟ୍‌ରେ ପହଞ୍ଚିଲା ମୁମ୍ବାଇ ବିମାନ ବନ୍ଦରରେ । ସେଠାରୁ ଓହ୍ଲାଇଲୁ ଓ ବିମାନ ବଦଳାଇବାକୁ ହେଲା । ଅନ୍ୟ ଗୋଟିଏ ବିମାନରେ ଗୋଆ ଯିବା କଥା । ଦିନ ୨.୩୦ ମିନିଟ୍‌ରେ ସେହି କିଙ୍ଗ୍ ଫିସର (ଡେକାନ୍)ର ବିମାନଟିରେ ଆମେ ଯାଇ ବସିଲୁ; କିନ୍ତୁ ଏଥିପାଇଁ ଆମକୁ କଷ୍ଟ କରିବାକୁ ପଡ଼ିଥିଲା । ପଚାରି ପଚାରି ଗୋଆକୁ ଯାଉଥିବା ନିର୍ଦ୍ଦିଷ୍ଟ ସ୍ଥାନକୁ ବୁଲି ବୁଲି ଯିବାକୁ ପଡ଼ିଲା । ଗୋଆ ଯିବା ବିମାନରେ ବସିଲୁ । ଏଥର ମଧ୍ୟ ଏୟାର ହୋଷ୍ଟେସ୍ ଆସି ଖାଦ୍ୟ ପରିବେଷଣ କରିଥିଲେ । ଏହି ଜଳଖିଆ ଖାଦ୍ୟ କିଛି ଅଲଗା ରକମର , ତେଣୁ ଖାଇବାକୁ ଭଲ ଲାଗିଲା । ଗୋଟିଏ ଗୋଟିଏ ଜୁସ୍ ମଧ୍ୟ ଦେଇଥିଲେ । ଆମ ଖାଇବା ସରିଲାବେଳକୁ ବିମାନଟି ଆସି ଗୋଆ-ବିମାନଘାଟୀରେ ପହଞ୍ଚିଥିଲା ।

ଖାଇବା ସମୟରେ ସୁଦୂର ଆକାଶର ପ୍ରତ୍ୟେକ ଅଙ୍ଗ ଛୁଇଁ ଚାଲିଥିଲାପରି ବିମାନଟିର ଗତି କରୁଥିଲା । କେତେବେଳେ ମେଘ ଉପରେ କିମ୍ବା ତଳେ ଅବା ସୂର୍ଯ୍ୟର ପ୍ରଖର ତେଜରେ ଯାଉଥିବାର ଅନୁଭବ କରାଯାଉଥିଲା । ଆମେ ଗୋଆରେ

ପହଞ୍ଚିଗଲୁ । ଜ୍ୱାଇଁ ଯାଇ ତାଙ୍କର କାର୍‌ଟିକୁ ଧରି ଆସିଲେ ତାଙ୍କର ସାଙ୍ଗ ପାଖରୁ । ସେଥିରେ ସମସ୍ତ ଜିନିଷ ରଖି କାରବାର ଅଭିମୁଖେ ଚାଲିଲୁ । ସାନ ଝିଅ ସ୍ମିତା (ମାମା), ଆମେ ନେଇଥିବା ବଡ଼ ବ୍ୟାଗ୍ ଏବଂ ଭି.ଆଇ.ପି ସୁଟ୍‌କେଶ ନେଇ ପଛସିଟ୍ ଏବଂ ଆଗ ସିଟ୍ ମଝିରେ ଥିବା ଫାଙ୍କା ଜାଗାରେ ରଖିଲା । ତା'ର ଭଲ ଆଇଡ଼ିଆ (ଧାରଣା) ଯୋଗୁ କାମ ଠିକ୍ ହେଲା ବୋଲି ଅନୁଭବ କରୁଥିଲୁ । ମୁଁ ଆଗ ସିଟ୍‌ରେ ବସିଲି । ପଛରେ ସମସ୍ତେ ମୋର ସ୍ତ୍ରୀ, ଝିଅ ଏବଂ ଦୁଇ ନାତୁଣୀ ଶ୍ରେଷ୍ଠା ଏବଂ ଶ୍ରେୟସୀ ବସିଲେ । ବୁଟୁ ଡ୍ରାଇଭିଂ କରିବାକୁ ପ୍ରସ୍ତୁତ ହେଲେ । ଠିକ୍ ଦିନ ୪.୩୦ ମିନିଟ୍‌ରେ କାର୍ ଚାଲିଲା କାରବାର ଅଭିମୁଖେ ।

କିନ୍ତୁ କିଛିବାଟ ଗଲାପରେ ବୁଟୁ (ଜ୍ୱାଇଁ) ହଠାତ୍ ଅନୁଭବ କଲେ ମଝି ଫାଙ୍କରେ ଜିନିଷପତ୍ର ରହିଥିବାରୁ ପଛପଟୁ ଆସୁଥିବା ଗାଡ଼ି ଦେଖିପାରୁନାହାନ୍ତି । ଆରାମରେ ଗାଡ଼ି ଚଳାଇବା ତାଙ୍କ ପକ୍ଷରେ ଅସମ୍ଭବ ହେଲା । ଆମେମାନେ ଗୋଆଠାରୁ ୧୧୦ କି.ମି. କାରବାରକୁ ଯିବାକୁ ଅଛି । ଚଳାଇବା ସମ୍ଭବ ନୁହେଁ । ସେତେବେଳକୁ ଆମେ ମାତ୍ର ଦଶ କି.ମି. ବାଟ ଆସିଥିଲୁ । ପଛରୁ ଟ୍ରକ୍ ଆସିଲେ ମଧ୍ୟ ଜଣାପଡ଼ିଲାନି । ଶେଷକୁ କ'ଣ କରାଯିବ ଆଲୋଚନାରେ ମାମା କହିଲା, "ମୁଁ ଆଗରେ ବଡ଼ ବ୍ୟାଗ୍‌ଟା ଧରି ଗୋଡ଼ ଦୁଇଟିକୁ ସିଟ୍ ଉପରେ ପକାଇ ବସି ଧରିବି ।" ତା'ର କଥାଟି ଉପଯୁକ୍ତ ଥିଲା । କଷ୍ଟ ସହିବାରେ ଧୂରନ୍ଧରା ସେ । ବ୍ୟାଗ୍‌କୁ ଆଗରେ ରଖି ଗୋଡ଼ଦୁଇଟିକୁ ସିଟ୍ ଉପରେ ରଖି କଷ୍ଟ ସମ୍ବରଣ କରି ବସିଲା ସେ । ମୁଁ ମନେ ମନେ ସବୁ ପରିସ୍ଥିତି ନେଇ କଷ୍ଟ ସହି ମାମାର କାର୍ଯ୍ୟ କରିବାର ପ୍ରଣାଳୀକୁ ଦେଖିଲି । ତା'ର ନିଜ ଉପରେ ଥିବା ଦାୟିତ୍ୱକୁ ସେ ସୁଚାରୁରୂପେ ସଦାସର୍ବଦା କରିଆସିଛି । ମାମା କହୁଥିଲା-- ଏବେ ଶାଶୁ-ଶ୍ୱଶୁରଙ୍କୁ ଛାଡ଼ି ଆସିବାବେଳେ କାରବାରଠାରୁ ଗୋଆକୁ ଜିନିଷ ଧରି ଆଗରେ ବସିଥିଲା । ମୁଁ ଚାହୁଁଥିଲି ମାମା ପରି ସବୁ ଝିଅ-ବୋହୂ ଯଦି ନିଜକୁ କଷ୍ଟ ଭିତରେ ରଖି ଅନ୍ୟର ସେବା କରିପାରନ୍ତେ, ସଂସାରରେ କିଛିଟା ଶାନ୍ତି ଫେରିଆସନ୍ତା । ପୃଥିବୀର ପ୍ରତ୍ୟେକ ଘର ଶାନ୍ତିରେ ଉଛୁଳି ପଡ଼ନ୍ତା ।

ଏଥର ବୁଟୁ ଆରାମରେ କାର୍ ଚଳାଇଲେ ଆଗକୁ ଆଗକୁ । କାର୍‌ର ଗତି ମାତ୍ର ୪୦ କି.ମି.ରୁ ୫୦ କି.ମି. ବେଗ ଥିଲା । ଗୋଆଠାରୁ କାରବାର ଦେଇ

ବାଙ୍ଗାଲୋର ଯାଉଥିବା ଏହି ଜାତୀୟ ରାଜପଥ ଅବସ୍ଥା ନିହାତି ନିମ୍ନମାନର । ରାସ୍ତା ସବୁକ୍ଷେତ୍ରରେ ଖାଲ-ଢିପ ଭରପୂର । ଜଣାପଡୁଛି ଯେପରିକି ଏହି ଜାତୀୟ ରାଜପଥର ରକ୍ଷଣାବେକ୍ଷଣ କାର୍ଯ୍ୟକୁ ସଠିକ୍ ଭାବରେ ପରିଚାଳନା କରାଯାଉନି । ଏଥିପାଇଁ ନିର୍ମାଣ ବିଭାଗର ସର୍ବୋଚ୍ଚ ଯନ୍ତ୍ରୀ ଅବଗତ ନ ଥିଲା ପରି ଜଣାପଡ଼େ । ସେଇ ଖାଲ-ଢିପ ଦେଇ ଆମର କାର୍‌ଟି ଆଗେଇଥିଲା ସନ୍ଧ୍ୟା ପୂର୍ବରୁ ନିର୍ଦ୍ଧାରିତ ସ୍ଥାନ କାରବାରରେ ପହଞ୍ଚିବାକୁ; କିନ୍ତୁ ସମ୍ଭବ ହେଲାନାହିଁ । ସମୁଦାୟ ୧୧୦ କି.ମି. ଘଞ୍ଚ ଜଙ୍ଗଲ ପର୍ବତ ମଧ୍ୟ ଦେଇ ଘାଟି ସ୍ଥାନ ଅତିକ୍ରମ କରି ଯାଉଛି । ଗୋଆଠାରୁ କାରବାର ସମସ୍ତ ଅଞ୍ଚଳ ଘାଟି ଜାଗା ବୋଲି ଗାଡ଼ି ଚାଳକମାନଙ୍କଠାରୁ ଶୁଣିବାକୁ ମିଳେ । ପ୍ରାକୃତିକ ଦୃଶ୍ୟରେ ପରିପୂର୍ଣ୍ଣ ଏହି ରାସ୍ତା । ଦୁଇ ପଟରେ ଉଚ୍ଚ ପର୍ବତମାଳାର ମଝିଦେଇ କାର୍ ଗଲାବେଳେ ମନରେ ଅପରିସୀମ ଆନନ୍ଦ ଜାତ ହେଉଥିଲା । ଗୋଆଠାରୁ ସମୁଦ୍ରର ପାଖେ ପାଖେ ଏହି ଜାତୀୟ ରାଜପଥ ନିର୍ମାଣ ହୋଇଥିବାରୁ ମଝିରେ ମଝିରେ ମଝିରେ କାର୍ ଭିତରୁ ସମୁଦ୍ରର ଶୋଭା ଆଖିରେ ପଡ଼େ । ଏହି ଆରବସାଗରଟି ଆମ ସହିତ ପ୍ରତଦ୍ୱନ୍ଦ୍ୱୀ ଭାବରେ ସମାନ୍ତର ସରଳରେଖା ଦେଇ ଗତି କରୁଥିଲା । ମନୋମୁଗ୍ଧକର ଦୃଶ୍ୟ । ଗୋଟିଏ ପଟେ ଅତ୍ୟୁଚ୍ଚ ପର୍ବତଶ୍ରେଣୀ ଘନ ସବୁଜିମାରେ ଭରପୂର, ଅନ୍ୟଦିଗରେ ସାଗରର ମାଧୁର୍ଯ୍ୟ ଯେକୌଣସି ଦର୍ଶକକୁ ବିମୋହିତ କରିବ । ରାସ୍ତାରେ କେବଳ କେତୋଟି ବସ୍, ଟ୍ରକ୍, କାର୍ ଛାଡ଼ିଦେଲେ ସାଧାରଣ ମନୁଷ୍ୟର ଚଳାଚଳ ଦେଖିବାକୁ ମିଳୁ ନ ଥିଲା । ଗୋଟିଏ ବା ଦୁଇଟି ହିରୋହୁଣ୍ଡା, ହଣ୍ଡାର ମଟର ସାଇକେଲ, ସ୍କୁଟି ଦେଖିବାକୁ ମିଳିଥିଲା । ବୋଧହୁଏ ଘଞ୍ଚ ଜଙ୍ଗଲ ରାସ୍ତା ହେତୁ ଦିନ ଥାଉ ଥାଉ ବାଟୋଇମାନେ ନିର୍ଦ୍ଧାରିତ ସ୍ଥାନକୁ ଯାଇଥା'ନ୍ତି ।

ଆସିଲାବେଳେ ବହୁତଗୁଡ଼ିଏ କ୍ଷୁଦ୍ର ସହର ଏବଂ ଗ୍ରାମ ଦେଇ ଆସିଥିଲୁ; କିନ୍ତୁ କୌଣସିଠାରେ ଆଶାତୀତ ଜନଗହଳି ନ ଥିଲା । ଜଣାପଡୁଥିଲା ଜନବସତି ବହୁତ କମ୍ ଥିଲା ।

ଆମେ ଭୁବନେଶ୍ୱରରୁ ବିମାନ ଚଢ଼ିବାବେଳକୁ ସାମାନ୍ୟ ଜଳଖିଆ ଘରୁ ଖାଇ ଆସିଥିଲୁ । ବିମାନରେ ସାମାନ୍ୟ ଜଳଖିଆ ଯୋଗାଇଥିଲେ ବିମାନ ଅଧିକାରୀ । ଗୋଆରେ ମଧ୍ୟ ସେଇ ଏକା କଥା । ଯାହାହେଉ ପେଟ ଭର୍ତ୍ତି ହୋଇଯାଇଥିଲା

ଜଳଖିଆରେ । ତେଣୁ ବାଟରେ କାର୍ ରଖି ଖାଇବାପାଇଁ କାହାର ହେଲେ ଇଚ୍ଛା ହେଲାନାହିଁ । ତେଣୁ ଜ୍ୱାଇଁ ଏକ ଲୟରେ କାର୍ ଛୁଟାଉଥିଲେ କାରବାର ଅଭିମୁଖରେ । ଦୂର-ପାଖ ପର୍ବତମାଳା, ସମୁଦ୍ରର ଶୋଭାରାଶି ଉପଭୋଗ କରି ପରିଶେଷରେ ଆସି ପହଞ୍ଚିଗଲୁ କାରବାରରେ ସନ୍ଧ୍ୟା ୭.୩୦ ମିନିଟ୍‌ରେ ।

କାରବାର ହେଉଛି ନୌସେନା ଜାହାଜର ରହିବା ସ୍ଥଳୀ । ଏଠାରେ ପ୍ରାୟ ଶହେ ଜଣ ଅଫିସର ସବ୍‌ଲେଫଟାଣ୍ଟ, ଲେଫ୍‌ଟାଣ୍ଟ୍, ଆସିଷ୍ଟାଣ୍ଟ୍ କମାଣ୍ଡର, କମାଣ୍ଡର, କ୍ୟାପ୍‌ଟେନ୍ ଏବଂ କମାଣ୍ଡିଂ ଅଫିସର ଏବଂ ମୁଖ୍ୟ ଚିଫ୍ କମାଣ୍ଡିଂଅଫିସର ବାରଶହ ପର୍ଯ୍ୟନ୍ତ ଅଛନ୍ତି । ପ୍ରଥମ ପର୍ଯ୍ୟାୟ କାର୍ଯ୍ୟ ପ୍ରାୟ କୋଡ଼ିଏ ବର୍ଷ ଲାଗି ସରିଛି । ଦ୍ୱିତୀୟ ପର୍ଯ୍ୟାୟ କାମ ଆରମ୍ଭ ହୋଇଛି । ପ୍ରଥମ ପର୍ଯ୍ୟାୟରେ ସମୁଦ୍ର ବକ୍ଷରେ ଆଡ଼ିବନ୍ଧ ତିଆରି ହୋଇ ବଡ଼ ବଡ଼ ଯୁଦ୍ଧ ଜାହାଜ ରହିବାର ସୁବିଧା କରାହୋଇଛି । କାରବାର ଛୋଟ ଧରଣର ନୌସେନା ଆଡ୍ଡା ହୋଇଥିବାରୁ ଏଥିପାଇଁ ବହୁତ ଜାଗା ଅଧିକୃତ ହୋଇଛି । ଭବିଷ୍ୟତରେ ମୁମ୍ବାଇର ଗୁଡ଼ିଏ କାର୍ଯ୍ୟାଳୟକୁ ଏଠାକୁ ସ୍ଥାନାନ୍ତରିତ କରିବାର ଯୋଜନା ଅଛି । କାରଣ ମୁମ୍ବାଇ ଠାରୁ କାରବାର ପ୍ରାକୃତିକ କ୍ଷେତ୍ରରେ ଅଧିକ ସୁରକ୍ଷିତ । ତେଣୁ କ୍ରମଶଃ ବର୍ଦ୍ଧିଷ୍ଣୁ ନୌସେନା ଶିବିରରେ ପରିଣତ ହେବାର ସମ୍ଭାବନା ଅଛି ।

କାରବାରର ମୁଖ୍ୟ ପ୍ରବେଶ ପଥରେ ସିକ୍ୟୁରିଟି ଗାର୍ଡକୁ ମୋର ଜ୍ୱାଇଁ ତାଙ୍କର ପରିଚୟପତ୍ର ଦେଖାଇବା ପରେ ସେ ଫାଟକ ଖୋଲିଦେଲା । କାର୍ ମେନ୍‌ଗେଟ୍ ଦେଇ କାରବାର ବନ୍ଦର (ନୌସେନା) ଅଫିସର୍ ରହୁଥିବା କ୍ୱାଟର ଦିଗକୁ ଗଲା । ଆମ କାର୍‌କୁ ଆଣି କ୍ୱାର୍ଟର ସମ୍ମୁଖରେ ରଖିଲେ ଜ୍ୱାଇଁ ଶ୍ରୀ ଶିବପଦ ରଥ (କମାଣ୍ଡର୍) । କାର୍‌ର ହର୍ଣ୍ଣ ଶୁଣି (ପାଳିତ କୁକୁର) ଶେଲା ଆସି କାର୍ ପାଖରେ ଲାଞ୍ଜ ହଲାଇ ପ୍ରାୟ କୋଡ଼ିଏ ଦିନ ପରେ ଫେରିଥିବା ଗୃହର ମାଲିକ ତଥା ପରିବାରଙ୍କୁ ଦେଖି ଆନନ୍ଦିତ ହେଲା । ମୋର ନାତୁଣୀ ଦୁହେଁ ତୁରନ୍ତ କାର୍‌ରୁ ଓହ୍ଲାଇ ଶେଲାକୁ ସ୍ନେହ କରିବାକୁ ଲାଗିଲେ । ଦେହମୁଣ୍ଡରେ ହାତମାରି ତା'ର ଭଲମନ୍ଦ ଖବର ପଚାରିଲେ । ଆନନ୍ଦରେ କୁଁ କୁଁ ସ୍ୱର ପ୍ରକାଶ କରୁଥିଲା ଶେଲା । ହେଲେ ଆମେ ଦୁଇଜଣ ସ୍ୱାମୀ-ସ୍ତ୍ରୀ ତା'ର ଅଚିହ୍ନା ଥିଲୁ । କିଛି ସନ୍ଧିକ୍ଷଣ ଦୃଷ୍ଟିରେ ଆମକୁ ଚାହିଁ ରହିଥିଲା । ଏ ଦୁଇଜଣ କିଏ ? ମୋର ବଡ଼ ନାତୁଣୀ ଭାରି ଚାଲାକ୍ ।

ଶେଲାର ମତିଗତି ବୁଝିପାରିଲା । ଆମ ଦୁଇଜଣଙ୍କ ପାଖକୁ ଆସି କହିଲା, "ଶେଲା ଏ ହେଉଛନ୍ତି ମୋର ଅଜା-ଆଈ । ବୁଲି ଆସିଛନ୍ତି, ରହିବେ କିଛିଦିନ ।" ମୁଁ ଚୁ-ଚୁ କଲି । ଶେଲା ସବୁ ବୁଝିଗଲା । ଆମକୁ ନ ଚାହିଁ ମୋର ନାତୁଣୀ ଦୁଇଜଣଙ୍କ ପଛରେ ଦୌଡ଼ିଲା । ସେମାନେ କ୍ୱାର୍ଟର୍‌ର ପାହାଚ ଉପର ଦେଇ ଗଲେ; କିନ୍ତୁ ଶେଲା ଫେରିଆସିଲା ପାହାଚ ପାଖରୁ କାର୍‌ ପାଖକୁ । ତା'ର କାମକୁ ସେ ପସନ୍ଦ କରେ । ଏଥିମଧ୍ୟରେ କ୍ୱାଇଁ ଆଉସବୁ ଜିନିଷ ଓହ୍ଲାଇ ଦେଇସାରିଥିଲେ । ଶେଲା ଜଗି ବସିଥିଲା ଜିନିଷକୁ । ସଚ୍ଚୋଟ କୁକୁର । ଜିନିଷ ଧରି ଉପର ମହଲା ଦ୍ୱିତଳ ପ୍ରାସାଦକୁ ଆମେମାନେ ଉଠିଲୁ । କ୍ୱାଇଁ ପ୍ରାୟ ସମସ୍ତ ଜିନିଷ ଧରି ଧରି ଚାଲୁଥିଲେ । ହାଲୁକା ଜିନିଷ ଆମେ ଧରିଥିଲୁ । ଆଲୋକ ଜଳି ଉଠିଥିଲା କ୍ୱାଟର୍‌ର । ଦି' ମହଲାର କ୍ୱାଟର । ଉପର ମହଲା ମିଳିଛି କ୍ୱାଇଁଙ୍କୁ । ବିରାଟ କ୍ୱାଟର୍‌ । ତିନିଗୋଟି ବଡ଼ ବଡ଼ ରୁମ୍‌ ସହିତ ଡ୍ରଇଂ ରୁମ୍‌, ଡାଇନିଂ ଏବଂ ରୋଷାଇଘର । ତା' ସହିତ ଦୁଇଗୋଟି ସଲଗ୍ନ ବାଥ୍‌ ରୁମ୍‌ ଅଛି । ଦିଅଁଙ୍କ ଘର ମଧ୍ୟ ଅଛି । କ୍ୱାଟରର ମୁହଁ ସମୁଦ୍ର ଦିଗକୁ । ବାହାରପଟ ବାଲ୍‌କୋନି ଖୋଲିଦେଲେ ଆରବସାଗରର ମନୋରମ ଦୃଶ୍ୟ ମନକୁ ଆଚ୍ଛନ୍ନ କରେ । ସୁଲୁସୁଲିଆ ଥଣ୍ଡା ପବନ ସମୁଦ୍ରରୁ ବହିଆସେ । ମନଟା ପ୍ରଫୁଲ୍ଲିତ ହୁଏ ।

ଆସିଲାବେଳେ କାରବାର ବଜାରରୁ କିଛି ରୁଟି, ତରକାରୀ ରାତ୍ରିଭୋଜନ ପାଇଁ ନେଇ ଆସିଥିଲୁ । ସାନ ନାତୁଣୀ ପାଇଁ ଦୁଇ ପାକେଟ୍‌ କ୍ଷୀର ଆଣିଲୁ । ଦୁଧ ପିଇବାକୁ ଶ୍ରେୟସୀ ଖୁବ୍‌ ଭଲପାଏ ।

ରାତ୍ରିର ଭୋଜନ ପରେ ଆମେମାନେ କ୍ଳାନ୍ତ ଶରୀରକୁ ଶେଯ ଉପରେ ଲେଉଟାଇ ଦେଲୁ । ମାନସିକ ସ୍ତରରେ ଆନନ୍ଦ ଏବଂ କ୍ଳାନ୍ତ ଅବଶ ଶରୀରକୁ ସତେଜ କରିବାକୁ କିଛିଟା ବାକ୍ୟାଳାପ ଏବଂ କିଛି ସମୟ ଟି.ଭି. ମଧ୍ୟ ଦେଖିଥିଲୁ ।

ନିଦ୍ରାରାଣୀର କୋଳରେ ମୁଣ୍ଡ ରଖି ସମସ୍ତେ ଆନନ୍ଦରେ ଶୋଇପଡ଼ିଲୁ ।



# ପ୍ରାତଃଭ୍ରମଣ– ସମୁଦ୍ରର କୂଳରେ କବିତା ଲେଖନ

ସକାଳୁ ଉଠିପଡ଼ିଲି। ସମୟ ପ୍ରାୟ ପାଞ୍ଚଟା ତିରିଶି ମିନିଟ୍ ହେବ। ମନ କହିଲା-- ସୁନ୍ଦର ସମୁଦ୍ରକୁ ପ୍ରାତଃକାଳରେ ଦର୍ଶନ କରି ତା'ର ସୌନ୍ଦର୍ଯ୍ୟର ଆଭାରେ ମନକୁ ଭସାଇଦେବି। ମୋର ସାଥିରେ ମୋର କ୍ୱାଇଁ ମଧ୍ୟ ମର୍ଣ୍ଣିଂଓ୍ୟାକ୍ (ପ୍ରାତଃଭ୍ରମଣ)ରେ ବାହାରିଲେ। ତାଙ୍କର କ୍ଷୀପ୍ର ଗତି। ମୋର ମଧ୍ୟମ ଗତି। ଦୁହିଁଙ୍କର ଗତିରେ ବହୁତ ଫରକ। ତଥାପି ସେ ଯଥାସାଧ୍ୟ ଚେଷ୍ଟା କରୁଥିଲେ ତାଙ୍କର ଗତିକୁ ସୀମିତ କରିବାକୁ। ମୁଁ ମଧ୍ୟ ଚେଷ୍ଟା କରୁଥିଲି ଅନ୍ତତଃ ତାଙ୍କ ପାଖାପାଖି ହେବାପାଇଁ।

ଆମେ ଦୁହେଁ ବାଟ ଅତିକ୍ରାନ୍ତ କରୁଥିଲୁ ବିଭିନ୍ନ ବିଷୟରେ ଆଲୋଚନା କରି। ପ୍ରତ୍ୟେକ ସ୍ତରରେ ମୁଁ ତାଙ୍କୁ କିଛି ପ୍ରଶ୍ନ ପଚାରୁଥିଲି। ତା'ର ସନ୍ତୋଷଜନକ ଉତ୍ତର ଦେଉଥିଲେ ଏହି କାରବାର ନୌସେନା ବିଷୟରେ। ବାଟରେ ତାଙ୍କର ସାଙ୍ଗ ଏବଂ ସାଙ୍ଗର ସ୍ତ୍ରୀ ଦେଖାହେଲେ। ସେମାନଙ୍କ ସହ ମଧୁର ଅଭିଭାଷଣ ପରେ ଅନ୍ୟ କଥାବାର୍ତ୍ତା ହେଉଥିଲେ ସ୍ୱଳ୍ପ ସମୟ ପାଇଁ। ଏଥିରେ ସେମାନଙ୍କର ଆନ୍ତରିକତା ଫୁଟି ଉଠୁଥିଲା। ଆମେଦୁହେଁ ସମୁଦ୍ରର କୂଳେ କୂଳେ ଚାଲିଥିଲୁ ଆଗକୁ ଆଗକୁ। ସମୁଦ୍ରର ମନମତାଣିଆ ତରଙ୍ଗର ମଧୁର ଗର୍ଜନ ବେଶ୍ ଆତ୍ମତୃପ୍ତି ଆଣି ଦେଉଥାଏ। ଧବଳ ସାଗର ମଝିରେ ମଝିରେ ରୂପ ବଦଳାଇ ନୀଳ ସାଗରରେ ପରିବର୍ତ୍ତିତ ହେଉଥାଏ। ଏହି ଦୃଶ୍ୟ ମନକୁ ଆନନ୍ଦ ଦେଉଥାଏ। ଅସଂଖ୍ୟ ଗେଣ୍ଡାଳିଆ ପକ୍ଷୀ ସମୁଦ୍ର ଉପରେ ଚକ୍ରାକାର, ବକ୍ରାକାର ଏବଂ ଏକ ଧାଡ଼ିରେ ଆକାଶମାର୍ଗରେ ଗତି କରୁଥିଲେ। ଏହି ସୌନ୍ଦର୍ଯ୍ୟ ଅତୁଳନୀୟ। ଆମେ ଆଗେଇଥିଲୁ। ତାଙ୍କର ଚିଫ୍ କମାଣ୍ଡିଂ ଅଫିସର୍‌ଙ୍କ କ୍ୱାର୍ଟର ପର୍ବତର ମଝିସ୍ଥଳରେ

ଅବସ୍ଥିତ । ଯିବାକୁ ରାସ୍ତା ତିଆରି ହୋଇଛ । ସିକ୍ୟୁରିଟି ଜଗୁଛନ୍ତି । ତା'ପରେ ଗୋଟିଏ ଖାଲିଥିବା ବଡ଼ କ୍ୱାର୍ଟର ଦେଖିଲୁ । କ୍ୱାଇଁଙ୍କ ଠାରୁ ଶୁଣିଲି ଏହି କ୍ୱାର୍ଟରରେ ଗୋଟିଏ ଚିତାବାଘ ପିଲା ଜନ୍ମ କରିଛି । କଥାଟି ସତ । ପଛପଟେ ଭୀଷଣ ଜଙ୍ଗଲ ଏବଂ ଅତ୍ୟୁଚ୍ଚ ପାହାଡ଼ରେ ଭର୍ତ୍ତି । ଏଠାରେ ଲୋକମାନଙ୍କର ଚିତାବାଘ ସହିତ ପ୍ରାୟ ବନ୍ଧୁତା ଅଛି । ସେମାନଙ୍କର ବାଘ କିଛି କ୍ଷତି କରନ୍ତି ନାହିଁ । ସେମାନଙ୍କୁ ବହୁତ ଜଙ୍ଗଲୀ ମେଣ୍ଢା, ଛେଳି ମିଳିଯାଏ; ତେଣୁ ମଣିଷକୁ ଆକ୍ରମଣ କରନ୍ତି ନାହିଁ । ଯାହାହେଉ, ମଣିଷର ସବୁବେଳେ ଜଙ୍ଗଲୀ ପଶୁଙ୍କୁ ଭୟ । ସେହି ଭୟରେ ସେହି କ୍ୱାର୍ଟରଟିରେ କୌଣସି ଅଫିସର୍ ରହିବାକୁ ଚାହୁଁନାହାନ୍ତି । ଫଳରେ ଖାଲି ପଡୁଛି ।

ସେଇ କ୍ୱାର୍ଟର୍ ଆଗରେ ତାଙ୍କ ଡିପାର୍ଟମେଣ୍ଟର ସର୍ବୋଚ୍ଚ ଅଧିକାରୀ କ୍ୟାପଟେନ୍ ସ୍ୱତନ୍ତ୍ର କ୍ୱାଟର୍‌ରେ ରହୁଛନ୍ତି ସମୁଦ୍ର କୂଳରେ ଏବଂ ପଛରେ ଘଞ୍ଚ ଜଙ୍ଗଲ ପରିବେଶରେ; କିନ୍ତୁ ଜନବସତିକୁ ଅଟକାଇବା ପାଇଁ ପାଚେରୀ ପଡ଼ିଛି । ଯେପରି ସେଠାକାର ସାଧାରଣ ବସ୍ତିବାସିନ୍ଦା ପାଚେରୀ ଡେଇଁ ନୌସେନାବେଶକୁ ନ ଆସନ୍ତି, ସେଥିପାଇଁ ସତର୍କ ପ୍ରହରୀର ତୀକ୍ଷ୍ଣ ଦୃଷ୍ଟି ଅଛି । ସେହି ପ୍ରହରୀମାନଙ୍କ ପାଇଁ ସ୍ୱତନ୍ତ୍ର ଭାବେ କୋଠରି ତିଆରି ହୋଇଛି । ସେହିଠାରେ ଅବସ୍ଥାନ କରିବାକୁ କୌଣସି ବାହାର ଲୋକଙ୍କୁ ଭିତରକୁ ଆସିବାକୁ ଦିଆ ହୁଏନାହିଁ । ସକାଳ ପ୍ରାତଃଭ୍ରମଣରେ ଦେଖିଲୁ ପ୍ରହରୀଟି କର୍ତ୍ତବ୍ୟରତ । ମଝିରେ ମଝିରେ ବିଶାଳ ସମୁଦ୍ର ବକ୍ଷକୁ ନଜର ପକାଉଛି । ସେହିପଟୁ କେହି ଯେପରି ନ ଆସନ୍ତି ପାଚେରୀ ଡେଇଁ। ବିଚିତ୍ର କଥା ଦେଖିଲୁ । ବହୁତଗୁଡ଼ିଏ ଗାଈ, ମଇଁଷି ରାସ୍ତା ଉପର ଦେଇ ଅନାୟାସରେ ଯାଉଛନ୍ତି । ପଚାରି ବୁଝିଲି, ଏମାନଙ୍କର କେହି ମାଲିକ ନାହାନ୍ତି । ତେଣୁ ସେମାନେ ଜଙ୍ଗଲରେ ରହୁଥିବା ପଶୁପରି ବିନା ବାଧାରେ ବୁଲୁଛନ୍ତି ଏହି ନୌସେନା ନିର୍ମିତ ରାସ୍ତା ଉପରେ । ବର୍ଷା ପଡ଼ି କିଛି ଘାସ ଏବଂ ଗଛର କଅଁଳ ପତ୍ର ଖାଇବା ଆଶାରେ ସେମାନେ ସମୁଦ୍ର କୂଳକୁ ଆସିଥା'ନ୍ତି ।

ଆମେ ଦୁହେଁ ପ୍ରାତଃଭ୍ରମଣରୁ ଫେରିଲୁ । ସମୁଦ୍ର କୂଳ ଦେଇ ଘରକୁ ଫେରିବାର କଥା; କିନ୍ତୁ ମୋର ଲୋଭ ଥାଏ ଆଉ କିଛିକ୍ଷଣ ପାଇଁ ନିରୋଳାରେ ସମୁଦ୍ର କୂଳରେ ନିର୍ମିତ ହୋଇଥିବା ବେଞ୍ଚ୍ ଉପରେ ବସି ପ୍ରାକୃତିକ ଶୋଭାରେ

ମନକୁ ଭୁଲାଇ ଦେବାପାଇଁ । କ୍ୱାଇଁ ମୋର ମନୋଭାବ ବୁଝି କହିଲେ, "ଏହି ଜାଗା ହେଉଛି ନିରୋଳା ଜାଗା । ପ୍ରାୟତଃ ମଣିଷର ଆତଯାତ ନାହିଁ । କେବଳ କିଛି ଅଫିସ୍‌କୁ ଯିବା ନୌସେନା ଅଫିସର୍‌ଙ୍କ ଛଡ଼ା ।" ମୁଁ ଯାଇ ସମୁଦ୍ର ନିକଟରେ ପହଞ୍ଚିଲି । ମନ ପୂରାଇ ଦେଖିନେଲି । ଲହଡ଼ିକୁ ଛୁଇଁଲି । ଏକାଟିଆ ଲୋକ । ନିର୍ଜନ । ସାହସ ହେଲାନି ସେଠାରେ ରହିବାକୁ । ପ୍ରହରୀର ତୀକ୍ଷ୍ଣ ଆଖି ମୋ' ଉପରେ ଅଛି । ଆମ ଦୁଇଜଣଙ୍କ ଛଡ଼ା ଆଉ କେହି ନାହିଁ । ବାଧ୍ୟହୋଇ ସମୁଦ୍ର କୂଳରେ ରାସ୍ତାକଡ଼କୁ ଲାଗିପଡ଼ିଥିବା ସିମେଣ୍ଟ ବେଞ୍ଚ୍‌ରେ ବସିଲି ମନ୍ତ୍ରମୁଗ୍ଧ ହୋଇ । ମୋର ସେଠାରେ ବସିବାର ଦେଖି କର୍ତ୍ତବ୍ୟରତ ପ୍ରହରୀଟି ମୋ ପାଖ ଦେଇ ଯିବାଆସିବା କଲା । ମୁଁ ଆଉ ବିବ୍ରତ ହେଲିନି । ମନକୁ ପ୍ରକୃତିର ମନଲୋଭା ସାଗରର ଅପୂର୍ବ ଶୋଭାରେ ନିୟୋଜିତ କଲି । ଭଟ୍ଟା ହୋଇଥାଏ । ଲହରୀଗୁଡ଼ିକର ଉଚ୍ଚତା ମାତ୍ର ପାଞ୍ଚଫୁଟ ଭିତରେ । ତଥାପି ଖୁବ୍‌ଜୋର୍‌ରେ କୂଳକୁ ମାଡ଼ି ଆସୁଛନ୍ତି, ଲୀନ ହୋଇଯାଉଛନ୍ତି । ପୁଣି କିଛିକ୍ଷଣପରେ ଲହଡ଼ି ସକ୍ରିୟ ହୋଇ କୂଳକୁ ଆସି ଭାଙ୍ଗିଯା'ନ୍ତି । ଅହର୍ନିଶ ଏହି ପ୍ରକୃତିର ବିଚିତ୍ର ଖେଳ ଚାଲିଛି ସମୁଦ୍ର ଏବଂ ସମୁଦ୍ର ବାଲିତଟରେ । ସେହି ସମୁଦ୍ର ଗର୍ଜନ କ୍ରମଶଃ ମାନସପଟରେ ବେସୁରା ରାଗିଣୀ ପରି ଲେଖି ହୋଇଯାଉଛି । ଅନନ୍ତ ଆକାଶରେ ସୂର୍ଯ୍ୟ ଉଇଁଲେଣି ସମୁଦ୍ର ବକ୍ଷରୁ । ଅପୂର୍ବ ଶୋଭା । ବିଭିନ୍ନ କାକଳିର ମଧୁର ସ୍ୱର ଅନ୍ତରାତ୍ମାକୁ ବିମୋହିତ କରି ରଖୁଛି ସଦାବେଳ ପାଇଁ । ଏହି ପ୍ରାକୃତିକ ସୌନ୍ଦର୍ଯ୍ୟକୁ ବାନ୍ଧି ରଖିବାପାଇଁ ମନ କୋଣରେ ମନୁଷ୍ୟ ବହୁ ଚେଷ୍ଟା କରେ; କିନ୍ତୁ କ'ଣ ସଫଳ ହୁଏ ? ନୈସର୍ଗିକ ଶୋଭାକୁ ବର୍ଣ୍ଣନା କରିବା ଅତ୍ୟନ୍ତ କଠିନ । ତା'ପାଇଁ ଯଥେଷ୍ଟ ଭାଷା ଏ ପର୍ଯ୍ୟନ୍ତ ସୃଷ୍ଟି ହୋଇନାହିଁ ।

କିଛିକ୍ଷଣ ପରେ ଗୋଟିଏ କାଗଜ ଖୋଜିଲି ପକେଟ୍‌ରୁ । ପାଇଲିନି । ପାଇଲି ଗୋଟାଏ ଲମ୍ବା ଲଫାପାର ଖୋଳ । ସେଥିରେ କିଛି ଅଂଶ ବାକି ଥିଲା । ବାକି ତକରେ ଠିକଣା ଲେଖାଥିଲା ପ୍ରେରକଙ୍କର । ମନରେ ଆସିଲା କିଛି ଅନ୍ତଃକୋଣରୁ ଆସୁଥିବା ଭାବରୁ ଲେଖିପକାଏ । ଲେଖିଲି ମଧ୍ୟ । ତାକୁ ଘରେ ଝିଅ-କ୍ୱାଇଁ ଏବଂ ସ୍ତ୍ରୀ ପଢ଼ିବେ ଆଗ୍ରହ ସହକାରେ । କବିତାଟି ନିମ୍ନରେ ପ୍ରଦାନ କଲି ।

# କାରବାର - ସମୁଦ୍ର ଦର୍ଶନ

(୧)

ତୁମକୁ ପ୍ରଣାମ କରି କହୁଅଛି ପଦେ
ତୁମକୁ ଦେଖି ପାଇଲି ସନ୍ତୋଷ ଆନନ୍ଦେ
ବିଭିନ୍ନ ରୂପରେ ତୁମରି ଦର୍ଶନ
କରୁଅଛି ମୁହିଁ ପ୍ରଫୁଲ୍ଲିତ ଚିତ୍ତେ ।

(୨)

କାରବାର ସମୁଦ୍ରର ସୁନେଲି ସ୍ୱରୂପ
ଆରବ ସାଗର ଅଙ୍ଗ ଅତି ମନୋହର
ଶାନ୍ତ-ଶିଷ୍ଟ-ସୌମ୍ୟ ଚେହେରା ତୁମର
ଆଣିଦିଏ ସବୁରି ମନରେ ସୌନ୍ଦର୍ଯ୍ୟ ଅମାପ ।

(୩)

ନିତି ମୁହିଁ ଆସି ଦେଖୁଥିବି ଲହରୀର ଖେଳ
ଆଉ ଶୁଣୁଥିବି ତୁମ୍ଭରି ହୃଦୟ ସ୍ପନ୍ଦନ
ମନୋମୁଗ୍ଧକର ବିସ୍ମୟ ବର୍ଣ୍ଣନ
ଆସିବ ମୋ ମନ କନ୍ଦରରେ ଆହ୍ୱାନର ସ୍ୱର ।

(୪)

ନୀଳ ଧବଳ ବର୍ଣ୍ଣ ତୁମ୍ଭର
ମନଲୋଭା ଶୋଭା
କୁଆର ଆସଇ ଅବା ଆସେ ଭଟ୍ଟା
କହିଦିଏ ସଂସାରର ଜୀବନ ଯାତ୍ରା
କାଳ-କାଳ ସହିଥାଏ ଅତ୍ୟାଚାରର ଲାଭା
ତଥାପି ଲହରୀ ତା'ର କେତେ ମନଲୋଭା ।

(୫)

ତୁମରି ବକ୍ଷରେ ଦେଖେ ଅସରନ୍ତି ନୌସେନା ଜାହାଜ
କରିଦେବେ ଶାନ୍ତିପ୍ରିୟ ତୁମକୁ ଜଗତ
ଭାରତର ମାଟି ସହ ତୁମର ସଂପର୍କ
ଆଗକୁ ମାଡ଼ି ଚାଲିବେ ନ ହେବେ ଅଥୟ
ଭାରତ ମାତାର ଚରଣେ ତୁମ୍ଭର ଥାଉ ମଥା
ଗାଇବେ ସକଳ ଭାରତର ଗାଥା ।

(୬)

ତୁମ ଆକାଶରେ କେତେ କେତେ ପକ୍ଷୀ
ଅସରନ୍ତି - ମହାମୂଲ୍ୟ ହୁଏନି କଳନା
ଅହରହ ତୁମ ନୀଳ ପାଣିର ତଳେ
ଖେଳନ୍ତି ମୀନ-ମଗର ଆନନ୍ଦିତ ଚିତ୍ତେ
ତୁମରି ବକ୍ଷରେ ଅସରନ୍ତି ରତ୍ନ
ପାଇବାପାଇଁ ମନୁଷ୍ୟ ହୁଅଇ ଉଚ୍ଛନ୍ନ ।

(୭)

ତୁମରି ବକ୍ଷରୁ ଜଳ ନେଇ ଶଶିକାନ୍ତ
ମେଘ ସଜାଏ ଆକାଶେ ପୃଥିବୀର ପାଇଁ
ଚନ୍ଦ୍ରମା-ଚାପରେ - ଲହରୀର ଖେଳ
ସୃଷ୍ଟିର ସର୍ଜନା ହୁଏ ଅତି ଚମତ୍କାର
ତୁମକୁ ଭୁଲିପାରେନା - କାରବାର ସାଗର
ମନ ମୋର ତୃପ୍ତ ହୁଏ ଦେଖି ସୌନ୍ଦର୍ଯ୍ୟ ଅପାର ।

(୮)

ସାରା ପୃଥିବୀରେ ତୁମ୍ଭରି ଅମୂଲ୍ୟ ସଂପଦ
ଚୋରି କରି ନେଇଥାଏ ଏହି ମନୁଷ୍ୟ ଅଧମ
ପରିବେଶ କରିଦିଏ ଦୂଷିତ ତୁମର
ଆବର୍ଜନା ଛାଡ଼ିଦିଏ ତୁମରି ବକ୍ଷର ।

(୯)

ତଥାପି ଅଟଳ ତୁମ୍ଭେ ମହାନ୍ ସାଗର
ସହି ରହିଛ ମନୁଷ୍ୟ ଅତ୍ୟାଚାର
ଚିରଦିନ ମନୁଷ୍ୟକୁ ଦିଅ ତୁମ୍ଭର ସଂପଦ
ମନେ ତୁମର ନ ଥାଏ ଟିକେ ମାତ୍ର ବିଷାଦ
ଅତଳଗର୍ଭରୁ ଦିଅ ପେଟ୍ରୋଲଜାତ ଦ୍ରବ୍ୟ
ତଥାପି ମନୁଷ୍ୟ କେଭେ ନ ହୁଏ ସନ୍ତୋଷ ।

(୧୦)

ଘନଘଟା ଯୁଦ୍ଧ ଲାଗେ ତୁମ ବକ୍ଷେ
ମଣିଷ ଲଢ଼ଇ ମଣିଷର ସାଥେ
ନୀରବ ଦର୍ଶକ ହୋଇ ଦେଖୁଥାଅ ପରା
ମଣିଷ ଦୁର୍ଗତିରେ ହୁଅଟି ଅଧୀର ।

(୧୧)

ମନେଅଛି ସମୁଦ୍ରରେ ଆଗକାଳ କଥା
ତୁମକୁ ମୋହିଁଲେ ଅସୁର ଦେବତା
ମନ୍ଦର ପର୍ବତକୁ ଆଣି ବାସୁକୀକୁ ବାନ୍ଧି
ତୁମକୁ ମୋହିଁଲେ ସଂପଦର ଲାଗି
ବହୁତ ସଂପଦ ସହ ମହାଲକ୍ଷ୍ମୀ ଜାତ
ପରିଶେଷେ ଜାତ ହେଲା ସେହି ଅମୃତ ।

(୧୨)

ଲାଗିଗଲା ଘୋର ଯୁଦ୍ଧ ଅମୃତର ପାଇଁ
ମହାଲକ୍ଷ୍ମୀ ହେଲେ ବିଷ୍ଣୁ ପାଟରାଣୀ
ଐରାବତ ହସ୍ତୀକୁ ଇନ୍ଦ୍ର ନେଇଗଲେ

(୧୩)

ଅସୁରବାପୁଡ଼ା ଆକାଶେ ଚାହିଁଲେ
ତୁମରି ବକ୍ଷରୁ ନେଲେ ସବୁ ସଂପଦ

ତଥାପି କଳିରେ ମତ୍ତ - ଅସୁର ଦେବତା
ଛିନ୍ନଭିନ୍ନ ହେଲା ଜଗତ ଏକତା ।

(୧୪)

କାରବାର ସମୁଦ୍ରର ତଟରେ ମୁଁ ବସି
ଉପଭୋଗ କରୁଥିଲି ସମୁଦ୍ର ସଂପତ୍ତି
କେତେ ଦୁଃଖ-କଷ୍ଟ ସହିଛି ସାଗର
କାଳେ କାଳେ ମନୁଷ୍ୟର ଚିର ଅତ୍ୟାଚାର
ତଥାପି ନୈସର୍ଗିକ କଳାର ବନ୍ଧନ
ମନ ମୋର ବିମୋହିତ୍ ସାଗର ଦର୍ଶନ ।

(୧୫)

କରୁଛି ପ୍ରଣାମ ତୁମକୁ ସାଗର
କାଳେ କାଳେ ରହିଥାଉ ସୌନ୍ଦର୍ଯ୍ୟ ତୁମ୍ଭର
ତୁମର ବକ୍ଷରେ ବୁଲନ୍ତୁ ସହସ୍ର ବିହଙ୍ଗମ
ମନୁଷ୍ୟର ଅନ୍ତରରେ ଦିଅ ଦିବ୍ୟଜ୍ଞାନ
ନ କରନ୍ତୁ ତୁମ୍ଭ ବକ୍ଷକୁ ବିଷାକ୍ତ
ନ କରନ୍ତୁ ନଷ୍ଟଭ୍ରଷ୍ଟ ତୁମ୍ଭ ମାନଚିତ୍ର ।

(୧୬)

ଅନନ୍ତ ଯୁଗ ଧରି ସୌନ୍ଦର୍ଯ୍ୟରେ ଭାଷ
କୁର ମନୁଷ୍ୟର ଅନ୍ତରକୁ ବିମୋହିତ କର
କାରବାର ସମୁଦ୍ରର ମନଭୁଲା ଶୋଭା
ହୃଦୟ କନ୍ଦରରେ ଦିଏ ରତ୍ନ ଆଭା ।
ତୁମକୁ ପ୍ରଣାମ ଜଣାଇ ରହିଲି ସାଗର
ମୋ ହୃଦରେ ଚିର ଆନନ୍ଦ ଭର୍ତ୍ତିକର
ତୁମର ସୌନ୍ଦର୍ଯ୍ୟରେ ମନ ମୋର ପୂର୍ଣ୍ଣ କର ।

କବିତାଟି ପକେଟ୍‌ରେ ରଖି କ୍ୱାର୍ଟରକୁ ପ୍ରାୟ ସକାଳ ୮ଟାରେ ଫେରିଲି । ମୋର ଡେରି ହେବା ଦେଖି ମୋର ସ୍ତ୍ରୀ ଏବଂ ମାମା ମନରେ କିଛିଟା ସନ୍ଦେହ ଜାତ ହୋଇଥିଲା । ନୂଆକରି ପ୍ରଥମେ ଏହି ସ୍ଥାନକୁ ଆସିଥିବାରୁ ସମୁଦ୍ର କୂଳରୁ କ୍ୱାର୍ଟରକୁ ବାଟ ମିଳୁ ନ ଥିବ । ମୋବାଇଲ୍ ଫୋନ୍ ମୋ ପାଖକୁ ଆସିଲା । ମୁଁ କହିଲି ସମୁଦ୍ର କୂଳରେ ବସିଛି ଆଉ ଶୀଘ୍ର ଯାଉଛି । ସେମାନେ ଆଶ୍ୱସ୍ତ ହେଲେ । ସମୁଦ୍ର ଦର୍ଶନରୁ ମୁହଁ ଫେରାଇ କ୍ୱାର୍ଟର ଅଭିମୁଖେ ଚାଲିଲି ।

ମୋର ଡାଇବେଟିସ୍ ଔଷଧ ଖାଇବା ସମୟ ହୋଇଯାଇଥିଲା । ପ୍ରତ୍ୟେକ ଦିନ ସକାଳ ୮ଟା ଭିତରେ ଡାଇବେଟିସ୍ ଔଷଧ ଖାଇବାପରେ ଚା' ଏବଂ ପ୍ରାତଃ ଜଳଖିଆ ଖାଏ । ଏହାର ଅଧଘଣ୍ଟା ପରେ ରକ୍ତଚାପ ଔଷଧ ଖାଏ । ଡାଇବେଟିସ୍ ଏବଂ ରକ୍ତଚାପ ମାରାତ୍ମକ ରୋଗ ମଧ୍ୟରେ ଗଣା । ଏମାନେ ମନୁଷ୍ୟର ଶରୀରକୁ ସ୍ଲୋ ପଏଜନ୍ ପରି ଦୁର୍ବଳ କରିଦିଅନ୍ତି । ଅସ୍ୱାଭାବିକ ଭାବେ ମନୁଷ୍ୟର ଶରୀର୍ କ୍ଷୀଣ କିମ୍ବା ବହୁତ ମୋଟା ହୋଇଯାଏ । ଉପଯୁକ୍ତ ଚିକିତ୍ସା ଏବଂ ବ୍ୟାୟାମ, ପ୍ରାତଃଭ୍ରମଣ, ସାନ୍ଧ୍ୟଭ୍ରମଣ ଏବଂ ଖାଇବାରେ ସଂଯମ ହେଲେ ରୋଗକୁ ଆୟତ୍ତ କରିହୁଏ । ମାନସିକ ସ୍ତରରେ ଯୋଗ କିମ୍ବା କିଛି ଲେଖାପଢ଼ା କଲେ ଭଲ । ତେଣୁ ମୁଁ ଆଜି ପ୍ରଥମ କରି କାରବାର ସମୁଦ୍ର କୂଳରେ ପ୍ରାତଃଭ୍ରମଣ କରି ଘଣ୍ଟାଏ ବସିଯାଇଥିଲି । କବିତା ଲେଖିଲି । ଡେରି ହୋଇଗଲାଣି ଭାବି କ୍ୱାର୍ଟରକୁ ଫେରିଆସିଲି । କ୍ୱାର୍ଟର ମୁହଁ ପ୍ରବେଶ ପାଖରେ ମୋର ସ୍ତ୍ରୀ, ଝିଅ, ଜ୍ୱାଇଁ ଏବଂ ନାତୁଣୀ ଦୁଇଜଣ ବିସ୍ମୟଭାବରେ ମୋତେ ଚାହିଁରହିଛନ୍ତି । ମୁଁ କିଛି ନ କହି ଘରେ ପଶିଲି ।



# କାରବାର ହାଟ ଓ
# ଗୋକର୍ଣ୍ଣା ମହାଦେବ ଦର୍ଶନ

କାରବାରରେ ରହିବାର ତିନିଦିନ ପରେ ତା. ୧୪.୬.୦୯ (ରବିବାର ଦିନ) ଆମେମାନେ ଗୋକର୍ଣ୍ଣା ମହାଦେବଙ୍କୁ ଦର୍ଶନ କରିବାକୁ ଇଚ୍ଛାକଲୁ । ସେଦିନ ରବିବାର । ଦଶଟା ବେଳକୁ ଯାଇ କାରବାର ହାଟରୁ ସାପ୍ତାହିକ ପାଇଁ ପନିପରିବା, ମାଛ କିଣି ଆଣିଲୁ । କାରବାର ହାଟର ବୈଶିଷ୍ଟ୍ୟ ହେଲା ପରିଷ୍କାରପରିଚ୍ଛନ୍ନତା । ରାସ୍ତାର ଦୁଇ କଡ଼ରେ ଧାଡ଼ି ଧାଡ଼ି ହୋଇ ବସିଯାଇଛନ୍ତି ସ୍ତ୍ରୀ ଏବଂ ପୁରୁଷ ବେପାରୀ । ସୁନ୍ଦରଭାବରେ ପସରା ଖୋଲିଦେଉଥା'ନ୍ତି । ବଜାରର ମୂଲ୍ୟଠାରୁ ସାମାନ୍ୟ ଶସ୍ତା ହୋଇପାରେ; କିନ୍ତୁ ଦରଦାମ୍ ଭୁବନେଶ୍ୱର-ବିଶାଖାପାଟଣାଠାରୁ ଅଧିକ ବୋଲି ମନେହେଲା । ପନିପରିବା ଏବଂ ମାଛ ହାଟରେ ସବୁକିନିଷ ସତେଜ ଜଣାପଡୁଥିଲା । ଏହି ସାପ୍ତାହିକ ହାଟରେ ସମସ୍ତ ପଦାର୍ଥ ମିଳୁଥିବାରୁ ନୌସେନାର ଅଫିସର୍ ସେଲ୍ର ଏବଂ ତଳିଆ କର୍ମଚାରୀମାନେ ସେମାନଙ୍କର ଆବଶ୍ୟକତା ଅନୁସାରେ ଜିନିଷ କ୍ରୟ କରୁଥିଲେ । ହାଟଟି ସକାଳ ୮ଟାରୁ ଆରମ୍ଭ ହୋଇ ସନ୍ଧ୍ୟା ୮ଟାଯାଏଁ ଚାଲେ । ଆଳୁ, ପିଆଳ, ଟମାଟୋ, କଖାରୁ, ସଜନା ଛୁଇଁ, ଅଦା-ରସୁଣ, କଞ୍ଚାଲଙ୍କା ମରିଚ, ଲେମ୍ବୁ, ବିନ୍, ଜହ୍ନି, ବାଇଗଣ (କଳା ଓ ଧଳା), କଞ୍ଚା କଦଳୀ, ପାଚିଲା କଦଳୀ, ଲାଉ ଏବଂ କାକୁଡ଼ି ଅପର୍ଯ୍ୟାପ୍ତ ମିଳେ; କିନ୍ତୁ ଫୁଲକୋବି - ବନ୍ଧାକୋବି ଦାମ୍ ଅଧିକ ମନେହୁଏ । ପରିବା ଭିତରେ ପୋଟଳ ଏବଂ ସାରୁ ପ୍ରାୟ ମିଳେନାହିଁ ।

ମୁଁ ଆଉ କ୍ୱାଇଁ ଦୁଇଟି ବ୍ୟାଗ୍ ଧରି ହାଟର ଏ ମୁଣ୍ଡରୁ ସେ ମୁଣ୍ଡଯାଏଁ ପ୍ରଥମେ ବୁଲିଗଲୁ । ଭଲ ବାଇଗଣ, କଖାରୁ, ଜହ୍ନି, ଟମାଟୋ, କଞ୍ଚା କଦଳୀ କିଣିଲୁ । ଅନ୍ୟାନ୍ୟ ପରିବା ମଧ୍ୟ କିଣି ବ୍ୟାଗ୍‌ରେ ଭର୍ତ୍ତି କରିଥିଲୁ । ଶୈଳବାଳା ମଧ୍ୟ

ଯାଇଥିଲେ ହାଟକୁ। ପ୍ରଥମରୁ ବଡ଼ ବଡ଼ ଜାମୁକୋଳି ଦେଖି ତାଙ୍କର ଇଚ୍ଛାହେଲା ଜାମୁକୋଳି କିଣିବାକୁ। ଜାମୁକୋଳି ଅଢ଼େଇ ଶହକୁ କୋଡ଼ିଏ ଟଙ୍କା ଦେଇ କିଣିଲୁ। ପରେ ଆଉ ଅଢ଼େଇଶ କୋଡ଼ିଏ ଟଙ୍କା ଦେଇ କିଣିଲୁ। ସ୍ତ୍ରୀଙ୍କର ମନ ଭାରି ସନ୍ତୋଷ। ଏ ବର୍ଷ ଭୁବନେଶ୍ୱରରେ ଜମାରୁ ସୁଯୋଗ ପାଇନାହାନ୍ତି ଜାମୁକୋଳି ଖାଇବାକୁ। ମୁଁ ମଧ୍ୟ ଖାଇଲି। ଭାରି କଷା-ମିଠାରେ କଳା ଜାମୁକୋଳି ଭଲ ଲାଗିଲା। ସ୍ତ୍ରୀ କହିଲେ-- ତୁମର ଡାଇବେଟିସ୍ ପାଇଁ ଜାମୁକୋଳି ଔଷଧର କାମ କରିବ। ହସିଦେଲି। ଆଉ ଦୁଇ ଚାରିଟା କୋଳି ତାଙ୍କରି ଆଗରେ ଖାଇଦେଲି। ସତରେ ଡାଇବେଟିସ୍ ଭଲ ହୋଇଯାଆନ୍ତା କି!

ହାଟରୁ ପ୍ରାୟ ସବୁ କିଣା ହୋଇଗଲା। ଏଥର ଗଲୁ ମାଛ ହାଟକୁ। ପ୍ରଥମତଃ ବାହାରେ ଧାଡ଼ି ଧାଡ଼ି ହୋଇ ଶୁଖୁଆ ହାଟ। ଛୋଟ ଛୋଟ ଚିଙ୍ଗୁଡ଼ିଠାରୁ ଖଇଙ୍ଗା ଶୁଖୁଆ ଦେଖି, ଶୁଖୁଆ ଖାଉଥିବା ଲୋକ/ ସ୍ତ୍ରୀ ଲୋକଙ୍କର ଲୋଭ ସମ୍ଭାଳା ପଡ଼ିବନି। ମୁଁ ସ୍ତ୍ରୀଙ୍କୁ ପଚାରିଲି-- କିଛି ଚିଙ୍ଗୁଡ଼ି ଶୁଖୁଆ କିଣିବା ? ରୋକ୍‌ଠୋକ୍ ମନା କଲେ। ଆଗକୁ ଚାଲିଲୁ। ଆଗରେ ମାଛହାଟ ଏକ ବିରାଟ ଗୃହ ଭିତରେ ବସିଛି। ଘର ଉପରେ ଛାତ। ଛାଇରେ ବିକାଳିମାନେ ଧାଡ଼ି ଧାଡ଼ି ହୋଇ ବସିଛନ୍ତି। ଏଠାରେ ସମସ୍ତେ ପ୍ରାୟ ବିକାଳି ହେଉଛନ୍ତି ସ୍ତ୍ରୀଲୋକ। ମାଛ ହାଟ ଭିତରକୁ ଯିବାକୁ ଶୈଳବାଳା ମନା କରିଦେଲେ। ତେଣୁ ପରିବା ବ୍ୟାଗ୍ ଦୁଇଟିକୁ ତାଙ୍କ ଜିମାରେ ଦେଇଥିଲୁ। ବର୍ଷା ଦିନ। ମେଘୁଆ ପାଗ ହେବା କଥା; କିନ୍ତୁ ଅସହ୍ୟ ଖରା ବଢ଼ି ଚାଲିଥାଏ। ବର୍ଷାର ଦର୍ଶନ ନାହିଁ। ମାଛ ହାଟରେ ଆମେ ଦୁହେଁ ଘୂରିବୁଲି ପ୍ରତ୍ୟେକ ଶ୍ରେଣୀର ମାଛର ମୂଲ୍ୟ ଅଟକଳ କରୁଥିଲୁ। ଏହି ମାଛ ହାଟର ବୈଶିଷ୍ଟ୍ୟ ହେଲା ଓଜନ ଜମା ନାହିଁ। ଥୁଆ ହୋଇଥିବା ଛୋଟ ମାଛକୁ ଗୁଳା ଦରରେ ବିକାଯାଏ। ଆମକୁ ମୂଲ କରିବାକୁ ପଡୁଥାଏ। ପାଞ୍ଚୋଟି ବା ଛଅଟି ଭାଗ ଛୋଟ ମାଛ (ପାତୁଆ-ଚିଙ୍ଗୁଡ଼ି) ଇତ୍ୟାଦିକୁ ବିକାଳି ସ୍ତ୍ରୀ ଲୋକ ଶହେ ବା ଶହେରୁ ଅଧିକ ଟଙ୍କା କହୁଥା'ନ୍ତି। ତୁମେ ମୂଲାଇ ଆଣିବାକୁ ହେବ। ସେହିପରି ଖଇଙ୍ଗା ମାଛ ଗୋଟା ଦରରେ ଛୋଟଠାରୁ ବଡ଼ ଆକାରର ମାଛକୁ ବିଭିନ୍ନ ମନଇଚ୍ଛା ଦର କରନ୍ତି। ସବୁ ପ୍ରାୟ ସମୁଦ୍ରର ମାଛ। ପୋଖରୀ ବା ନଦୀର ମାଛ ପ୍ରାୟ ମିଳେନାହିଁ।

ଏମାନଙ୍କର ଦର ଦେଖି ଆମେଦୁହେଁ ନିରାଶ ହୋଇଗଲୁ । ମୋ' ହିସାବରେ କେଜିକୁ ପ୍ରାୟ ଶହେ କିମ୍ବା ଶହେ କୋଡ଼ିଏ ପଡୁଛି । ଶେଷକୁ ଅଗତ୍ୟା କିଛି ଛୋଟ ମାଛ (ଛ' ଇଞ୍ଚ ସାଇଜ୍) କୋକଲି ମାଛ ୧୪ଟାକୁ ୨୦ ଟଙ୍କା (କୋଡ଼ିଏ ଟଙ୍କା ।) ଦେଇ କିଣିଲୁ । କାନମୁଣ୍ଡା ଆଉଁସି ଆସିଲୁ । ବିଗତ ସନ୍ଧ୍ୟାରେ କାରବାର୍ ଅଞ୍ଚଳର ଗୋଟିଏ ବସ୍ତିକୁ ମାଛ କିଣିବାକୁ ଯାଇଥିଲୁ । ଦୁଇଟି ପେଣ୍ଡି (ଛ' ଇଞ୍ଚ ସାଇଜ୍)ର ମାଛକୁ ଶହେ ଟଙ୍କା କହିଥିଲା । ଆମେ ଦୁହେଁ ଅଶିଟଙ୍କା ପର୍ଯ୍ୟନ୍ତ ଯାଇଥିଲୁ । ମନା କରିଦେଲା । କହିଲା-- ବର୍ଷାଦିନ ସମୁଦ୍ରକୁ ବୋଟ୍ ଯାଉନାହିଁ । ତା'ର କଥା ସତ ଭାବି ଫେରିଆସିଥିଲୁ ଶୂନ୍ୟ ହସ୍ତରେ ; କିନ୍ତୁ ଆଜି ଏହି ମାଛ ହାଟରେ ଟନ୍ ଟନ୍ ଧରି ମାଛ ଅଛି । ଗ୍ରାହକ କିଣୁଛନ୍ତି ସେହି ଚଢ଼ାଦରରେ । କେହି ବା କିଣୁନାହାନ୍ତି । ପରେ ଶୁଣିଲି ଏହିସବୁ ମାଛକୁ (ବିକା ନ ହେଲେ) ପରଦେଶକୁ ପଠାଯାଏ ଉଚ୍ଚ ଦରରେ । ତେଣୁ ସ୍ଥାନୀୟ ବାସିନ୍ଦା ବା ନୌସେନାର ଅଫିସର ସେଲ୍‌ର ତଳିଆ କର୍ମଚାରୀ ଊଣା-ଅଧିକ ଭଲ ମାଛ ଖାଇବାରୁ ବଞ୍ଚିତ ହୋଇଥା'ନ୍ତି ।

ମାଛ ହାଟରୁ ଫେରିଲୁ କିଛି ମାଛ ଧରି । ସ୍ତ୍ରୀ ବାହାରେ ଅପେକ୍ଷା କରି ହାଲିଆ ହୋଇପଡ଼ିଥିଲେ । ତାଙ୍କର ମନମୁତାବକ କଳା ବ୍ଲାଉଜ୍ ଏହି ସ୍ଥାନରେ ମିଳିଲାନି । ଏଠାରେ ଲୁଗା ବା ପୋଷାକ ଦୋକାନ ବହୁତ କମ୍ ଥିଲା । ମୁଁ କ୍ୱାଇଁଙ୍କୁ କହି ସ୍ତ୍ରୀଙ୍କ ଅଜାଣତରେ କିଛି ଚିଙ୍ଗୁଡ଼ି ଶୁଖୁଆ (ତିରିଶ ଟଙ୍କାର) ଅଢ଼େଇ ଡବାର କିଣିଲି ।

ଆମେ ଫେରିଆସି କାର୍ ଭିତରେ ଜିନିଷପତ୍ର ରଖିଦେଲୁ । ଆଗରୁ କହିଛି ଏହିଠାରେ ମାତ୍ର ଗୋଟିଏ ଜାଗାରୁ ଜାମୁକୋଳି କିଣିଲୁ । ସ୍ତ୍ରୀ ଆନନ୍ଦିତା ହୋଇ କୋଳିଗୁଡ଼ିକୁ ଖାଇ ଚାଲିଲେ ।

ନିକଟସ୍ଥ ଜଳଖିଆ ଦୋକାନରୁ ବରା, ସମ୍ବର ଖାଇଲୁ । ଛଣା ଗରମ ବରା ଭଲ ଲାଗିଲା । ସେତେବେଳକୁ ଏଗାରଟା ତିରିଶ ମିନିଟ୍ ହୋଇଯାଇଥିଲା । କାର୍ ଛୁଟାଇଲେ କ୍ୱାଇଁ କ୍ୱାର୍ଟର ଅଭିମୁଖେ । ପନ୍ଦର ମିନିଟ୍‌ରେ ଘରେ ପହଞ୍ଚିଗଲୁ ।

## ଗୋକର୍ଣ୍ଣ ମହାଦେବ ଦର୍ଶନ :

ଶୀଘ୍ର ଆମର ମଧ୍ୟାହ୍ନ ଭୋଜନ ଶେଷ କଲୁ । ଗୋକର୍ଣ୍ଣ ହେଉଛି କାରବାର ନୌସେନା ଦେଶଠାରୁ ପ୍ରାୟ ପଞ୍ଚଷଠି କି.ମି. ଦୂର । ସମସ୍ତଙ୍କର ମନ ଖୁସି । ଦୁଇନାତୁଣୀ ସଜବାଜ ହୋଇପଡ଼ିଲେ । ସ୍ମିତା ଏବଂ ଶୈଳବାଳା ଖାଇବା ଶେଷ ପରେ ଘରର ଚାକରାଣୀକୁ ଲଗାଇ ବାସନକୁସନ ସଫା କରାଇଲେ । ଲୁଗାପଟା ଭାଙ୍ଗି ଘରେ ଥୋଇଲେ । ବାଟ ପାଇଁ କିଛିଟା ଜଳଖିଆ ଏବଂ ଦୁଇଟା ପାଣି ବୋତଲ ସହ କ୍ୟାମେରାକୁ ବ୍ୟାଗ୍ ଭିତରେ ରଖିଥିଲେ ।

ଜ୍ୱାଇଁଙ୍କର ମାରୁତି କାର୍‌ରେ ଆମେମାନେ ବଡ଼ ଚାରିଜଣ ଛୋଟ ଦୁଇଜଣ ଆରାମରେ ବସିଲୁ । କାର୍ ଛୁଟି ଚାଲିଲା ଗୋକର୍ଣ୍ଣ ଅଭିମୁଖରେ । ଦିନ ପ୍ରାୟ ୧ଟା ୩୦ ମିନିଟ୍‌ରେ ଘରୁ ବାହାରିପଡ଼ିଲୁ । ପ୍ରାକୃତିକ ଦୃଶ୍ୟରେ ଭରପୂର ପର୍ବତ-ଜଙ୍ଗଲ ମଧ୍ୟ ଦେଇଯାଉଥିଲୁ ଜାତୀୟ ରାଜପଥରେ । ଜାତୀୟ ରାଜପଥର ଅବସ୍ଥା ବହୁତ ଶୋଚନୀୟ ଥିଲା । ଖାଲ-ଢିପ ରାସ୍ତାରେ ଦେଖି ରଖି ଗାଡ଼ି ଚଳାଇବାକୁ ପଡୁଥାଏ । ଅତୀବ ମନୋରମ ଦୃଶ୍ୟ ଉଚ୍ଚ ପାହାଡ଼ମାଳା ସହିତ ଅପର ପାର୍ଶ୍ୱରେ ସମୁଦ୍ରର ଲହଡ଼ିମାଳାର ନାଚ । ବାମପଟେ ପର୍ବତମାଳାର ଅଙ୍ଗଭଙ୍ଗୀ ସହ ସବୁଜ ଶୋଭାରାଶି ଏବଂ ରାସ୍ତାର ଅପରପଟରେ ଆରବସାଗରର ବିଚିତ୍ର ଲୀଳାଖେଳା ଆମମାନଙ୍କର ମନରେ ଯୁଗପତ୍ ଆନନ୍ଦ ଆଣି ଦେଉଥାଏ । ପାହାଡ଼କୁ କଟାହୋଇ ରାସ୍ତା ହୋଇଛି । ରାସ୍ତାର ଓସାର ବେଶୀ ନାହିଁ । ଅଙ୍କାବଙ୍କା ରାସ୍ତାର ଖାଲ-ଢିପ ମନରେ ଭ୍ରାନ୍ତଧାରଣା ସୃଷ୍ଟି କରେ । ଆମେ ବିପଦର ସମ୍ମୁଖୀନ ହେବୁନି ତ ? କିନ୍ତୁ ପ୍ରାକୃତିକ ସୌନ୍ଦର୍ଯ୍ୟ ଆମକୁ ସେହି ଧାରଣାରୁ ଫେରାଇଆଣେ । କାର୍ ଆମର ଆଗକୁ ଆଗକୁ ମାତ୍ର ଚାଳିଶି/ପଚାଶ କି.ମି. ବେଗରେ ଯାଉଥାଏ । ପିଲାମାନେ ଅସୀମ ଆନନ୍ଦରେ ବିଭୋର ।

କାରବାର ନୌସେନାବେଶର ଦ୍ୱିତୀୟ ଫାଟକ ଦେଇ ଆମେ ବାହାରିଥିଲୁ । ବାଟରେ କାର୍ କୌଣସି ଜାଗାରେ ଅଟକି ରହି ନ ଥିଲା । ଗଲାବେଳେ ଛୋଟ-ବଡ଼ ଗାଁ ଛୋଟ ସହର ଅତିକ୍ରାନ୍ତ କରିଥିଲୁ । ସେଗୁଡ଼ିକ ହେଲା ଚେଣ୍ଡିଆ, ପୋଷ୍ଟ ଚେଣ୍ଡିଆ, ଅଣ୍ଡାଲି, ମୁଡ଼ଗା, ଅଉସା ବାଲଖେରି (BalKheri), ଆଙ୍କୋଲା-

(Ankola), ବେଡ଼୍ସ(Bedse), ସ୍କ୍ରିଲ୍(Screel), ଗଙ୍ଗୁଭାଲି ବ୍ରିଜ(Ganguavalli bridge), ମାଡ଼ାଗ୍ନିରି(Madangiri), ଟୋରକେ(Toreke), ଶେଷରେ ଗୋକର୍ଣ୍ଣା(Gokarna)।

ପ୍ରତ୍ୟେକସ୍ଥଳକୁ ନିରୀକ୍ଷଣ କଲୁ। କୌଣସି ଛୋଟବଡ଼ ସ୍ଥାନରେ ଆଶାନୁରୂପ ଗହଳି ନାହିଁ। ନିର୍ଜନତା ଯେପରି ଏହି ପ୍ରାକୃତିକ ସୌନ୍ଦର୍ଯ୍ୟର ଅନ୍ୟତମ ଅଙ୍ଗପରି ଲାଗିଲା। କୌଣସି ଲୋକ ଯିବାଆସିବାର ସଙ୍କେତ ନ ଥିଲା। କେବଳ କେତୋଟି ପ୍ରାଇଭେଟ୍ ଏବଂ ସରକାରୀ ବସ୍ ଦେଖିଲୁ ରାସ୍ତାର ଅଳ୍ପକିଛି ଯାତ୍ରୀ ଧରି ଯିବାର। କାଁ ଭାଁ ଗୋଟିଏ ମଟରସାଇକେଲ, ଟ୍ରକ୍ ଯିବାଆସିବା କରିବାର ଦେଖିଲୁ। ଗୋଆଠାରୁ ବାଙ୍ଗାଲୋର ଯାଉଥିବା ଏହି ଜାତୀୟ ରାଜପଥ ପଶ୍ଚିମାଞ୍ଚଳ ଘାଟରେ ଯାଉଥିବାରୁ ବୋଧହୁଏ ଜନବସତିର ଯଥେଷ୍ଟ ଲୋକଗହଳି ନାହିଁ।

କାରବାର ନୌସେନା ଗେଟ୍-୨ରୁ ପ୍ରାୟ ପଞ୍ଚାବନ କି.ମି. ଆସିଲାପରେ ଡାହାଣ ପଟକୁ ଗୋକର୍ଣ୍ଣା ଲେଖାଯାଇଥିଲା। ଆମେ କାଁ ଭାଁ ବୁଲୁଥିବା ଲୋକ ଏବଂ ଦୋକାନୀଠାରୁ ଗୋକର୍ଣ୍ଣାର ଯିବା ପଥ ସଠିକ୍ ନିରୂପଣ କରିଥିଲୁ। ଏହି-ସ୍ଥାନର ପୂନଶ୍ଚ ଦଶ କି.ମି. ଗଲେ ଗୋକର୍ଣ୍ଣା ପଡ଼ିବ । ଆମମାନଙ୍କ ମନରେ ଉତ୍ସାହ ଦୁଇଗୁଣ ହୋଇଗଲା। ଆଙ୍କୋଲା ପରେ ହାଟିକେରୀଠାରେ ଡାହାଣପଟକୁ ବୁଲିଲୁ। ବାଟ ଠିକ୍ ଥିଲା। କାର୍ ଛୁଟିଲା କ୍ଷୀପ୍ର ଗତିରେ। ଏହି ରାସ୍ତାରେ ଖାଲ-ଡିପ ନଥିଲା। ସୁନ୍ଦର ପିଚୁ ରାସ୍ତା। କାର୍ ସହିତ ଗଲାବେଳେ ଦୁଇପଟର ପ୍ରାକୃତିକ ଦୃଶ୍ୟ ଅତି ମନୋମୁଗ୍ଧକର ଥିଲା। କିଛି ବାଟ ଗଲାପରେ ଗଙ୍ଗୁଭାଲି ବ୍ରିଜ୍(Ganguvalli Bridge) ପଡ଼ିଲା। ଏହି ଭାଲି ବହୁତ ଗଭୀର। ଉପରେ ବ୍ରିଜ୍ ହୋଇଛି। ତଳେ ସମୁଦ୍ରର ପାଣି କେଉଁକାଳରୁ ଭର୍ତ୍ତି ହୋଇଛି। ସମ୍ଭବତଃ ବର୍ଷାଦିନରେ ସମୁଦ୍ରର ପାଣିରେ ଜୁଆର ଆସିଲେ ପୋଲର ଉପରିଭାଗ ବୁଡ଼ିଯାଉଥିବ ବୋଲି ଅନୁମାନ କଲୁ। ଏହି ପୋଲର ଦୁଇ ପାଖରେ ତଳରେ ପାଣିର ଗଭୀରତା ମାପିବା ମାନସିକ ସ୍ତରରେ କିଛିଟା ଦ୍ୱନ୍ଦ୍ୱ ସୃଷ୍ଟି କରୁଥିଲା ; କିନ୍ତୁ ମନଭରି ସମସ୍ତେ ଏହି ଗଙ୍ଗୁଭାଲିକୁ ଦେଖୁଥିଲେ। ଏହି ପୋଲର ଲମ୍ବ ପ୍ରାୟ ପାଞ୍ଚଶହ ମିଟର ଥିଲା। ଏହା ଏକମାତ୍ର ସଂଯୋଗ ରୂପେ ଗୋକର୍ଣ୍ଣକୁ ଯିବା ପଥ।

ଶେଷରେ କାର୍ ଆସି ଗୋକର୍ଣ୍ଣାରେ ପହଞ୍ଚିଲା ମନର ଉଦ୍‌ଗ୍ରୀବ ସହ ତାଳଦେଇ। ଛୋଟ ସହରଟିଏ ସମୁଦ୍ର କୂଳରେ ଅବସ୍ଥିତ। କିଛି ଦୋକାନ ବଜାର ଅଛି, ଜନବସତି ଅଛି। ଲୋକଗହଳିରେ ସହରଟା ବିଶେଷ ଉଚ୍ଛୁଳି ପଡୁ ନ ଥିଲା। କେବଳ ଗୋକର୍ଣ୍ଣା ମହାଦେବଙ୍କୁ ଦର୍ଶନ କରି ଆସୁଥିବା ଦୂରଦୂରାନ୍ତର ଦର୍ଶନାଭିଳାଷୀ ତୀଥଯାତ୍ରୀଙ୍କ ପାଇଁ ଯାହା ଗହଳି ଥିଲା । ଲକ୍ଷ୍ୟକଲି ବଡ଼ ବଡ଼ ହୋଟେଲ୍‌ମାନ ନିର୍ମିତ ହୋଇଛି ତୀର୍ଥଯାତ୍ରୀଙ୍କ ପାଇଁ। ବଡ଼ ଗାଡ଼ିଗୁଡ଼ିକ ମୁଖ୍ୟ ରାସ୍ତାରେ ରହିବାର ସୁବିଧା ଅଛି। ସେଠାରୁ ଗୋକର୍ଣ୍ଣା ମନ୍ଦିର ପ୍ରାୟ ଗୋଟିଏ କି.ମି. ହେବ। ଆମର କାର୍ ସେହି ରାସ୍ତାରେ ଧୀରେ ଧୀରେ ଆଗେଇଲା। ଆମେମାନେ ଗୋକର୍ଣ୍ଣା ମନ୍ଦିର ସମ୍ମୁଖରେ ନିରାପଦରେ ଆସି ପହଞ୍ଚିଗଲୁ। କାର୍‌କୁ ମନ୍ଦିର ପାଚେରୀ ପଟ (ସମୁଦ୍ର ଦିଗ)ରେ ରଖିଲୁ। ସେତେବେଳକୁ ପ୍ରାୟ ଦିନ ତିନିଟା ହୋଇଥିଲା।

## ଗୋକର୍ଣ୍ଣା ମନ୍ଦିର :

ବାହାରୁ ମନ୍ଦିରକୁ ଅନୁଧ୍ୟାନ କଲୁ। ଉଚ୍ଚ ପାଚେରୀ ହୋଇଛି। ପାଚେରୀରୁ ଗୁଡ଼ିଏ ଘର ବାହାରିଛି। ଦିଅଁଙ୍କ ଘର ଏବଂ ସେବାୟତଙ୍କର ରହିବା ଘର। ଅତିଥିମାନଙ୍କର ଘର ମଧ୍ୟ ଅଛି। ଏହାର ଘର ତିଆରି ପ୍ରଣାଳୀ ସ୍ୱତନ୍ତ୍ର। ଭିତରକୁ ନୁଆଁଣିଆ ହୋଇଛି ଟାଇଲ୍ ଛପର। ବହୁତ ଚେଷ୍ଟା କରି ମନ୍ଦିରର ଚୂଡ଼ାର କିଛି ଅଂଶ ବାହାରୁ ଦେଖିଲି। ଛୋଟ ମନ୍ଦିର। ଆମେମାନେ ଉତ୍କଣ୍ଠାର ସହ ସମୁଦ୍ର ପଟକୁ ମୁହଁ କରିଥିବା ପ୍ରଧାନ ପ୍ରବେଶ ପଥରେ ପହଞ୍ଚିଲୁ। ଜୋତା, ଚପଲ ରଖିବାକୁ ଷ୍ଟାଣ୍ଡ୍ ଅଛି। ନିଜ ଦାୟିତ୍ୱରେ ରଖିବାକୁ ହେବ। କୌଣସି ଜୋତା-ଚପଲ ରଖିବାବାଲା ନାହାନ୍ତି। ସମସ୍ତ ତୀର୍ଥଯାତ୍ରୀ ନିର୍ବିକାର ଚିତ୍ତରେ ଜୋତା, ଚପଲ ରଖୁଛନ୍ତି ବିନା ଜଗୁଆଳିରେ। ଏଠାରେ ଚୋରି ହେବାର ସମ୍ଭାବନା ଜମାରୁ ନାହିଁ। ଆଉ ଗୋଟିଏ କଥା ଦେଖିଲି, ଏଠାରେ ଜଣେ ହେଲେ ଭିକାରୀ ନାହାନ୍ତି ଯେ ତୁମକୁ ହାତ ପତାଇ ପଇସା ମାଗିବେ। ଆର୍ଥିକ ସ୍ୱଚ୍ଛଳତା ଏବଂ ମାନସିକ ସ୍ତରରେ ଉଚ୍ଚ ଭାବନା ଅଛି। କାହାକୁ ଗୋଡ଼ ଭାଙ୍ଗି ମାଗିବାର ଦିଆଯାଇ ନଥିଲା। ଆଉ ଗୋଟିଏ କଥା ଅନୁଧ୍ୟାନ କଲି, ଜୋର୍ ଜବରଦସ୍ତ ପଣ୍ଡା ବା ପୂଜକମାନେ ତୁମକୁ

ଭିଡ଼ିଧରି ଦିଅଁ ଦେଖାଇବା ବା ପୂଜା କରିବା ପାଇଁ ପାଖକୁ ଆସୁନାହାନ୍ତି । କିଛିଟା ବିଚିତ୍ର ଲାଗିଲା । ସାଉଥ୍ ଇଣ୍ଡିଆନ୍ ଅଞ୍ଚଳର କିଛିଟା ପ୍ରଭାବ ପଡ଼ିଥିଲା । ତେଣୁ ଯାତ୍ରୀମାନେ ସନ୍ତୋଷ ମନରେ ମନ୍ଦିରରେ ପ୍ରବେଶ କରୁଥିଲେ ।

ଆମେମାନେ ଗୋଡ଼ ଧୋଇ ମୁଣ୍ଡରେ ପାଣି ମାରି ପଶ୍ଚିମପଟ ଦୁଆର ଦେଇ ମନ୍ଦିରକୁ ପ୍ରବେଶ କଲୁ । ମାତ୍ର କୋଡ଼ିଏ ମିଟର ଦୂରରେ ମୁଖ୍ୟ ମନ୍ଦିରର ପ୍ରବେଶ ଦ୍ୱାର; କିନ୍ତୁ ବନ୍ଦ ଥିଲା ମଧ୍ୟାହ୍ନ ଭୋଗ ପରେ । ପଣ୍ଡାକୁ ପଚାରିବାରେ କହିଲା, "ଠିକ୍ ପାଞ୍ଚଟାବେଳକୁ ମନ୍ଦିର ଭିତରକୁ ପ୍ରବେଶ କରି ଗୋକର୍ଣ୍ଣ ମହାଦେବଙ୍କୁ ଦର୍ଶନ କରିହେବ ।" ସମ୍ମୁଖରେ ପ୍ରସ୍ତର ଗୋଲେଇ ସ୍ତମ୍ଭରେ ସ୍ପର୍ଶ କରି ମୁଣ୍ଡିଆ ମାରିଲୁ । ଏହି ସ୍ତମ୍ଭ ଉପରେ ବୋଧହୁଏ ବୃଷଭ ପ୍ରତିଷ୍ଠିତ ଅଛନ୍ତି । ଉପରଭାଗ ଭଲଭାବରେ ଦୃଶ୍ୟ ହେଉ ନ ଥିଲା । ମନ୍ଦିରବେଢ଼ା ଚାରିପାଖେ ବୁଲିଲୁ । ଦକ୍ଷିଣ ପଟେ ଅନ୍ୟ ଏକ ଦ୍ୱାର ଅଛି । ବୋଧହୁଏ ପ୍ରସ୍ଥାନ ଦ୍ୱାର । ମନ୍ଦିରଟି ବେଶୀ ଉଚ୍ଚତା ଜଣାପଡ଼ିଲାନି । ମାତ୍ର ୬୦ଫୁଟରୁ ୭୦ ଫୁଟ (୨୦-୨୨ ମିଟର) ଉଚ୍ଚ ହେବ । ମୁଗୁନି ପଥରରେ ନିର୍ମିତ ଦାକ୍ଷିଣାତ୍ୟ ଶୈଳୀରେ ମନ୍ଦିରଟି ଗଠନ କରାଯାଇଛି । କୌଣସି ପୂଜାରୀ ଅବା ମନ୍ଦିର ପ୍ରଶାସନଠାରୁ ମନ୍ଦିରଟି କେଉଁ କାଳରେ ନିର୍ମିତ ହୋଇଥିଲା ସଠିକ୍ ଉତ୍ତର ମିଳିଲାନି । କେତେଜଣ ସେବାୟତ କହିଲେ-- ଅନନ୍ତ ଯୁଗରୁ ମନ୍ଦିର ଅଛି । ପ୍ରତ୍ୟକ୍ଷ ଶିବଲିଙ୍ଗ । ପାତାଳରୁ ବାହାରିଛନ୍ତି । ଆଉ ଜଣେ ପଣ୍ଡିତଙ୍କୁ ପଚାରିଲି, ସେହି ଏକା କଥା । ସେ ଗୋଟିଏ କାଗଜର ଟିପପ୍ପଣୀ ଦେଲେ ।

କଥିତ ଅଛି ଯେ ମହାପ୍ରତାପୀ ରାବଣ ନିଜ ଦେଶ ଲଙ୍କାରେ ଆତ୍ମରୂପୀ ଶିବ ଲିଙ୍ଗ ପ୍ରତିଷ୍ଠା କରିବା ଲକ୍ଷ୍ୟରେ କୈଳାସ ପର୍ବତରେ ଯାଇ ଘୋର ତପସ୍ୟା କଲା । ମହାଦେବ ଶିବ ତା'ର କଥା ରକ୍ଷାକରିବା ପାଇଁ ଆତ୍ମରୂପୀ ଲିଙ୍ଗ ରୂପରେ ପ୍ରତୀୟମାନ ହେଲେ । ରାବଣ ସେହି ଲିଙ୍ଗ ଧରି ଲଙ୍କାପୁରକୁ ଗମନ କରିବାକୁ ଲାଗିଲା । ସମସ୍ତ ଦେବତା ତ୍ରସ୍ତ, ବ୍ୟାକୁଳ ହୋଇ ଗଣେଶଙ୍କର ସାହାଯ୍ୟ ଭିକ୍ଷା କଲେ । ତତ୍‌କ୍ଷଣାତ୍ ବିଶାଳ ରୂପରେ ରାବଣାସୁରର ସାମ୍ନା କଲେ ଗଣେଶଜୀ । ରାବଣ ଭୟଭୀତ ହୋଇ ଏହି ଗୋକର୍ଣ୍ଣ ସ୍ଥାନରେ ଆରବ ସାଗର କୂଳରେ (କର୍ଣ୍ଣାଟକ ରାଜ୍ୟର) ଶିବ ଲିଙ୍ଗକୁ ପାତାଳପୁରରେ ଲୁଚାଇ ଦେଇ ଚାଲିଗଲେ ।

ସେହିଦିନଠାରୁ ଶିବଲିଙ୍ଗ ସେଠାରେ ପ୍ରକଟ ହୋଇ ଶତ-ସହସ୍ର କର୍ଣ୍ଣ ରୂପ ଧାରଣ କରି ଜ୍ୟୋତି ପ୍ରକାଶ କରି ଆସୁଛନ୍ତି। ମନ୍ଦିରକୁ ଚାହିଁଲି। ମନୋରମ କଳା କାରୁକାର୍ଯ୍ୟରେ ଭର୍ତ୍ତି। ପୂରା ଦେଉଳଟି ମୁଗୁନି ପଥର ନିର୍ମିତ। ମୁଁ ଅନୁମାନ କଲି ମନ୍ଦିର ନିର୍ମାଣ ସମୟ ପାଞ୍ଚଶହରୁ ଛଅଶହ ଭିତରେ। ଅନୁମାନ ସତ ହୋଇ ନ ପାରେ। ଏଥିପାଇଁ ଅଧିକ ଗବେଷଣା ଲୋଡ଼ା। ଏଠାକାର ପ୍ରଶାସନ ପାଖରେ ବିଶେଷ ତତ୍ତ୍ୱ ନାହିଁ। ପୋଲିସକୁ କେଉଁ ସ୍ଥାନରେ ଦେଖିପାରିଲୁନି-- ବସ୍, ଟ୍ୟାକ୍ସି ଷ୍ଟାଣ୍ଡରେ, ମନ୍ଦିର ଭିତରେ ଅବା ବାହାରେ ଏବଂ ସମୁଦ୍ର କୂଳରେ। ମନ୍ଦିର ବେଢ଼ା ଚାରିପାଖରେ ଆମେ ବୁଲୁଥିଲୁ। ସମୟ ପ୍ରାୟ ତିନିଟା ହେବ। ଜ୍ୱାଇଁ ଆସି ଖବରଦେଲେ ଶୀଘ୍ର ଭୋଗମଣ୍ଡପକୁ ଗଲେ ଆମେମାନେ ଗୋକର୍ଣ୍ଣ ମହାଦେବଙ୍କର ପ୍ରସାଦ ଖାଇପାରିବା। ଆମେ ସମସ୍ତେ ଖୁସି ହୋଇଗଲୁ। ଏଠାରେ ପ୍ରସାଦ ସେବନର ଶେଷ ସମୟ ହେଉଛି ଦିନ ୨ଟା ୩୦ମିନିଟ୍। ମନେହେଲା ମହାଦେବଜୀ ଆମକୁ ଡାକି କହୁଛନ୍ତି-- ଶୀଘ୍ର ଯାଇ ମୋର ପ୍ରସାଦ ସେବନ କର ଏବଂ ପରେ ଦିନ ୫ ଘଟିକାରେ ଆସି ଦର୍ଶନ କରିବ। ବିଚିତ୍ର ଘଟଣା ହେଲା, କାରବାରଠାରୁ ଆସିଲା ପର୍ଯ୍ୟନ୍ତ ମନେହେଲା କେହି ଆମକୁ ବାଟ କଢ଼ାଇ ଆଣୁଛନ୍ତି। ପ୍ରତ୍ୟେକ ଛକରେ କେହି ନା କେହି ଆମକୁ ସଠିକ୍ ମନ୍ଦିର ବାଟ ବତାଇ ଦେଉଛନ୍ତି। ଲୀଳା ବିଚିତ୍ର। ଏହି ଅଞ୍ଚଳରେ (କର୍ଣ୍ଣାଟକରେ) ଗୋକର୍ଣ୍ଣ ମହାଦେବଙ୍କୁ ପ୍ରତ୍ୟକ୍ଷ ଆତ୍ମଲିଙ୍ଗ ବୋଲି ଭାବନ୍ତି ଏବଂ ଭକ୍ତର ମନସ୍କାମନା ପୂରଣ କରନ୍ତି।

ଆମେମାନେ ହାତ ଧୋଇ ପ୍ରଶାସନ ପ୍ରକୋଷ୍ଠର ଉପର ମହଲାକୁ ଗଲୁ। ସେଠାରେ ପ୍ରସାଦ ପରିବେଷଣ ହେଉଥାଏ। ଦେଖିଲୁ ମାତ୍ର ମନ୍ଦିରର ଚାରିଜଣ ପୂଜକ ଭୋଜନରେ ବସିଛନ୍ତି। ଆମକୁ ଭୋଜନର ଖବର ଦେଇଥିବା ସେହି ପ୍ରଶାସନର ଭଦ୍ରବ୍ୟକ୍ତି ଆଗରୁ ଯାଇ ଆମର ଖାଇବା ପାଇଁ କହି ଆସିଥିଲେ। ଆମେମାନେ (ଜ୍ୱାଇଁ, ଝିଅ, ଦୁଇ ନାତୁଣୀ, ସ୍ତ୍ରୀ ଏବଂ ମୁଁ) ପହଞ୍ଚିଲା ମାତ୍ରେ, ଆମକୁ ହସ ହସ ମୁହଁରେ ସ୍ୱାଗତ କରିଥିଲେ ପୂଜାରୀଜଣକ। ସଙ୍ଗେ ସଙ୍ଗେ ବସିବାକୁ କହିଲେ ଏବଂ ଖଲିପତ୍ର ସମସ୍ତଙ୍କ ଆଗରେ ଲଗାଇଦେଲେ। ପାଣି ଛିଞ୍ଚିଲା ପରେ ଅନ୍ନ, ଡାଲମା ଏବଂ ଆମ୍ବୁଲରାଇ ଖଟା ସମସ୍ତଙ୍କ ପତ୍ରରେ ପରଶିଦେଲେ। ମୁଁ ଗୋକର୍ଣ୍ଣ ମହାଦେବଙ୍କର ଅପାର କରୁଣା ଉପଲବ୍ଧ କରୁଥାଏ ଅନ୍ତର ଭିତରେ।

କିଛି ସମୟ ବିଳମ୍ବ ହୋଇଥିଲେ, ଆମେମାନେ ଏହି ଅମୃତ ସେବନରୁ ଅଲଗା ହୋଇଯାଇଥା'ନ୍ତୁ; କିନ୍ତୁ ଠାକୁରଙ୍କର ମହିମା ଅସୀମ। ସମସ୍ତେ ଆନନ୍ଦ ମନରେ ଭୂରି ଭୋଜନ କଲୁ। ମନ ଆପ୍ୟାୟିତ ହୋଇଗଲା। ପ୍ରସାଦ ସେବନ କରିସାରିବା ପରେ ଆମେମାନେ ମନ୍ଦିର ବାହାରକୁ ଆସି ନିକଟବର୍ତ୍ତୀ ସମୁଦ୍ର କୂଳକୁ ଗଲୁ। ଦର୍ଶନ ପାଇଁ ଦେଢ଼ଘଣ୍ଟା ବାକିଥାଏ। ସମୁଦ୍ର କୂଳରେ ବୁଲ୍‌ଚାଲ କଲୁ। ଛୋଟବଡ଼ ଦୋକାନରେ ଭର୍ତ୍ତି। ବହୁତ ତୀର୍ଥଯାତ୍ରୀ ସେଠାରେ ବୁଲୁଥିଲେ ଏବଂ ସମୁଦ୍ରର ପ୍ରାକୃତିକ ଦୃଶ୍ୟ ଉପଭୋଗ କରୁଥିଲେ। ବହୁତ ଖରା ଥିଲା। ଘରୁ ନେଉଥିବା ଛତାଟି ଆଣି ବଡ଼ ନାତୁଣୀ ମୋତେ ଦେଲା। ସେମାନେ ସେହି ଭୀଷଣ ଖରାରେ ଆନନ୍ଦରେ ବୁଲୁଥିଲେ। ମୁଁ ଛତା ଧରିଥିଲି। ଶୈଳବାଳାଙ୍କୁ ଗୋଟିଏ ଦୋକାନରେ ଚୌକିରେ ବସାଇ ଦେଇଥିଲି। ସ୍ମିତା ମଧ୍ୟ ଆମ ସାଥିରେ ସମୁଦ୍ରକୂଳ ବୁଲିଯାଇଥିଲା ସେହି ଭୀଷଣ ଖରାରେ। କ୍ୱାଇଁ ନାତୁଣୀମାନଙ୍କୁ ନେଇ ଗୋଟିଏ ଦୋକାନରୁ ବୃହତ୍‌କାୟ ପଇଡ଼ ଦେଖାଉଥିଲେ।

ପ୍ରାୟ ଏକଘଣ୍ଟା ବୁଲିଲା ପରେ ଆମେମାନେ ମନ୍ଦିର ଭିତରକୁ ଫେରିଆସିଲୁ। ପାଞ୍ଚଟା ବାଜିବାକୁ ଅଳ୍ପ ସମୟ ଥାଏ। ମନ୍ଦିର ପ୍ରଶାସନଠାରୁ ୨୫ଟଙ୍କା ଦେଇ ରସିଦ୍ ଆଣିଲୁ ଦିଅଁଙ୍କର ଧୂପ ଆଳତି ପାଇଁ। ଏହି ମନ୍ଦିରରେ ଗୋକର୍ଣ୍ଣ ମହାଦେବଙ୍କ ପାଖରେ ବିଭିନ୍ନ ପ୍ରକାର ଅଭିଷେକ ହୁଏ। ଏହି ଅଭିଷେକ ପାଇଁ ମୂଲ୍ୟ ନିର୍ଦ୍ଧାରିତ ଅଛି। ଯଥା-- ଶହେ ବେଲପତ୍ର ଚଢ଼ାଇଲେ ୧୦୧ ଟଙ୍କା। ଅଭିଷେକ କଲେ ୨୦୧ ଟଙ୍କାରୁ ୫୦୧ ଟଙ୍କା ପର୍ଯ୍ୟନ୍ତ ଅଛି। ପ୍ରତିଦିନ ହଜାର ହଜାର ଯାତ୍ରୀ ଏହି ଅଭିଷେକମାନ ଦିଅଁଙ୍କ ପାଖରେ କରିଥା'ନ୍ତି।

ଆମ ହାତରେ ଦିଅଁଙ୍କୁ ଦର୍ଶନ କରିବାକୁ ପ୍ରାୟ ଅଧଘଣ୍ଟା ମିଳିଛି। ପୂଜାରୀଟି କହିଲା, "ବେଢ଼ାରେ ଥିବା ଦିଅଁମାନଙ୍କୁ ଦେଖିଆସନ୍ତୁ।" ଆମେ ସମୟ ନଷ୍ଟ ନ କରି ମନ୍ଦିର ବେଢ଼ାରେ ପାଣିରେ ଥିବା ଲିଙ୍ଗଙ୍କୁ ଦର୍ଶନ କଲୁ। ମନ୍ଦିରଟି ଭୂଇଁ ଉପରୁ ମାତ୍ର ଆଠ ଦଶଫୁଟ ଅଛି। ଉପରେ ଖପର ଛାତ ପଡ଼ିଛି। ମନ୍ଦିର ତଳକୁ ତଳକୁ ଆଠୋଟି ମାତ୍ର ପାହାଚ ଅଛି। ତା'ପରେ ପାଣିରେ ସେ ଲିଙ୍ଗ ବୁଡ଼ିଯାଇଛନ୍ତି। ଭକ୍ତାଳୁମାନେ ପାହାଚ ତଳକୁ ଯାଇ ପାଣିଥିବା ଲିଙ୍ଗ ପାଖକୁ ସ୍ପର୍ଶକରି ଜଳ ଆଣି ଦେହ ମୁଣ୍ଡରେ ଛିଞ୍ଚନ୍ତି ଏବଂ ଚଉଖୁଣ୍ଟିଆ ହୋଇଥିବା ବାଟ ଦେଇ ମହାଦେବଙ୍କୁ

ପ୍ରଦକ୍ଷିଣ କରି ଉପରକୁ ଆସନ୍ତି । ମୁଁ ଆଉ ପିଲାମାନେ ଏବଂ ସ୍ତ୍ରୀ ପାହାଚ ତଳକୁ ଓହ୍ଲାଇଲୁ ନାହିଁ । ପାଣିରେ ପାହାଚ ଖସଡ଼ା ହୋଇଥିଲା । କେବଳ ସାନ ଝିଅ ଏକାକୀ ପାହାଚ ତଳକୁ ଯାଇ ଚାରିପଟ ପ୍ରଦକ୍ଷିଣ କରି ଲୁକ୍କାୟିତ ମହାଦେବଙ୍କର ପାଣି ଆଣି ଆମକୁ ଦେଲା । ଆମେ ପାଦୁକା ସେବନ କଲୁ ।

ସମୟ ହୋଇ ଆସୁଥିଲା । ଆମେମାନେ ତରତର ହୋଇ ପ୍ରଶାସନ କାର୍ଯ୍ୟାଳୟ ପରିସରରେ ଥିବା ଦେବୀ ପାର୍ବତୀଙ୍କୁ ଦର୍ଶନ କଲୁ । ମନୋରମ ମୂର୍ତ୍ତି । ମୁଗୁନି ପଥରରେ କଳା ମୂର୍ତ୍ତି । ଆଶୀର୍ବାଦ ଦେବା ଭଙ୍ଗୀରେ ଦେବୀ ଠିଆ ହୋଇଛନ୍ତି । ମନ୍ଦିର କବାଟ ବନ୍ଦ ଥିଲା ;କିନ୍ତୁ ଲୁହା କବାଟର ଜାଲିରୁ ଦେବୀଙ୍କୁ ଦର୍ଶନ କରି ଆନନ୍ଦ ପାଇଲୁ । ତାଙ୍କର ସିନ୍ଦୂର ନେଇ ସ୍ତ୍ରୀ ଏବଂ ଝିଅ କପାଳରେ ମାରିଲେ ।

ଦୂରରୁ ଜ୍ୱାଇଁ ଡାକ ଛାଡ଼ିଲେ -- ସମୟ ହୋଇଗଲା, ଶୀଘ୍ର ଗୋକର୍ଣ୍ଣ ମହାଦେବଙ୍କର ଦର୍ଶନ କରିବାକୁ । ପାଞ୍ଚଟା ବାଜିବାକୁ ପାଞ୍ଚ ମିନିଟ୍ ଥାଏ । ଆମେମାନେ ଯଥାଶୀଘ୍ର ଯାଇ, ମୁଖ୍ୟଦ୍ୱାର ଠାରେ ଠିଆହେଲୁ । ପୂଜାରୀର ନିର୍ଦ୍ଦେଶରେ ମୁଁ ଏବଂ ଜ୍ୱାଇଁ ଦେହରୁ ସାର୍ଟ ଏବଂ ଗଞ୍ଜି କାଢ଼ିଦେଲୁ । ସମସ୍ତ ପୁରୁଷ/ ବାଳକମାନେ ଦେହରୁ ମଧ୍ୟ ଗଞ୍ଜି - ସାର୍ଟ ବାହାର କରିଦେଲେ । ମନ୍ଦିରର କାନ୍ଥରେ ଉଲ୍ଲେଖ ଅଛି-- ପ୍ରଶାସନ ପକ୍ଷରୁ ଖାଲି ଦେହରେ ଗୋକର୍ଣ୍ଣ ମହାଦେବଙ୍କୁ ପୁରୁଷମାନେ ଦର୍ଶନ କରିପାରିବେ । ମହିଳାମାନଙ୍କ ପାଇଁ କିଛି ନିୟମ ନାହିଁ । ଯେଉଁମାନେ ଅଭିଷେକ କିମ୍ବା ଧୂପ ବନ୍ଦନା ପାଇଁ ରସିଦ୍ ଧରିଥିବେ, ସେମାନେ ଏକ ପଟରେ ଏବଂ ଅନ୍ୟମାନେ ଆଉ ଏକ ଧାଡ଼ିରେ ଆସିଲେ । ବଡ଼ ଶୃଙ୍ଖଳିତ ମନୋଭାବ ତୀର୍ଥଯାତ୍ରୀଙ୍କର ଏବଂ ମନ୍ଦିରର ସେବକ/ପୂଜାରୀମାନଙ୍କର । ଆମେମାନେ ଅତି ଆରାମରେ ମନ୍ଦିର ଭିତରେ ପ୍ରବେଶ କଲୁ । ଏଠି ଯାତ୍ରୀଙ୍କ ଉପରେ ପଣ୍ଡା ବା ପୂଜାରୀଙ୍କର କିଛି ମାତ୍ର ଜୁଲମ୍ ନାହିଁ । ଭୋଗରାଗ ମଧ୍ୟ ନାହିଁ । ତେଣୁ ଧାଡ଼ିରେ ଯାଇ ବିନା ଗହଳିରେ ଆମେମାନେ ଗୋକର୍ଣ୍ଣ ମହାଦେବଙ୍କ ପାଖରେ ପହଞ୍ଚିଗଲୁ । ମନରେ ଅସରନ୍ତି ଶିହରଣ ଏବଂ ଭକ୍ତିଭାବ ଥିଲା । ଆତ୍ମଲିପି ମହାଦେବ ପାତାଳରୁ ବାହାରିଛନ୍ତି । ହାତ ଦେଇ ସ୍ପର୍ଶ କଲୁ । କିଛି ଗାତ ଥିବାରୁ ଜଣାପଡ଼ିଲା -- ଏହି ହେଉଛନ୍ତି କୈଳାସପତି ମହାଦେବ, ଲିଙ୍ଗ ହୋଇ ପୂଜା ପାଉଛନ୍ତି ସାରା ଜଗତରେ । ମାତ୍ର ଦଶମିନିଟ୍‌ରେ ଆମର ଦର୍ଶନ ହୋଇଗଲା ।

ପାଦୁକା ଏବଂ ବେଲପତ୍ର ପାଇଲୁ । ଆତ୍ମା ବୋଧ ହୋଇଗଲା କୈଳାସପତିଙ୍କୁ ଦର୍ଶନ କରି । ଆମମାନଙ୍କୁ ଦ୍ୱିପ୍ରହର ପ୍ରସାଦ ସେବନ କରାଇ ଦେଇଛନ୍ତି ଏହି ଶିବଲିଙ୍ଗ ଗୋକର୍ଣ୍ଣ ନିଜ କୋଳରେ ବସାଇ । ଧନ୍ୟ ତାଙ୍କର ଲୀଳାଖେଳା । ଭକ୍ତର ମନକୁ ଚିହ୍ନିପାରନ୍ତି ସେ । ବାଧାବିଘ୍ନ ଦୂରେଇ ଦିଅନ୍ତି । ଆମେମାନେ ବାରମ୍ବାର ନମସ୍କାର କରୁଥିଲୁ ଏହି ପ୍ରତ୍ୟକ୍ଷ ମହାଦେବଙ୍କୁ । ମୁଁ ତାଙ୍କ ପାଖରେ ପରିବାର ତଥା ଅନ୍ୟର ବାଧାବିଘ୍ନ ଦୂରକରି ଉଚିତ ପଥରେ ନେଇଯିବାକୁ ମନଭରି ଡାକିଥିଲି ।

ମହାଦେବ ଦର୍ଶନ ହୋଇଗଲା । ଲୋକେ କହନ୍ତି, ସାତଜନ୍ମର ପୁଣ୍ୟ ଥିଲେ କାଶୀବିଶ୍ୱନାଥ ଏବଂ କର୍ଣ୍ଣାଟକର ଗୋକର୍ଣ୍ଣ ମହାଦେବଙ୍କୁ ଦର୍ଶନ କରିବାର ସୁଯୋଗ ମିଳେ । ମୁଁ ଜାଣିବାରେ ଭଗବାନଙ୍କର ଡାକରା ନ ଆସିଲେ ଭକ୍ତ କଦାପି ତାଙ୍କୁ ଦର୍ଶନ କରିପାରେନା । ତେଣୁ ଅନ୍ତର ଦେଇ ଡାକିଲେ ଭଗବାନ ତୁମକୁ ଦର୍ଶନ ଦେବେ ।

ଆମେ ମନ୍ଦିରରୁ ଶୀଘ୍ର ବାହାରି ଆସିଲୁ ଦିଅଁଙ୍କୁ ଶେଷ ମୁଣ୍ଡିଆ ମାରି । ଏପରି ଅଞ୍ଚଳକୁ ଆଉ ଆସିବା ଭାଗ୍ୟରେ ଥିବ କି ନାହିଁ କିଏ କହିବ । ତେଣୁ ମନଭରି ଦିଅଁଙ୍କୁ ଦର୍ଶନ କରିଥିଲୁ । ଆମମାନଙ୍କର ମନ ଆନନ୍ଦରେ ଭରିଯାଇଥିଲା ଗୋକର୍ଣ୍ଣ ମହାଦେବଙ୍କୁ ବିନା ବାଧାବିଘ୍ନରେ ଦର୍ଶନ କରି, ପୁନଶ୍ଚ ତାଙ୍କର ପ୍ରସାଦ ସେବନ କରି ।

ସାଢ଼େ ପାଞ୍ଚଟା ବେଳକୁ ଆମେ ମନ୍ଦିର ଛାଡ଼ି କାର୍‌ରେ ବସିଲୁ । ଡ୍ରାଇଁ କାର୍ ଚଳାଇଲେ କାରବାର ଅଭିମୁଖେ । ପଛକୁ ଫେରି ଚାହିଁଥିଲୁ । କ୍ରମଶଃ ଗୋକର୍ଣ୍ଣ ମନ୍ଦିର ଆମର ଦୃଷ୍ଟିପଥରୁ ଅନ୍ତରାଳରେ ରହିଯାଇଛନ୍ତି । କାର୍ ଆମର ସୁବିଧାରେ ଆସି ପହଞ୍ଚିଗଲା କାରବାର ନୌସେନା ଦ୍ୱିତୀୟ ଗେଟ୍ ଦେଇ ପ୍ରାୟ ସନ୍ଧ୍ୟା ସାତଟା ବେଳକୁ । ଆତ୍ମସନ୍ତୋଷ ସମସ୍ତଙ୍କର ବହୁତ ବଢ଼ିଯାଇଥିଲା । ଧନ୍ୟ ତୁମେ ଗୋକର୍ଣ୍ଣ ମହାଦେବ ! ଅସୀମ କରୁଣା ତୁମର !



# କାରବାର ନୌସେନାବେଶ (ଆରବ ସାଗର) ଏବଂ ଜାହାଜ ମରାମତି କାର୍ଯ୍ୟ ଦର୍ଶନ

ସନ୍ଧ୍ୟା ସାତଟା ବାଜିଲା । ଅନ୍ଧାର କ୍ରମଶଃ ଘୋଟି ଆସୁଥାଏ । କାର୍ ଦ୍ୱିତୀୟ ନମ୍ବର ଗେଟ୍ ଦେଇ କାରବାର ନୌସେନାବେଶରେ ପହଞ୍ଚିଲା । ଆମମାନଙ୍କର ଇଚ୍ଛା ହେଲା, ମାମାର (ଶ୍ରେୟାର) ସ୍କୁଲ, ଜ୍ୱାଇଁଙ୍କର ଅଫିସ ସ୍ଥାନ ଦେଖିବାକୁ । ଜ୍ୱାଇଁ ସମସ୍ତଙ୍କର ମନୋଭାବ ବୁଝିପାରିଲେ । କାର୍‌କୁ ପ୍ରଥମେ ଶ୍ରେୟାର ସ୍କୁଲ ଦିଗରେ ନେଇଗଲେ । ଦୂରରୁ ହାତଠାରି ଦେଖାଇଦେଲେ ଶ୍ରେୟା(ସାନ ନାତୁଣୀ)ର ସ୍କୁଲ । ଶ୍ରେୟା ହାଲିଆ ହୋଇ ବାଟରୁ ଶୋଇପଡ଼ିଛି । ନଚେତ୍ ମୋର ସ୍କୁଲ ବୋଲି ପାଟି କରିଥା'ନ୍ତା; କିନ୍ତୁ ମୋର ଝିଅ ସ୍ମିତା ଭାରି ଖୁସି ହୋଇଗଲା ତା'ର ସ୍କୁଲ ଦେଖି । ଏହି ସ୍କୁଲରେ ସେ ପାଠ ପଢ଼ାଉଛି ଏହି କୁନି କୁନି ପୁଅଝିଅମାନଙ୍କୁ । ଶ୍ରେୟାର ଶିକ୍ଷକ ଏବଂ ମଦର୍ ରୂପେ ଏହି ସ୍କୁଲରେ ମାତ୍ର ମାସକ ଆଗରୁ କାର୍ଯ୍ୟରେ ଯୋଗଦେଇଛି । ସ୍କୁଲ ଅଠର ଜୁନ୍‌ରେ ଖୋଲିବ । ସେହିଦିନଠାରୁ ନିୟମିତ ଆସିବ । ଶ୍ରେୟାକୁ ସାଥିରେ ଧରି ଜୁନ୍ ୨୨ ତାରିଖରେ ଆସିବ । ଶ୍ରେଷ୍ଠା ଚାହିଁଥିଲା । କହିଲା, "ମୋର ସ୍କୁଲକୁ ଚାଲ ।" ଶ୍ରେଷ୍ଠା (ବଡ଼ ନାତୁଣୀ) କେନ୍ଦ୍ରୀୟ ବିଦ୍ୟାଳୟ (ସେଣ୍ଟ୍ରାଲ୍ ସ୍କୁଲ)ରେ ଚତୁର୍ଥ ଶ୍ରେଣୀରେ ପାଠ ପଢୁଛି । ତା'ର ପାଠ ପଢ଼ିବା ଏବଂ ଡ୍ରଇଂ କରିବାର ଦକ୍ଷତା ବହୁତ ଅଛି । ସୁନ୍ଦର ଡ୍ରଇଂମାନ କରିପାରେ । ମଣିଷର ମୁହଁର ଆକୃତି ସହଜରେ ବସିଥିବା ପୁରୁଷ ବା ସ୍ତ୍ରୀର ନିଖୁଣ ଭାବରେ ଆଙ୍କିପାରେ । ପାଠ ପଢ଼ିବା ଏବଂ ଡ୍ରଇଂ କରିବା ତା'ର ଭାରି ଝୁଙ୍କ୍ । ତା' ସହିତ କମ୍ପ୍ୟୁଟର କରିବାକୁ ବହୁତ ଭଲପାଏ । ତା'ର ସ୍କୁଲ ଅଭିମୁଖରେ କାର୍ ଦୌଡ଼ିଲା । ଅଳ୍ପ ସମୟ ଗେଟ୍ ପାଖରେ ରହି ଫେରିଲୁ । ଶ୍ରେଷ୍ଠା ତା'ର ସ୍କୁଲ ଦେଖି ବିମୋହିତ ହେବା ସଙ୍ଗେ ସଙ୍ଗେ ଆମମାନଙ୍କୁ ପ୍ରମୋଦ ଦେଲା ।

ଏହାପରେ କ୍ୱାଇଁ ତାଙ୍କର କାର୍‌କୁ ଏକ ଅଜଣା ଦିଗକୁ ନେଇ ତାଙ୍କର ଅଫିସ୍ ଦେଖାଇ ଆଗକୁ ଦ୍ରୁତଗତିରେ ଗଲେ । ବାଟରେ କହିଲେ, "ଯଦି ସୁଯୋଗ ମିଳେ, ତୁମେମାନେ 'ଜାହାଜ ମରାମତି' ଜାଗା ଦେଖିପାରିବ ।" ଆମେମାନେ କୌତୂହଳ ଜିଜ୍ଞାସାରେ ବୁଡ଼ି ରହିଲୁ । ଯାହାହେଉ, ସୁରକ୍ଷାକର୍ମୀ ମାତ୍ର ଦଶମିନିଟ୍ ପାଇଁ ଆମକୁ ଭିତରକୁ ଯିବାପାଇଁ କହିଲା । ଏଥିପାଇଁ ସମସ୍ତଙ୍କର ପାସ୍ ରହିବା କଥା, ଆମର ନ ଥିଲା । କ୍ୱାଇଁଙ୍କର ପାସ୍‌ରେ ଆମ୍ଭେମାନେ ଭିତରକୁ ପ୍ରବେଶ କଲୁ । କାର୍ ଯାଇ ପହଞ୍ଚିଲା ଜାହାଜ ମରାମତି ସ୍ଥାନରେ । କାର୍‌ଟି ତା'ର ନିର୍ଦ୍ଧାରିତ ସ୍ଥାନରେ ରହିଲା । କାର୍‌ରୁ ଓହ୍ଲାଇ ଆମେ ସମସ୍ତେ ସେହି ଜାହାଜ ମରାମତି ସ୍ଥଳକୁ ଗଲୁ । ଦୁଇଟି ବିରାଟ ଜାହାଜ ରଖାଯାଇଛି ମରାମତି ପାଇଁ । ଏସିଆରେ ପ୍ରଥମ କରି ନୂତନ ପ୍ରଣାଳୀ ପ୍ରସ୍ତୁତ କରାଯାଇଛି ଏହି କାରବାର ନୌସେନା ଜାହାଜ ମରାମତି କ୍ଷେତ୍ରରେ । ସମୁଦ୍ରର ଗଭୀର ପାଣିରୁ ଜାହାଜକୁ ଆଧୁନିକ ବିଜ୍ଞାନକୌଶଳର ସମତୁଲ ବା ଅଧିକ ଲମ୍ବ-ପ୍ରସ୍ଥ ଥିବା ପ୍ଲାଟଫର୍ମ୍ ସମୁଦ୍ର ପାଣିରେ ବୁଡ଼ାଇ ରଖାଯାଇଛି । ମରାମତ ଜାହାଜଟି ସମୁଦ୍ରର ଗଭୀର ପାଣିରୁ ଆସି ଏହି ବୁଡ଼ି ରହିଥିବା ବିଶାଳ କଂକ୍ରିଟ୍-ଲୁହା ବିଶିଷ୍ଟ ପ୍ଲାଟ୍‌ଫର୍ମ ଉପରକୁ ଭାସିଆସେ । ପରେ ଏହି ବିଶାଳ କଂକ୍ରିଟ୍ ପ୍ଲାଟ୍‌ଫର୍ମଟି ଇଲେକ୍‌ଟ୍ରିକ୍ ବଳରେ ଉପରକୁ ଉଠିଥାଏ ଜାହାଜକୁ ଧରି । ଆଧୁନିକ ବିଜ୍ଞାନ ବଳରେ ବିରାଟକାୟ ଜାହାଜ ପାଣି ଉପରରୁ ଅନାୟାସରେ ସ୍ଥଳ ଉପରକୁ ଆସିପାରେ । ଏହାପରେ ଟ୍ରଲି, କ୍ରେନ୍ ସାହାଯ୍ୟରେ ଜାହାଜଟିକୁ ବିଛାଯାଇଥିବା ରେଲୱେ ଧାରଣା ଉପରେ ନିର୍ଦ୍ଧାରିତ ମରାମତି ସ୍ଥାନକୁ ଟଣା ହୋଇ ଆସେ । ସମଗ୍ର ଜାହାଜଟି କୂଳ ଉପରେ ମଜଭୁତ ଭାବେ ତିଆରି ହୋଇଥିବା କଂକ୍ରିଟ୍ ପ୍ଲାଟଫର୍ମ୍ ଉପରେ ମରାମତି ପାଇଁ ରହେ । ଏହା ଏକ ବିଚିତ୍ର ଟେକ୍ନୋଲୋଜି । ଆଧୁନିକ ଟେକ୍ନୋଲୋଜି ସାହାଯ୍ୟରେ ଏହି ପ୍ରକାର ଅସମ୍ଭବ କାର୍ଯ୍ୟକୁ ସମ୍ଭବରେ ପରିଣତ କରାଯାଇଛି । ଦୁଇଟି ବିଶାଳକାୟ ଜାହାଜର ମରାମତି ଏବଂ ତନଖି କାର୍ଯ୍ୟ ଖୁବ୍ ଜୋରସୋରରେ ଆରମ୍ଭ ହୋଇଯାଇଥିଲା ।

ଭାରତରେ ପ୍ରଥମ ଥର ପାଇଁ ଏହି କାରବାର ନୌସେନା ଭେଳାର ସ୍ୱତନ୍ତ୍ର ସ୍ଥାନରେ ଜାହାଜ ମରାମତି କାର୍ଯ୍ୟ ଚାଲିଛି । ଆମେମାନେ ମରାମତି ସ୍ଥାନରେ

ବୁଲି ବୁଲି ଦେଖିଲୁ । ପ୍ରକାଣ୍ଡ ଜାହାଜଟି ଭୂଇଁ (କଂକ୍ରିଟ୍ ବେଶ୍) ଉପରେ ଅଛି । ତା'ର ବାହ୍ୟ ଅଂଶ ତଳଠାରୁ ଉପରଯାଏଁ ନିଖୁଣ ଭାବରେ ଦେଖାଯାଉଛି । ଜାହାଜ ମରାମତି ପାଇଁ ଇଲୋକ୍ଟ୍ରୋନିକ୍ସ ଯନ୍ତ୍ରପାତି ବ୍ୟବହୃତ ହେଉଛି । ଇଞ୍ଜିନିୟର, ସେଲର୍ ଏବଂ ପ୍ରତ୍ୟେକ ବିଭାଗରେ ମରାମତି ଦାୟିତ୍ୱରେ ଅଫିସରମାନେ ରହିଛନ୍ତି । ସେମାନଙ୍କ ଅଧୀନରେ କୁଶଳୀ ମେକାନିକ୍ ଇଲେକ୍ଟ୍ରିସିଆନ୍, ଗ୍ୟାସ୍ ଓଲଡର୍ ଏବଂ ବୋହିବା ଆଣିବା ପାଇଁ ବହୁ କୁଶଳୀ ଶ୍ରମିକ ଅଛନ୍ତି । କାମ ଖୁବ୍ ଜୋର୍‌ରେ ଚାଲୁଥିବାର ଜଣାପଡୁଥିଲା । ଆଗରୁ ଜାହାଜ ମରାମତି ସମୁଦ୍ର ଭିତରୁ ପାଣି ନିଷ୍କାସନ କରି ଅସ୍ଥାୟୀ ବନ୍ଧ ବାନ୍ଧି କରାଯାଉଥିଲା; କିନ୍ତୁ ଏହି ପ୍ରଣାଳୀରେ ସମୁଦ୍ରରୁ ଭାସମାନ ଜାହାଜକୁ ନିର୍ଦ୍ଧାରିତ ମରାମତି କ୍ଷେତ୍ରକୁ ଉଠାଇ ଅଣାଯାଉଛି । ସାରା ଏସିଆରେ ଏହି ପ୍ରକାର ଭାସମାନ ପ୍ଲାଟ୍‌ଫର୍ମ ନୂଆ ବୋଲି କୁହାଯାଉଛି ।

ଆମେମାନେ ଦୁଇଟା ଜାହାଜକୁ ମୂଳରୁ ଶେଷପର୍ଯ୍ୟନ୍ତ ବୁଲି ଦେଖିଲୁ । ସମ୍ୟକ୍ ଧାରଣା ମନରେ ଆସିଲା ଜାହାଜ ମରାମତି କାମରେ । ସନ୍ଧ୍ୟାବେଳେ ପ୍ରାୟ ୭.୩୦ ମିନିଟ୍‌ରେ କ୍ୱାର୍ଟରରେ ପହଞ୍ଚିଗଲୁ ।



# ଗୋଆର କାନକୋନା ସମୁଦ୍ରକୂଳ ଓ ପାଲାମ୍ ବିଚ୍ ପରିଦର୍ଶନ

କାରବାର ନୌସେନା ବେଶରେ ଆସି ରହିବାର ଗୋଟିଏ ସପ୍ତାହ ଶେଷ ହୋଇଛି । ମନରେ ଆସିଲା ଗୋଆର କାନ୍‌କୋନା ପାଲାମା ବିଚ୍ ଦେଖିବାକୁ ଯିବା । ବର୍ଷା ଦିନ ଆସିଯାଇଛି । ବିଦେଶୀ ପର୍ଯ୍ୟଟକଙ୍କର ଆଡ୍ଡାସ୍ଥଳୀ ଏହି ବିଚ୍‌ଟି ବର୍ତ୍ତମାନ ନୀରବ-ନିସ୍ତବ୍ଧ ଥିବ । କୋଳାହଳ ନ ଥିବ । ତଥାପି ମନର ଲୋଭ ସମ୍ବରଣ କରିପାରିଲୁନି । କଥାଟି ଘରେ ଆଲୋଚିତ ହେଲା । କାନକୋନା ବିଚ୍‌ଟି ଏଠାରୁ ମାତ୍ର ପଚାଶ କିଲୋମିଟର ଦୂର ହେବ । ଶନିବାର ସକାଳ ୧୧ଟାରେ ବାହାରିବାର ଠିକ୍ ହେଲା । ତା' ଆଗରୁ ନୌସେନା ଡାକ୍ତରଖାନାରେ ମୋର ସ୍ତ୍ରୀଙ୍କର ଶ୍ୱାସର ପରୀକ୍ଷା ସରିଗଲା ଦିନ ୧୦.୩୦ ମିନିଟ୍‌ରେ । ଵ୍ୱାଇଁଙ୍କ କାର୍‌ରେ ପାତଞ୍ଜଳି ହସ୍‌ପିଟାଲ ଯାଇଥିଲୁ । ପରୀକ୍ଷାରୁ ଜଣାପଡ଼ିଲା ଶ୍ୱାସ ମଧ୍ୟମ ଧରଣର । ବ୍ୟସ୍ତ ହେବାର କିଛି ନାହିଁ ।

ଦିନ ସାଢ଼େ ଏଗାରଟାବେଳେ କାର୍‌ରେ ଆମେମାନେ ଗଲୁ । ମୋର ଝିଅ ଓ ନାତୁଣୀ ଦୁହେଁ ମଧ୍ୟ ଆମ ସାଙ୍ଗରେ ଗଲେ । ଆମେମାନେ ମଧ୍ୟାହ୍ନ ଭୋଜନ ଖାଇ ନେଇଥିଲୁ । କିଛି ଚୋବାଇବା ଜିନିଷ, କଦଳୀ, ମିକ୍ସଚର ଏବଂ ପାଣି ନେଇଥିଲୁ ବାଟରେ ଖାଇବା ପାଇଁ । ପାଗ ଅନୁକୂଳ ଥିଲା । ଆକାଶରେ ମେଘ ଥିଲେ ସୁଦ୍ଧା ବର୍ଷା ହେଉ ନ ଥିଲା । ଥଣ୍ଡା ପାଗ ଥିଲା ।

ଆମର କାର୍ କାରବାରରୁ ନୌସେନା ପ୍ରଥମ ଫାଟକ ଦେଇ ଜାତୀୟ ରାଜପଥ ୧୯ରେ ପହଞ୍ଚିଲା । ଗୋଆ ରାସ୍ତାରେ ଏହି ମନୋରମ ବିଚ୍ ପଡ଼ିବ । କାର୍‌ର ଗତି ପ୍ରାୟ ଷାଠିଏ କି.ମି. ବେଗ ଥିଲା । ରାସ୍ତା ବହୁତ ଭଲ ଥିଲା । ଯିବାକୁ କିଛି ଅସୁବିଧା ହେଲାନି । ପାର୍ବତ୍ୟ ଅଞ୍ଚଳ ଏବଂ ସମୁଦ୍ରର ତୀର ଦେଇ

ଜାତୀୟ ରାଜପଥ ଆଗକୁ ଲମ୍ବିଯାଇଛି। ପର୍ବତରେ ଭରା ଛୋଟବଡ଼ ଗଛର ସବୁଜିମା ମନକୁ ଆକୃଷ୍ଟ କରୁଥିଲା। ଅଙ୍କାବଙ୍କା ରାସ୍ତାରେ ପାହାଡ଼ି ରାସ୍ତାରେ କାର୍ ଛୁଟି ଚାଲିଥିଲା ଆଗକୁ। କାରବାର ଛୋଟ ସହରଟି ନୌସେନାବେଶଠାରୁ ମାତ୍ର ଆଠ କି.ମି ଦୂର। ମାତ୍ର ପନ୍ଦର କି.ମି ପରେ କର୍ଣ୍ଣାଟକ ପ୍ରଦେଶରେ ସୀମା ଶେଷ ହୋଇଗଲା। ସିକ୍ୟୁରିଟି ଯାଞ୍ଚ ପରେ ଗୋଆ ମାଟିରେ କାର୍ ଆଗକୁ ଚାଲିଲା। ଆଗରେ କାଲିବ୍ରିଜ୍ ପଡ଼ିଲା। ଏହି ବ୍ରିଜ୍‌ଟି ନଦୀ ଓ ସମୁଦ୍ର ଉପରେ ନିର୍ମିତ ହୋଇଛି। ଦୁଇପଟେ ସମୁଦ୍ର ଉପରେ ଆମେ କାଲିବ୍ରିଜ୍ ଦେଇ କାର୍‌ରେ ଯାଉଛୁ। ଦୁଇପଟେ ତଳେ ସମୁଦ୍ର ଦେଖି ଆଶଙ୍କା ଏବଂ ଆନନ୍ଦରେ ବ୍ରିଜ୍‌କୁ ପାର ହୋଇ ଆଗକୁ ଗଲୁ। ବ୍ରିଜ୍ ସରିଲା ପରେ ଗୋଟିଏ ବିରାଟ ପାହାଡ଼କୁ ଦୁଇ ଭାଗରେ ସିଧା ଭାବରେ କାଟି ସରୁ ରାସ୍ତା ତିଆରି ହୋଇଛି। ଜାତୀୟ ରାଜପଥର ଛୋଟ ଅଂଶ ଅଣଓସାରିଆ ହୋଇଛି; କିନ୍ତୁ ଏହି ହାର୍ଡଷ୍ଟୋନ୍ କାଟି ରାସ୍ତା ତିଆରିର ଶୈଳୀ ଅତି ଚମତ୍କାର ହୋଇଛି। ଦୁଇପଟେ ପାହାଡ଼ ସିଧା କଟା ହୋଇଛି। ଉଚ୍ଚତା ପ୍ରାୟ ଶହେଫୁଟ ହେବ। ଏହା ଗୁମ୍ଫା ହୋଇନାହିଁ। ଉପରକୁ ଆକାଶ ଦିଶୁଛି। ବହୁତ ଭାବିଚିନ୍ତି ଏହିପ୍ରକାର ଆଧୁନିକ ପ୍ରଣାଳୀରେ ପାହାଡ଼ କଟାହୋଇ ରାସ୍ତା ତିଆରି ହୋଇଛି। ଏହି ସ୍ଥାନକୁ ସଦାଶିବ ଗଡ଼ ବୋଲି କହନ୍ତି।

ଏହାପରେ କାର୍ ଆଗକୁ ଯାଇ ମାନାଗୋଡ଼ା, ଚିମନ୍‌ଓ୍ୱାଡ଼ା ବାଭାଲ ପରେ ପରେ ଦାଣ୍ଡେବାଗେ (ଭାଙ୍ଗଡ଼ା) ଡେଇଁ ଆଗକୁ ଚାଲିଲୁ। ଦୁଇପଟରେ ଜଙ୍ଗଲ, ପାହାଡ଼ଭରା ରାସ୍ତା। ଏହିଠାରେ କର୍ଣ୍ଣାଟକ ପ୍ରଦେଶର ସୀମା ଶେଷ ହେଲା। ଏହି ସ୍ଥାନକୁ ମାଦାଲି ବୋଲି କହନ୍ତି। ଏଠାରେ ସିକ୍ୟୁରିଟି ଯାଞ୍ଚ୍ ପରେ ଗୋଆ ମାଟିରେ ପଦାର୍ପଣ କଲୁ। ପୋସେମ୍ (ଗୋଆ ଉପକଣ୍ଠ) ରେ ଅଳ୍ପ କିଛି ବାଟ ଗଲାପରେ ପ୍ରାୟ ପାଞ୍ଚ କି.ମି.ରେ ଗ୍ରାମ ମାସୋମ ପଡ଼ିଲା। ଏହାପରେ ଡାଲିବାବା ଛୋଟ ସହର ଡେଇଁ ଆଗକୁ ଗଲୁ। କାନକୋନା ବସ୍‌ଷ୍ଟାଣ୍ଡ୍ ଆସିଗଲା। ଆଗରେ କିଛିବାଟ ଯାଇ ବାମପଟେ ବିଚ୍ ମୁହାଁ ହେଲୁ। ଏଠାରୁ ପାଲାମ ବିଚ୍ ମାତ୍ର ପାଞ୍ଚ କି.ମି.। ଛୋଟ ଗଳି ଦେଇଯାଇଛି। ଅବଶ୍ୟ ସୁନ୍ଦର ପିଚୁ ରାସ୍ତା। ପରିଶେଷରେ ଆମେମାନେ ଦଶମିନିଟ୍ ଭିତରେ ବିଚ୍ (ସମୁଦ୍ରକୂଳ)ରେ ପହଞ୍ଚିଲୁ। ଦୂରରୁ ସମୁଦ୍ରର ଲହଡ଼ି ଦେଖିପାରିଲୁ।

## କାନକୋନା ବିଚ୍ - ପାଲାମ୍ ବିଚ୍ :

କାନକୋନା ବିଚ୍‌କୁ ପାଲାମ୍ ବିଚ୍ ବୋଲି କହନ୍ତି । ଏହି ବିଚ୍‌ଟି ସେତେ ବଡ଼ ନୁହେଁ । ଦୁଇପଟ ପର୍ବତ ମଝିରେ (ପୂର୍ବ-ପଶ୍ଚିମ)ର ମାତ୍ର ଦୁଇ ବା ତିନି କି.ମି. ଲମ୍ବ ହେବ । ଓସାର ଅପରିସୀମ । ଆରବ ସାଗର ବକ୍ଷରେ ସୁଦୂରବ୍ୟାପୀ । ଆଖି ପାଏନାହିଁ । ସୌନ୍ଦର୍ଯ୍ୟରେ ଭରପୂର ଏହି ସମୁଦ୍ର କୂଳକୁ ବେଶି ବିଦେଶୀ ପର୍ଯ୍ୟଟକ ଆସନ୍ତି । ଗୋଆ ସହରଠାରୁ ପ୍ରାୟ ଷାଠିଏ କି.ମି. ଦୂରରେ ଅବସ୍ଥିତ । ଜୁଆର ଆସିଥିଲା, ସମୁଦ୍ର ମଧ୍ୟ ଅଶାନ୍ତ ଥିଲା । ଧଳାଘୋଡ଼ା ସମୁଦ୍ର ମଝିରେ ବାହାରୁଥିଲେ । ଏହି ସମୟରେ ସମୁଦ୍ରକୁ ଜାହାଜ ବା ମାଛଧରା ବୋଟ୍ ଯିବାପାଇଁ ମନା ହୋଇଥାଏ ।

କାର୍ ଆମେ ଷ୍ଟାଣ୍ଡରେ ରଖି ଷ୍ଟାଣ୍ଡ୍ ଭଡ଼ା ୩୦ ଟଙ୍କା ଦେଲୁ । ସେତେବେଳେକୁ ଘଣ୍ଟାରେ ୧୨.୩୦ମିନିଟ୍ ହୋଇଥାଏ । ଆମେମାନେ ସମୁଦ୍ର କୂଳକୁ ଗଲୁ । ଦୁଇ ନାତୁଣୀ ଛୋଟ ପିଲା ଥିବାରୁ ଦୌଡ଼ି ଦୌଡ଼ି ସମୁଦ୍ରକୂଳରେ ପହଞ୍ଚି ସେହି ଜୁଆର ଆସୁଥିବା ଲହଡ଼ିମାଳା ସହିତ ଖେଳିବାକୁ ଗଲେ । ଅସ୍ତବ୍ୟସ୍ତ ହୋଇ ତାଙ୍କର ପିତାମାତା ପଛରେ କ୍ଷିପ୍ର ଗତିରେ ଗଲେ ସେମାନଙ୍କୁ ସୁରକ୍ଷା ବଳୟ ଭିତରେ ରଖିବାକୁ ।

ଆମେମାନେ ଆନନ୍ଦବିହ୍ୱଳ ହୋଇ ଏକ ଲୟରେ ଏହି ପାଲାମ ବିଚ୍‌ର ସ୍ୱତନ୍ତ୍ରତା ପ୍ରତି ଦୃଷ୍ଟି ଦେଉଥିଲୁ । ବିଚ୍‌ଟି ଆୟତନରେ କ୍ଷୁଦ୍ର ହେଲେହେଁ ନୈସର୍ଗିକ ସୌନ୍ଦର୍ଯ୍ୟରେ ଭରପୂର । ପୂର୍ବ ଏବଂ ଉତ୍ତର କଡ଼ରେ ପାହାଡ଼ମାନ ସମୁଦ୍ରରେ ଠିଆ ହୋଇଛନ୍ତି । ଘଞ୍ଚ ଜଙ୍ଗଲ ମଧ୍ୟରେ ଟାପୁ ପରି ପ୍ରତୀୟମାନ ହେଉଛନ୍ତି । ସମୁଦ୍ର ଜାତିର ପ୍ରାଣୀ ଏବଂ ପକ୍ଷୀମାନଙ୍କର ବାସସ୍ଥଳୀ ପାଲଟିଛି । ସବୁଜ ପାହାଡ଼ ଏବଂ ନୀଳ ସମୁଦ୍ରର ଲହଡ଼ିମାଳା ଦର୍ଶକଙ୍କୁ ବିମୋହିତ କରୁଛି ।

ଆମେମାନେ ଏଥର ସେହି ବିଚ୍‌ରେ ଏ ମୁଣ୍ଡରୁ ସେ ମୁଣ୍ଡଯାଏଁ ବୁଲିବାକୁ ଆରମ୍ଭ କଲୁ; କିନ୍ତୁ ହଠାତ୍ ଆକାଶରେ ମେଘ ଘୋଟି ଆସିଲା । କ୍ରମଶଃ ଘନୀଭୂତ ହୋଇ ସମୁଦ୍ର କୂଳରେ ଗୋଟାଏ ମଧ୍ୟମ ଧରଣର ବର୍ଷା ହେଲା । ଆମମାନଙ୍କ ଉପରେ ବର୍ଷାର ଟୋପା ପଡ଼ିବାକୁ ଲାଗିଲା । ଛୋଟ ନାତୁଣୀଟି ପୂରା ଓଦା ହୋଇ

ବର୍ଷାରେ ଆନନ୍ଦରେ ଖେଳିବାକୁ ଲାଗିଲା । ବଡ଼ ନାତୁଣୀ ବାପାମା'ଙ୍କର ଆକଟ ବୁଝିଲାଣି । ତା'ର ବର୍ଷାରେ ଓଦା ହେବାର ଇଚ୍ଛାକୁ ପ୍ରତ୍ୟାହାର କରିନେଲା ସେମାନଙ୍କ ତାଗିଦ୍‌ରେ । ଆମେମାନେ ସମସ୍ତେ ନିକଟସ୍ଥ ଡାବା ଭିତରକୁ ପଶିଗଲୁ । ଚୌକି ପଡ଼ିଥିଲା । ଦେଖିଲୁ କିଛି ବିଦେଶୀ ଅତିଥି ତା'ରି ଭିତରେ ଆରାମରେ ବସିଛନ୍ତି । ବିଦେଶୀ ତରୁଣ ତରୁଣୀ, ବୃଦ୍ଧ ଏବଂ ବୃଦ୍ଧା; ମାତ୍ର ବହୁତ କମ୍ ଥିଲେ । ସେମାନେ ଆନନ୍ଦରେ ସମୁଦ୍ରମୁହାଁ ଯୋଡ଼ି ହୋଇ (ପୁରୁଷ-ସ୍ତ୍ରୀ) ବସିଥିଲେ । ଆନନ୍ଦବିହ୍ୱଳ ହୋଇ କିଛି ସ୍ନାକ୍ସ ସହିତ ସୁରା (ମଦ) ପାନ କରୁଥିଲେ । କେତୋଟି ବିଦେଶୀ ଯୁବତୀ ମଦ୍ୟପାନ ସହ ସିଗାରେଟ୍ ଫୁଙ୍କୁଥିଲେ । ସିଗାରେଟ୍ ଧୂଆଁ ଆସି ବାୟୁମଣ୍ଡଳ ଦୂଷିତ କରୁଥିଲେ ମଧ୍ୟ କେହିହେଲେ ବାରଣ କରୁ ନ ଥିଲେ । ଆମ ଦେଶର ନିୟମ ଅଛି, ଯେଉଁଠାରେ ଜନସାଧାରଣଙ୍କର ଗହଳି ଥିବ, ସେଠାରେ ସିଗାରେଟ୍ ଖାଇବା ଆଇନତଃ ଅପରାଧ ବୋଲି ଗଣାହେବ । ବୋଧହୁଏ ବିଦେଶିନୀ ହୋଇଥିବାରୁ ହୋଟେଲ ବାର୍ ଏବଂ ମଦ୍ୟପାନର ବ୍ୟବସ୍ଥା ଚାଲୁଥିବାରୁ ଏହି ଆଇନର କୌଣସି ମୂଲ୍ୟ ନାହିଁ ବୋଲି ହୋଟେଲ୍ ଡାବା ମାଲିକ ଆର୍ଥିକ ଆୟ ଦୃଷ୍ଟିରୁ ମନା କରିବାକୁ ସଙ୍କୋଚବୋଧ କରୁଛନ୍ତି । ଭାରତରେ ବିଦେଶୀମାନଙ୍କ ସବୁ ଦୋଷ ମାଫ୍ । ଏହି ଧୂଆଁରେ କ୍ୱାଇଁ ଅତିଷ୍ଠ ହୋଇପଡ଼ିଥିଲେ; ଯଦିଓ ମଦ୍ୟପାନକୁ ସେ ବିରୋଧ ନ କରି ସ୍ୱାଗତ କରିଥିଲେ ତାଙ୍କର ବିଚାରଧାରାରେ ।

ବର୍ଷା ଛାଡ଼ିଲାନି । କିଛି ଖାଇବାକୁ ମନସ୍ଥ କଲୁ । ଚାଟ୍ ମଗାଇଲୁ । ଅସମ୍ଭବ ରେଟ୍ । କୌଣସି ଦ୍ରବ୍ୟ ଶହେ ତିରିଶ ଟଙ୍କାରୁ କମ୍ ନାହିଁ । ଉପାୟ ବାହାର କଲୁ । ମାତ୍ର ଦୁଇଟା ଫାଣ୍ଟା (କୋଲଡ୍ରିଙ୍କସ୍)ବୋତଲକୁ ୨୦ ଟଙ୍କା (ହିସାବରେ ଗୋଟିକୁ) ମିଶାଇ ପିଲା ଦୁଇଜଣଙ୍କ ସହ ଆମେମାନେ ଭାଗ କରିଥିଲୁ । ଏଠାରେ ମାଛି ପ୍ରବଳ । ଗୋଟିଏ ମାଛି ଅଚାନକ ଆସି ପଡ଼ିଗଲା । ସେହି ବୋତଲରୁ କିଛି ଅଂଶ ଢାଳିଦେଲୁ ମାଛି ସହିତ । ବାକି ଅଂଶ ଇଚ୍ଛା ନ ଥିବା ସତ୍ତ୍ୱେ ବ୍ୟବହାର ପାଇଁ ରଖିଲୁ । ବର୍ଷା ବାହାରେ ଅନବରତ ଲାଗିଥାଏ । ଯିବାକୁ ଉପାୟ ନାହିଁ; କିନ୍ତୁ ସମୁଦ୍ରର ଏହି ବର୍ଷା ବେଳର ମନୋହର ଦୃଶ୍ୟ ସେହି ଡାବାରେ ଟଣା ହୋଇଥିବା ଧଳା ପରଦା ଟେକି ଦେଇ ଦେଖୁଥିଲୁ । ସମୁଦ୍ର ଡେଉଁଥାଏ, ନାଚୁଥାଏ, ଆମର

ମନକୁ ମଧ୍ୟ ନଚାଉଥାଏ । ଏହି ତ ପ୍ରକୃତିର ନିୟମ, ସାରା ବିଶ୍ୱକୁ ଆନନ୍ଦ ଯୋଗାଇଦେବା । ଆମେମାନେ ସମୁଦ୍ରର ଏହି ଖେଳରେ ଆତ୍ମହରା ହୋଇଯାଇଥିଲୁ ଏହି ଡାବା ଭିତରୁ ଦେଖି ।

ପ୍ରାୟ ଅଧଘଣ୍ଟା ବସିଲାପରେ ବର୍ଷାରାଣୀ କିଛିଟା ହାଲିଆ ଅନୁଭବ କରିଥିଲେ । ବର୍ଷା ଠୋପା କ୍ରମଶଃ ଦୁର୍ବଳ ହୋଇପଡ଼ିଲା । ମୋର ସ୍ତ୍ରୀ ଏବଂ ଝିଅ ସମୁଦ୍ରର ଏହି ମନମତାଣିଆ ଦୃଶ୍ୟର ପ୍ରତ୍ୟେକ ଅଂଶକୁ ଦେଖୁଥିଲେ ସତୃଷ୍ଣ ନୟନରେ । ମୁଁ ମଧ୍ୟ ନୈସର୍ଗିକ ସୌନ୍ଦର୍ଯ୍ୟକୁ ଉପଭୋଗ କରିବାକୁ ଚାହୁଁଥିଲି; କିନ୍ତୁ କ୍ୱାଇଁଙ୍କର ମନରେ ବିଦେଶୀ ଅଭ୍ୟାଗତମାନଙ୍କର କାର୍ଯ୍ୟକଳାପରେ ତୀକ୍ଷ୍ଣ ଦୃଷ୍ଟି ଥାଏ । ବୋଧହୁଏ ସେମାନେ ଦେଶର ନୌସେନାର ଅଙ୍ଗର ପ୍ରତ୍ୟକ୍ଷ ସେନା । ଶତ୍ରୁଙ୍କର ଆଗମନକୁ କ୍ରୁର ଦୃଷ୍ଟିରେ ଦେଖିଥା'ନ୍ତି । କାଳେ ସେମାନଙ୍କୁ ଶତ୍ରୁ ବୋଲି ବା ଶତ୍ରୁ ଦେଶର ଗୋଇନ୍ଦା ଭାବୁଥିବେ ବା ସେମାନଙ୍କର ସୌନ୍ଦର୍ଯ୍ୟ କଳନା କରୁଥିବେ କହିବା ବାହୁଲ୍ୟମାତ୍ର । ଏହି ବର୍ଷା କମିଯାଇଥିବାରୁ ପୁନଶ୍ଚ ଯାଇ କୂଳରେ ପୁଣି କିଛିବାଟ ଆଗେଇଗଲୁ; କିନ୍ତୁ ମାତ୍ର ଦଶମିନିଟ୍ ପରେ ହଠାତ୍ ଖୁବ୍ ଜୋର୍‌ରେ ବର୍ଷା ଆସିଗଲା । ଆମେ ସ୍ଥିର କଲୁ ଏଥର ହୋଟେଲ / ଡାବା ନ ଯାଇ କାର୍ ଭିତରେ ରହି ସମୁଦ୍ରର ଶୋଭା ଦେଖିବା । ସେହି ଅନୁସାରେ ଆମେ କାର୍ ଅଭିମୁଖେ ଦୌଡ଼ିଲୁ । କ୍ୱାଇଁ ଯାଇ ପୁଣି ସେହି ଡାବାର ପଛପଟ ଦ୍ୱାର ଦେଇ ପ୍ରବେଶ କରି ସମସ୍ତଙ୍କୁ ଯିବାକୁ କହିଲେ । ପ୍ରବଳ ବର୍ଷା ଯୋଗୁ ସମସ୍ତେ ସେହି ଡାବାରେ ପଶିଲେ । ମୁଁ କିଛିବାଟ ଆଗେଇ ଯାଇଥିଲି । ଗୋଟିଏ ଜାଗାରେ ଦୁଇଖଣ୍ଡ ଆଜବେଷ୍ଟସ ପଡ଼ି ଦିଅଁ ସ୍ଥାପନା କରାଯାଇଛି । ସେଠି ଆଉ ଜଣେ ବାବୁ ଆଶ୍ରୟ ନେଇଥିଲେ । ବର୍ଷା ଯୋଗୁ ମୁଁ ସେଠାରେ ମଧ୍ୟ ଆଶ୍ରୟ ନେଲି । ପାଦରେ ଜୋତା ଥିଲା । ଦୂରରୁ ଜଣେ କହି ଉଠିଥିଲେ– ଜୋତା ବାହାର କରିଦିଅନ୍ତୁ, ଦିଅଁଙ୍କର ସ୍ଥାନ । ଆମେ ଦୁହେଁ ଜୋତା, ଚଟି ବାହାର କଲୁ । ଚାହୁଁ ଚାହୁଁ ଆଉ ଜଣେ ଆସି ଆମ ସହିତ ଆଶ୍ରୟ ନେଲେ । ଏପରି ପ୍ରାୟ କୋଡ଼ିଏ ମିନିଟ୍ ଚାଲିଲା ।

ହଠାତ୍ କ୍ୱାଇଁ ଗୋଟିଏ ଛତା ସେହି ଡାବାରୁ ସଂଗ୍ରହ କରି ମୋ ପାଖକୁ ଆସି ମୋତେ ତାଙ୍କ ସାଙ୍ଗରେ ନେଇଗଲେ । ପୁଣି ସେଇ ଡାବାରେ ଆମେମାନେ

କିଛି ସମୟ ବସିଲୁ । ବର୍ଷାଯୋଗୁ ଆମ ଭିତରେ କିଛି ଫଟୋ ଉତ୍ତୋଳନ କରିଥିଲୁ । ମାତ୍ର ସମୁଦ୍ର କୂଳରୁ କିଛି ନେଇ ନ ଥିଲୁ । ବର୍ଷା କିଛିଟା କମିଗଲା । ଏଥର ଆମେମାନେ ପୁନଶ୍ଚ ଲୋଭ ସମ୍ବରଣ କରି ନପାରି ସମୁଦ୍ରର କୂଳକୁ ଗଲୁ; କିନ୍ତୁ କିଛି ଲାଭ ହେଲାନି । ପୁଣି ବର୍ଷାର ଆରମ୍ଭ ଦେଖି ନିକଟସ୍ଥ ଆଉ ଗୋଟିଏ ଡାବା ଭିତରେ ପଶିଲୁ । ଏଇଟା ହେଉଛି ରିସର୍ଟ (ବାସ ଏବଂ ଖାଇବା ସ୍ଥାନ); କିନ୍ତୁ ଭିତରୁ ନିବୁଜ ଅଛି । ସମୁଦ୍ରର ମନୋହର ଦୃଶ୍ୟ ଉପଲବ୍ଧ ହେଲାନାହିଁ । ପରେ ଠିକ୍ କଲୁ କାର୍ ଭିତରେ ରହି କିଛି ଦୃଶ୍ୟ ଦେଖିବୁ ଅଶାନ୍ତ ଅଜୟ ଏହି ମହାସାଗରର । ସମସ୍ତେ ଯାଇ କାର୍ ଭିତରେ ପଶିଲୁ । ସମୁଦ୍ରମୁହାଁ କରି କାର୍ ରଖିପାରିଲୁନି । ତେଣୁ ଆଡୁଆଳରେ ରହି କିଛିଟା ସମୁଦ୍ରର ଦୃଶ୍ୟ ଦେଖିବାକୁ ସକ୍ଷମ ହେଲୁ । ତା'ର ଗର୍ଜନ ଶୁଣିଲୁ । ଉଚ୍ଚ ଢେଉମାଳାର ଉପର ଜଳଭାଗ ମନୋମୁଗ୍ଧକର ଥିଲା । ବର୍ଷା ସହିତ ସମୁଦ୍ରର ଖେଳ ଅନ୍ତରାତ୍ମାକୁ ଦୋହଲାଇ ଦେଉଥିଲା । ଆମମାନଙ୍କୁ ସେମାନଙ୍କ ସହ ମିଶି ଖେଳିବାକୁ ନିମନ୍ତ୍ରଣ କରୁଥିଲେ । ଆମେ କ'ଣ ତାଙ୍କର ନିମନ୍ତ୍ରଣ ଗ୍ରହଣ କରିପାରିଲୁ ? ଶରୀର ସିନା ଯାଇପାରିଲାନି; କିନ୍ତୁ ମନ ଯାଇପାରିଲା ।

କାର୍ ଭିତରେ ଥିଲୁ । ବେଶୀ ସମୟ ରହି ହେଲାନାହିଁ । କାର୍‌କୁ କାରବାର ନୌସେନା ମୁହାଁ କରି ଆସ୍ତେ ଆସ୍ତେ ସେହି ସ୍ଥାନ ଛାଡ଼ି ଆସିଲାବେଳେ କେତଟା ବିଦେଶିନୀ ପର୍ଯ୍ୟଟକଙ୍କର ମୁହଁ ସବୁ ଝାପସା ଝାପ୍‌ସା ଦେଖାଗଲା ।

ଆମେ ଆସି ଦିନ ତିନିଟା ସମୟରେ ପହଞ୍ଚିଗଲୁ ନୌସେନାବେଶରେ । ଆଶ୍ୱସ୍ତ - ଆନନ୍ଦ ହେଲୁ । ବଡ଼ ନାତୁଣୀ ଶ୍ରେଷ୍ଠା ପାଞ୍ଚଟାବେଳେ ସୁଇମିଂ କରିବାକୁ ଯିବ । ସେ ୪.୪୫ ମିନିଟ୍ ପର୍ଯ୍ୟନ୍ତ ଆମମାନଙ୍କ ପାଖରେ ବିଶ୍ରାମ ନେଲା । ସେ ଠିକ୍ ପାଞ୍ଚଟାରେ ତା'ର ବାପାଙ୍କ ସହିତ ସୁଇମିଂ (ପହଁରିବା) ପାଇଁ ଗଲା । ଆମେମାନେ ବିଶ୍ରାମ ନେଇଥିଲୁ ସନ୍ଧ୍ୟା ହେବା ପର୍ଯ୍ୟନ୍ତ । କାନକୋନା ବିଚ୍ଚର ମଧୁର ସ୍ମୃତି ମାନସପଟରେ ଆଙ୍କି ହୋଇଯାଇଥିଲା ସମସ୍ତଙ୍କର ।



# ଗୋଆର କେତୋଟି ଦର୍ଶନୀୟ ସ୍ଥାନ

ଆମ୍ଭେମାନେ ଭୁବନେଶ୍ୱରରୁ ମୁମ୍ବାଇ ଦେଇ ପ୍ଲେନ୍‌ରେ ଆସି ଗୋଆ ବିମାନପଡ଼ିଆରେ ଜୁନ୍ ମାସ ୧୧ ତାରିଖରେ ୨୦୦୯ରେ ପ୍ରାୟ ୩.୩୦ ମିନିଟ୍‌ରେ ପହଞ୍ଚିଲୁ। ବିମାନଘାଟୀରୁ କ୍ୱାଇଁଙ୍କର କାର୍‌ରେ ବସି ସିଧା ନୌସେନାବେଶ କାରବାରରେ ୧୧୦ କି.ମି. ଆସି ସନ୍ଧ୍ୟା ଆଠଟାରେ ପହଞ୍ଚିଗଲୁ। ତେଣୁ ଗୋଆର ବିମାନଘାଟୀ ଏବଂ ଜାତୀୟ ରାଜପଥ ସହ ସଂପୃକ୍ତ କିଛି ବିଖ୍ୟାତ ସ୍ଥାନ ମଡ଼ଗାଁଓ, ଗୋକର୍ଣ୍ଣ ସହ ଦେଇ ଆସିଥିଲୁ ; କିନ୍ତୁ ସଂପୂର୍ଣ୍ଣଭାବରେ ଗୋଆ ସହର ଦେଖିପାରି ନ ଥିଲୁ। ଏଠି ରହିବାର ପ୍ରାୟ କୋଡ଼ିଏ ଦିନପରେ ଗୋଆର କିଛି ଦର୍ଶନୀୟ ସ୍ଥାନ ଦେଖିବା ପାଇଁ ପ୍ରବଳ ଇଚ୍ଛା ହେଲା। ଏହା ଭିତରେ ଗୋଆର ପାଲାମ ବିଚ୍ (କାନକୋନା) ଏବଂ କର୍ଣ୍ଣାଟକର ଗୋକର୍ଣ୍ଣ ମହାଦେବଙ୍କୁ ଦେଖିଥିଲୁ। ଦୁଇଟି ଦର୍ଶନୀୟ ସ୍ଥାନର ଦୂରତ୍ୱ ହେଉଛି ପ୍ରାୟ ୬୦ କି.ମି. ଏହି ନୌସେନାବେଶ କାରବାରଠାରୁ । କିନ୍ତୁ ଗୋଆ ସହରର ଦୂରତ୍ୱ ହେଉଛି ପ୍ରାୟ ୧୧୦ କି.ମି.। ତେଣୁ ଗୋଟିଏ ଟ୍ୟାକ୍ସି ଠିକ୍ କଲୁ। ଗୋଟିଏ ଦିନରେ ଏଠୁ ବାହାରି ଗୋଆର ଦର୍ଶନୀୟ ସ୍ଥାନମାନ ଦେଖି ପୁନଶ୍ଚ କାର୍‌ବାରକୁ ଫେରିଆସିବୁ। ଅଠରଶହ ଟଙ୍କାରେ ଟ୍ୟାକ୍ସିବାଲା ରାଜେନ୍ଦ୍ର ଖୁସିରେ ରାଜିହେଲା। ତେଣୁ ୧୧.୭.୦୯ (ଶନିବାର) ଦିନକୁ ଧାର୍ଯ୍ୟ ହେଲା।

ସେଦିନ ଠିକ୍ ଆଠଟାବେଳକୁ ଆମେ ତିନିଜଣ ଟ୍ୟାକ୍ସି (ମାରୁତି ଭ୍ୟାନ୍)ରେ ବସିଲୁ। ମୁଁ, ଶୈଳବାଳା ଏବଂ ସ୍ମିତା (ମାମା) ଯିବାକୁ ବାହାରିଲୁ। କ୍ୱାଇଁଙ୍କର ଅଫିସ୍ କାମ ଥିବାରୁ ଏବଂ ଦୁଇ ନାତୁଣୀଙ୍କର ସୁଇମିଂ ଥିବାରୁ ସେମାନେ ଆମ ସାଥିରେ ଗଲେନାହିଁ। ମାରୁତି ଭ୍ୟାନ୍‌ର ଡ୍ରାଇଭର ପାଖ ସିଟ୍‌ରେ ମୁଁ ବସିଲି। ପଛରେ ସ୍ତ୍ରୀ ଏବଂ ଝିଅ ବସିଲେ। ବାଟରେ ଖାଇବା ପାଇଁ ଜଳଖିଆ ଏବଂ ପାଣି ଦେଲେ। ଆମେମାନେ ନୌଭେଳାବେଶର ଗେଟ୍ ପାଖରେ ପାଶ୍ ଦେଖାଇ ବାହାରକୁ

ଆସିଲୁ । କାର୍ ଚାଲିଲା କାରବାର ସହର ଅଭିମୁଖରେ ଜାତୀୟ ରାଜପଥ (୧୭) ଦେଇ । ଏହି ରାଜପଥଟି ଗୋଆରୁ ବାଙ୍ଗାଲୋର ଯାଇଛି । ରାସ୍ତାଟି ମୁଖ୍ୟତଃ ପାହାଡ଼ପର୍ବତର ଅଙ୍କାବଙ୍କା ରାସ୍ତାଦେଇ ନିର୍ମିତ ହୋଇଛି । ରକ୍ଷଣାବେକ୍ଷଣାର ଉପଯୁକ୍ତ ଭାବରେ ନ ହେବାରୁ ପିଚୁ ରାସ୍ତାରେ ଅସଂଖ୍ୟ ଖାଲଡିପ ହୋଇଛି । କାରବାର ସହର ଆସିଗଲା । ଜାତୀୟ ରାଜପଥ ସନ୍ନିକଟ ସହର । ମାତ୍ର ପାଞ୍ଚ ଛଅ ଗୋଟି ଲମ୍ବା ରାସ୍ତା ଅଛି । ଛୋଟ ସହର । ବାଣିଜ୍ୟ କାରବାର ଏଠାରେ ହୁଏ । ସାପ୍ତାହିକ ହାଟ ମଧ୍ୟ ବସେ । ନୌସେନାର ଅଫିସ୍ର ଏବଂ କର୍ମଚାରୀମାନେ ଏଠାରୁ ସପ୍ତାହକ ପାଇଁ ସୌଦା, ପରିବାପତ୍ର, ମାଛ ଇତ୍ୟାଦି ନେଇଥା'ନ୍ତି । ସବୁପ୍ରକାରର ପରିବା ମିଳେ କେବଳ ପୋଟଳକୁ ଛାଡ଼ି । ଦରଦାମ୍ ଦିନକୁ ଦିନ ବଢ଼ିବାରେ ଚାଲିଛି । ପରିବାପତ୍ର ପ୍ରାୟ କେ.ଜି. ୩୦ ଟଙ୍କା ଉପରେ । ଏଠାରେ ମାଛର ଦାମ୍ ଅଧିକ । ସମୁଦ୍ର ମାଛ ବେଶୀ ପରିମାଣରେ ଆସେ । କୁକୁଡ଼ା ମାଂସ ଏବଂ ଛେଳି ମାଂସ ଯଥାକ୍ରମେ ୧୧୦ ଓ ୨୦୦ ଟଙ୍କାରେ ବିକ୍ରୟ ହୁଏ । ଛୋଟିଆ ଏହି ସହରଟି କର୍ଣ୍ଣାଟକ ରାଜ୍ୟର । ସହରଟିରେ ପୋଲିସର ଚଳପ୍ରଚଳ ବହୁତ କମ୍; କିନ୍ତୁ ଲୋକମାନେ ଟ୍ରାଫିକ୍ ନିୟମାନୁସାରେ ଚଳିବାର ଦେଖାଯାଏ । ସାପ୍ତାହିକ ହାଟଟି ରାଜପଥର ଦୁଇପଟେ ଶୃଙ୍ଖଳିତ ଭାବରେ ବସିଥାଏ । ରାସ୍ତା ଅବରୋଧ ଦେଖିବାକୁ ମିଳେନା ।

ଗାଡ଼ି ଗୋଆ ଅଭିମୁଖେ ଆଗେଇ ଚାଲିଲା । କାରବାର ସହର ଅତିକ୍ରମ କଲାପରେ ବାମ ପଟ ସମୁଦ୍ରର ଦୃଶ୍ୟ ମନୋହର ଦିଶୁଥିଲା । ଶହ ଶହ ସଂଖ୍ୟାରେ ମାଛଡଙ୍ଗାଗୁଡ଼ିକ ସମୁଦ୍ର ମଝିରେ ଦୋହଲି ଦୋହଲି ଯାଉଥିଲା । ଡଙ୍ଗାରେ ଗୋଟିଏ ମାଛଧରା ପାଲ ଏବଂ ପ୍ରାୟ ୩/୪ ଜଣ ମାଛଧରାଳିଙ୍କୁ ଦେଖିବାକୁ ମିଳିଲା । ପ୍ରାୟ କୋଡ଼ିଏ ଦିନରୁ ଅନବରତ ପ୍ରବଳ ବର୍ଷାଝଡ଼ ଲାଗିଥିଲା ଏହି ପଶ୍ଚିମାଘାଟର ପାର୍ବତ୍ୟ ଅଞ୍ଚଳରେ । ଆଜି ସକାଳୁ ପାଗ ଅନୁକୂଳ ଥିବାରୁ ଧୀବରମାନେ ସମୁଦ୍ର ମଝିକୁ ମାଛ ମାରିବାକୁ ବାହାରି ଯାଇଛନ୍ତି । କାରବାର ସମୁଦ୍ର କୂଳରେ ବାମପଟେ ଗୋଟିଏ ପରିତ୍ୟକ୍ତ ଯୁଦ୍ଧ ଜାହାଜକୁ ମିଉଜିୟମ୍ ଉଦ୍ଦେଶ୍ୟରେ ରଖାଯାଇଛି । ଏଠାରେ ଗୋଟିଏ ହୋଟେଲ୍ ମଧ୍ୟ ଅଛି । ଦୂରରୁ ନାଭାଲ ଜାହାଜର ମ୍ୟୁଜିୟମ୍ ଏବଂ ମାଛର ଆକ୍ୱାରିୟମ୍ ଥିବାର ଦେଖିଲୁ । ସମୟ ନ ଥିବାରୁ ଏଠାରେ ଅଟକିଲୁ

ନାହିଁ, ଆଗକୁ ଚାଲିଲୁ । କାଳୀ ନଦୀ ଉପରେ ଗୋଟିଏ ବଡ଼ ପୋଲ ଦେଇ ଆସିଲୁ । ଏହି କାଳୀନଦୀଟି ଏହିଠାରେ ସମୁଦ୍ର ସହ ମିଶିଛି । ତେଣୁ ସବୁଆଡ଼ ବିଶାଳ ସମୁଦ୍ରର ରୂପ ମନରେ ଚମକ ଖେଳାଇ ଦେଉଛି । ନଦୀ ନିଜର ଅସ୍ତିତ୍ୱ ହରାଇଛି ସମୁଦ୍ରର ବିଶାଳ ବକ୍ଷରେ । ମିଠା ପାଣି ତା'ର ଲୁଣି ହୋଇଛି ଏହି ଅଞ୍ଚଳରେ । ଆମେ କର୍ଣ୍ଣାଟକ ପ୍ରଦେଶର ସୀମା ଅତିକ୍ରମ କରି ଗୋଆ ରାଜ୍ୟରେ ପଦାର୍ପଣ କଲୁ । ସିକ୍ୟୁରିଟି ଅଫିସରମାନେ ଯାଞ୍ଚ୍ କରିବା ପରେ ଗୋଆ ପ୍ରଦେଶକୁ ଯିବାକୁ ଅନୁମତି ଦେଲେ ।

ଏହି ଜାତୀୟ ରାଜପଥ ଉପରେ ସଦାଶିବଗଡ଼ । ଆନୋସ୍ତି, କାନକୋନା (ପାଲାମ ବିଚ୍) ବାଲି, ପରେ ମଡଗାଁଓରେ ପହଞ୍ଚିଲୁ । ମଡଗାଁଓ ହେଉଛି ଜିଲ୍ଲା ମୁଖ୍ୟ କାର୍ଯ୍ୟାଳୟ । ପାର୍ବତ୍ୟ ଅଞ୍ଚଳର ଗୋଟିଏ ବଡ଼ ସହର । ଏଠାରେ ଗୋଆର ବ୍ୟବସାୟ-ବାଣିଜ୍ୟ ଚଳେ । କାରବାର ନୌସେନାଠାରୁ ଏହାର ଦୂରତ୍ୱ ପ୍ରାୟ ୮୦ କି.ମି. । ଗୋଆଠାରୁ ପ୍ରାୟ ୩୦ କି.ମି. ଦୂର । ସହରରେ ଟ୍ରାଫିକ୍ ବ୍ୟବସ୍ଥା ଭଲ । ଉଠା ଦୋକାନ ପ୍ରାୟ ନାହିଁ । ଫୁଟ୍‌ପାଥ୍‌ଗୁଡ଼ିକ ପରିଷ୍କାର । ସଲଗ୍ନ ବଡ଼ ବଡ଼ ଦୋକାନମାନ ଅଛି । ସବୁ ପ୍ରକାରର ଚାହିଦାମୁତାବକ ଜିନିଷମାନ ମିଳେ ।

ମଡ଼ଗାଁଓ ଡେଇଁ ଆଗକୁ ଚାଲିଲୁ । ଗୋଆ ସହର ମାତ୍ର ୨୦ କି.ମି. । ଏଥର ଆମେ ଗୋଆର ଉତ୍ତର ଦିଗରେ ଥିବା ଦର୍ଶନୀୟ ସ୍ଥାନ ଦେଖିବା ମନସ୍ଥ କରି ସେହି ଦିଗରେ ଟ୍ୟାକ୍ସି ନେବାକୁ ଡ୍ରାଇଭରକୁ କହିଲୁ । ସେହି ଟ୍ୟାକ୍ସି ଡ୍ରାଇଭର ମଧ୍ୟ ସମସ୍ତ ଦର୍ଶନୀୟ ସ୍ଥାନର ବିଶେଷ ବିବରଣୀ ଜାଣେ । କେବଳ ଗୋଆ ପୋଲିସକୁ ତା'ର ଡର । କାରଣ ପଡ଼ୋଶୀ କାର୍ଣ୍ଣାଟକର ଟ୍ୟାକ୍ସି ନମ୍ବର ଥିଲା । ସେ ମଧ୍ୟ କର୍ଣ୍ଣାଟକର ବାସିନ୍ଦା ଥିଲା ।

## ଦର୍ଶନୀୟ ସ୍ଥାନ

ବୋରିଙ୍ଗ୍‌ରେ ଯାଇ ପହଞ୍ଚିଲୁ । ସେଠାରେ ରାସ୍ତାକଡ଼ରେ ଶିରିଡ଼ି ସତ୍ୟସାଇ ମନ୍ଦିର ଦେଖିଲୁ । ଆମେମାନେ ଶୀଘ୍ର ଯାଇ ବାବା ଶିରିଡ଼ି ସାଇଙ୍କୁ ଦର୍ଶନ କଲୁ । ମନୋରମ ସୁନ୍ଦର ମନ୍ଦିରଟିଏ । ପ୍ରାଣବନ୍ତ ଶିରିଡ଼ିବାବାଙ୍କୁ ଦର୍ଶନ କରି ଆପ୍ୟାୟିତ

ହେଲୁ । ଏହାପରେ ଟ୍ୟାକ୍ସି ଚାଲିଲା କପିଳେଶ୍ୱରୀ ଆଡ଼େ । ମାତ୍ର ପାଞ୍ଚ କି.ମି. ଭିତରେ ଏହି ସ୍ଥାନଟି ପଡ଼ିଲା । ଶ୍ରୀ ସମସ୍ଥାନ କପିଳେଶ୍ୱର ମହାଦେବଙ୍କୁ ଦର୍ଶନ କଲୁ । ଏହି ମନ୍ଦିରଟି ପ୍ରାୟ ପାଞ୍ଚଶହ ବର୍ଷର ପୁରୁଣା । ବିରାଟ ପ୍ରାଙ୍ଗଣ । ପୂଜାରୀଠୁ ବୁଝିନେଲୁ ବର୍ଷସାରା ଉତ୍ସବର ବିବରଣୀ । ମନ୍ଦିରଟି ଗୋଟିଏ ପରିଚାଳନା ସମିତିର ତତ୍ତ୍ୱାବଧାନରେ ପରିଚାଳିତ । ଗଲାବର୍ଷ ଏଠାରେ ଗ୍ରେନାଇଟ୍ ଫ୍ଲୋରିଂ କାମ ସଂପୂର୍ଣ୍ଣ ହୋଇଛି । ହଠାତ୍ ବାହାରିଲାବେଳକୁ ବର୍ଷା ହେଲା । ଏଠାରେ ଅଟକିଗଲୁ କିଛି ସମୟ ।

ଏହାପରେ ପ୍ରାୟ କୋଡ଼ିଏ କି.ମି. ଦୂରରେ ପଡ଼ିଲା ଶ୍ରୀଗୁରୁ ଦତ୍ତାତ୍ରେୟ ମହାରାଜ ମନ୍ଦିର । ଏଠାରେ କଥିତ ଅଛି ଶ୍ରୀ ଦତ୍ତାତ୍ରେୟ ମହାରାଜ ବ୍ରାହ୍ମଣ ଘରେ ଜନ୍ମ ନେଇଥିଲେ । ସେ ଭଗବାନଙ୍କର ଅବତାର ରୂପେ ପୂଜା ପାଉଛନ୍ତି । ତାଙ୍କର ତିନୋଟି ମୁଣ୍ଡ ଅଛି । ତିନିଦେବ(ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର)ଙ୍କର ଗୋଟିଏ ଶରୀରରେ ତିନୋଟି ଶିଶୁପିଲାର ମୁଣ୍ଡ ଥିବା ଭଗବାନ ଦତ୍ତାତ୍ରେୟଙ୍କର ପୂଜା ହେଉଛି । ପୂଜକଠାରୁ ବୁଝିବାରେ ଜଣାଗଲା-- ଆଗ କାଳରେ ମହର୍ଷି ଅତ୍ରିଙ୍କର ସ୍ତ୍ରୀ ଅନସୂୟାଙ୍କର ସତୀତ୍ୱ ପରୀକ୍ଷା କରିବାପାଇଁ (ଲକ୍ଷ୍ମୀ, ପାର୍ବତୀ ଏବଂ ସରସ୍ୱତୀଙ୍କ ପ୍ରରୋଚନାରେ) ତିନି ଦେବତା ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ବ୍ରାହ୍ମଣ ବେଶରେ ମହର୍ଷି ଅତ୍ରିଙ୍କର ଅନୁପସ୍ଥିତବେଳେ ଆଶ୍ରମରେ ପହଞ୍ଚି ଖାଇବାକୁ ମାଗିଲେ । ସତୀ ଅନସୂୟା ସେମାନଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରି ଖାଇବାକୁ ଡାକିଲେ । ସେହି ତିନି ବ୍ରାହ୍ମଣ କହିଲେ, "ତୁମେ ଯଦି ସଂପୂର୍ଣ୍ଣ ଉଲଗ୍ନ ହୋଇ ଆମକୁ ଖାଦ୍ୟ ପରିବେଷଣ କରିବ, ତାହାହେଲେ ଆମେ ଖାଇବୁ, ନଚେତ୍ ଫେରିଯିବୁ ।" ଏପରି ଅସମ୍ଭବ କଥାଶୁଣି ସତୀ ବିଷଣ୍ଣ ହେଲେ ଏବଂ ଅନ୍ତଃଚକ୍ଷୁରେ ଏହି ବ୍ରହ୍ମା-ବିଷ୍ଣୁ-ମହେଶ୍ୱର ଛଦ୍ମବେଶରେ ବ୍ରାହ୍ମଣ ରୂପ ଧରି ତାଙ୍କର ସତୀତ୍ୱ ପରୀକ୍ଷା ପାଇଁ ଆସିଛନ୍ତି ଜାଣିପାରିଲେ । ନିଜର ଅନୁପସ୍ଥିତି ଥିବା ପତି ଅତ୍ରିଙ୍କର ନାମ ନେଇ ମନ୍ତ୍ର ପଢ଼ି ସେଇ ତିନିଜଣ ବ୍ରାହ୍ମଣଙ୍କୁ ଗୋଟିଏ ଶିଶୁପୁତ୍ରରେ ପରିଣତ କରିଦେଲେ । ତା'ର ତିନୋଟି ମୁଣ୍ଡ ରହିଲା । ତା'ର ନାମ ଦତ୍ତାତ୍ରେୟ ଦେଲେ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଗୋଟିଏ ଛୋଟ ଶିଶୁ ହୋଇ ତାଙ୍କର ସ୍ତୁତିଗାନ କଲେ । ମାତୃ ରୂପରେ ସତୀତ୍ୱ ଦେଖାଇ ଧନ୍ୟ ହେଲେ ଅନସୂୟା ।

ଅତ୍ରି - ମହର୍ଷି ସବୁ ଶୁଣି ଖୁସି ହେଲେ । ବହୁକାଳ ପର୍ଯ୍ୟନ୍ତ ଶିଶୁ ରୂପେ ଦତ୍ତାତ୍ରେୟ ହୋଇ ରହିଲେ । ପରେ ଲକ୍ଷ୍ମୀ, ପାର୍ବତୀ, ସରସ୍ୱତୀ ନିଜର ଭୁଲ୍ ପାଇଁ ଅନୁତାପ କଲେ ଏବଂ ସତୀଙ୍କ ପାଖରେ କ୍ଷମା ପ୍ରାର୍ଥନା କଲେ । ନିଜ ନିଜର ସ୍ୱାମୀଙ୍କୁ ଫେରାଇଦେବାକୁ ଅନୁରୋଧ କଲେ । ଦେବୀ ଅନସୂୟା ସେହି ତିନିମୁଣ୍ଡ ଥିବା ଶିଶୁକୁ ତତ୍କ୍ଷଣାତ୍ ତିନୋଟି ଏକ ରକମର ଶିଶୁ କରିଦେଲେ । ନିଜ ନିଜର ସ୍ୱାମୀକୁ ବାଛିନେବାକୁ ଲକ୍ଷ୍ମୀ, ପାର୍ବତୀ, ସରସ୍ୱତୀଙ୍କୁ କହିଲେ । ଉପାୟ ନ ଥିଲା ତିନିଦେବୀଙ୍କର । ବାଛି କରି ପ୍ରତ୍ୟେକ ଗୋଟିଏ ଲେଖାଏଁ ଶିଶୁ ନେଲେ । ପରେ ସେମାନେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ହେଲେ; କିନ୍ତୁ ଅଘଟଣ ଘଟିଲା । ଲକ୍ଷ୍ମୀଙ୍କ କୋଳରେ ବ୍ରହ୍ମା, ପାର୍ବତୀଙ୍କ କୋଳରେ ବିଷ୍ଣୁ ଏବଂ ସରସ୍ୱତୀଙ୍କ କୋଳରେ ମହେଶ୍ୱର ଥିଲେ । ସେମାନେ ବହୁତ ଲଜ୍ଜିତ ହେଲେ । ଦେବୀ ଅନସୂୟାଙ୍କ ନିକଟରେ ପୁନଶ୍ଚ କ୍ଷମାଭିକ୍ଷା କରି ତିନି ଦେବୀ ତାଙ୍କର ସ୍ୱାମୀଙ୍କ ସହ ନିଜ ସ୍ଥାନକୁ ଫେରିଗଲେ ।

ଦତ୍ତାତ୍ରେୟ ମହାରାଜଙ୍କର ଜନ୍ମସ୍ଥାନ କବଲୋଇ ଅତି ପବିତ୍ର । ଏହି ମନ୍ଦିରଟି ପ୍ରାୟ ପାଞ୍ଚଶହ ବର୍ଷର ପୁରୁଣା; କିନ୍ତୁ ଆଧୁନିକୀକରଣ କରାଯାଇଛି । ବ୍ରହ୍ମା ଏହି ସ୍ଥାନରେ ପୂଜା ପାଆନ୍ତି । ଦତ୍ତାତ୍ରେୟଙ୍କର ଆସନର ତଳକୁ ବାମ କଡ଼ରେ ଗୋଟିଏ (ଲମ୍ବା) ପଥର ଉପରେ ଚଦର ଘୋଡ଼ାଇ ଦିଆହୋଇଛି । ଏହା ବ୍ରହ୍ମାଙ୍କର ପ୍ରତିମୂର୍ତ୍ତି । ପୂଜା ହୁଅନ୍ତି । ଭାରତର ପୁଷ୍କର କ୍ଷେତ୍ରରେ ବ୍ରହ୍ମା ପୂଜା ହୁଅନ୍ତି ବୋଲି ପୂଜାରୀ କହିଲେ ।

ଏହାପରେ ଦତ୍ତାତ୍ରେୟଙ୍କ ମୂର୍ତ୍ତି ସଂଲଗ୍ନ ଗୋଟିଏ ବନ୍ଦ କୋଠରିରେ ବହୁକାଳର ପୁରୁଣା ଉଇହୁଙ୍କାକୁ ବନ୍ଦ କବାଟ ଫାଙ୍କରୁ ପୂଜାରୀ ଦେଖାଇଲେ । ଏହା ଭିତରେ ପ୍ରାୟ ଦେଢ଼ଶହ ବର୍ଷର ଗୋଟିଏ ନାଗୁଣୀ ଅଛି । ଦିନବେଳା ଅବା ରାତିରେ ତା'ର ଇଚ୍ଛାରେ ବାହାରି ବୁଲେ ଏବଂ କ୍ଷୀର ଖାଇଦେଇ ନିଜ ସ୍ଥାନକୁ ଫେରିଯାଏ । ଏହି କଥାଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି । ଅବଶ୍ୟ ଆମେ ରହିଥିବା ଅଧଘଣ୍ଟା ଭିତରେ ସର୍ପକୁ ଦର୍ଶନ କରିପାରିଲୁନି ।

ଦ୍ୱିତୀୟ କଥା ପୂଜାରୀ କହୁଥିଲେ ଦତ୍ତାତ୍ରେୟ ମହାରାଜ ଏଠାରେ ଏକନିଷ୍ଠ ତପସ୍ୟା କରି ସିଦ୍ଧିପ୍ରାପ୍ତ ହୋଇଥିଲେ। ତେଣୁ ବାଲୁଙ୍କା ହେବାର ସମ୍ଭାବନା ଅଧିକ ଥିଲା। କାଳକ୍ରମେ ସେଥିରେ ନାଗୁଣୀର ବାସସ୍ଥାନ ହେବାର କିଛି ଅସମ୍ଭବ ନ ଥିଲା।

ପୂଜାରୀ ଆମକୁ ନେଇ ପ୍ରାଙ୍ଗଣରେ ଗୋଟିଏ ବୃକ୍ଷ ଦେଖାଇଲେ। ତା'ର ନାମ ଓଦମ୍ବର ବୃକ୍ଷ। ସେଠି ବସି ଦତ୍ତାତ୍ରେୟ ମହର୍ଷି ତପସ୍ୟା କରୁଥିଲେ ଏବଂ ସ୍ଥାପିତ ଯଜ୍ଞକୁଣ୍ଡରେ ହୋମ କରୁଥିଲେ। ଏହାହେଲା କିମ୍ବଦନ୍ତୀ।

ଭଗବାନ ଦତ୍ତାତ୍ରେୟଙ୍କୁ ମୁଣ୍ଡିଆ ମାରିଲୁ। ମନସ୍କାମନା ଜଣାଇଲୁ। ଟ୍ୟାକ୍ସିରେ ବସି ଆଗକୁ ଚାଲିଲୁ।

ଏହାପରେ ସାନ୍ତାରା ଦୁର୍ଗାଦେବୀଙ୍କୁ ଦର୍ଶନ କରିବାପାଇଁ କାଭେଲିମକୁ ଗଲୁ। ବିରାଟ ପ୍ରାଙ୍ଗଣ ମଧ୍ୟରେ ଦୁର୍ଗାଦେବୀଙ୍କର ବିରାଟ ମନ୍ଦିର ବିଦ୍ୟମାନ। ପ୍ରାୟ ଛଅ ଶହ ବର୍ଷର ପୁରୁଣା ହେବ। ଦୁଇଟା ନଡ଼ିଆ ଆଉ ଫୁଲ ନେଇ ଗଲୁ। ଦେବୀଙ୍କର ପାଦୁକା ପାଣି ସେବନ କଲୁ। ଗୋଟିଏ ନଡ଼ିଆ ଆଉ ଗୋଟାଏ ମଣ୍ଡାଫୁଲ ପୂଜା ପରେ ପୂଝାରୀ ଫେରାଇଦେଲେ। ଦୁର୍ଗା ସିଂହବାହିନୀ, ଚତୁର୍ଭୁଜାମୂର୍ତ୍ତି ଅଟନ୍ତି। ମୁଣ୍ଡରେ ସୁନା ମୁକୁଟ ଶୋଭାପାଉଛି। ଦୁର୍ଗାମୂର୍ତ୍ତିଙ୍କର ଉତ୍ସବ ମୂର୍ତ୍ତି ମଧ୍ୟ ଅତି ମନୋରମ। ପ୍ରାଙ୍ଗଣରେ ଅତିଥିଅଭ୍ୟାଗତ ପାଇଁ ବିଶ୍ରାମ ସ୍ଥଳ, ରହିବା ଘର ଅଛି। ପରିଷ୍କାର ପରିଚ୍ଛନ୍ନ। ଦୁର୍ଗାଙ୍କ ପଦତଳେ ଶତ ନମସ୍କାର କରି ଫେରିଆସିଲୁ।

## ଶ୍ରୀ ରାମନାଥ ପ୍ରସନ୍ନ (ମନ୍ଦିର) :

ଶ୍ରୀ ରାମନାଥଙ୍କ ମନ୍ଦିର ମାତ୍ର ଚାରି କି.ମି. ଭିତରେ ରାମନାଥି ପଣ୍ଡା ନାମକ ସ୍ଥାନରେ ପଡ଼ିଲା। ବିରାଟ ମନ୍ଦିର ପ୍ରାଙ୍ଗଣରେ ଅତିଥିଅଭ୍ୟାଗତ ପାଇଁ ଆଶ୍ରୟ କୁଟୀରମାନ ନିର୍ମିତ ହୋଇଛି। ମନ୍ଦିରକୁ ଯିବାପାଇଁ ପ୍ରଶସ୍ତ ସିମେଣ୍ଟ ପାହାଚର ବ୍ୟବସ୍ଥା ଅଛି। ଆମେମାନେ ମୁଖ୍ୟ ଦ୍ୱାରରେ ପ୍ରବେଶ କଲୁ। ପ୍ରାୟ ସାତଶହ ବର୍ଷ ତଳର ପୁରୁଣା ମନ୍ଦିର। ମନ୍ଦିର ଭିତରେ ପ୍ରବେଶ କଲୁ। ପ୍ରଭୁ

ରାମନାଥଙ୍କୁ ଦର୍ଶନ କଲୁ । ମନୋରମ ମୂର୍ତ୍ତି । ମୁଣ୍ଡରେ ମୁକୁଟ । ରାମନାଥଙ୍କୁ ଶିବଙ୍କର ପ୍ରତିମୂର୍ତ୍ତି ଭାବେ ପୂଜା କରାଯାଏ । ଏହି ବିଗ୍ରହ ଉପରେ ନାରାୟଣ-ଲକ୍ଷ୍ମୀ ପୂଜା ପାଉଛନ୍ତି । ସେମାନଙ୍କ ପାଖରେ ଗରୁଡ଼ ମୂର୍ତ୍ତି ମଧ୍ୟ ଅଛନ୍ତି । ଏହି ରାମନାଥଙ୍କର ବାମପଟେ ଶ୍ରୀ କାମାକ୍ଷାଦେବୀ ପୂଜା ପାଉଛନ୍ତି । ଡାହାଣପଟେ ଶ୍ରୀ ସନ୍ତେରା ଦେବୀ ପୂଜା ପାଉଛନ୍ତି । ଶ୍ରୀ ସନ୍ତେରା ଦେବୀଙ୍କର ସମ୍ମୁଖରେ ଶ୍ରୀଗଣେଶ ପଶ୍ଚିମାମୁଖୀ ହୋଇ ଭକ୍ତମାନଙ୍କର ମନ ମୋହୁଛନ୍ତି ।

ଏଠାରେ ଏକ ଅପୂର୍ବ ଚିତ୍ର କରାହୋଇଥିବା ହାତୀ ଶୁଣ୍ଢର ମୁହଁ ଯୋଡ଼ି ହୋଇଯାଇଛି । ଏପରି ସୁନ୍ଦର ଭାବରେ ଚିତ୍ର ହୋଇଛି ଯେ ଦ୍ୱାର ଖୁମ୍ବରେ ତୁମେ ଷଣ୍ଢ ମନେକରି ଚିତ୍ରକୁ ଚାହିଁଲେ ଷଣ୍ଢ ଦିଶିବ । ପୁଣି ହାତୀ ମନ କଲେ ସେହି ଚିତ୍ରଟି ଗୋଟିଏ ହାତୀର ରୂପ ଧରିବ । ବିଚିତ୍ର କଳ୍ପନା କରି ବାସ୍ତବରେ ଅଙ୍କାଯାଇଛି । ଚାରିପଟେ ଭଲକରି ବୁଲିଲୁ । ବାହାରକୁ ଆସିଲୁ । ସେତେବେଳକୁ ପ୍ରାୟ୍ ଗୋଟାଏ ହେବ । ଆମେମାନେ ଟ୍ୟାକ୍ସି ଭିତରେ ପୁରୀ-ତରକାରି-କଦଳୀ ଖାଇଲୁ । ମଝିରେ ମଝିରେ ବର୍ଷା ହୋଇଯାଉଥାଏ । ଖରା ବି ପଡୁଥାଏ ।

## ଶ୍ରୀ ମହାଲକ୍ଷ୍ମୀ ମନ୍ଦିର :

ଏହାପରେ ଆମେ ନିକଟରେ ଥିବା ଶ୍ରୀ ମହାଲକ୍ଷ୍ମୀ ମନ୍ଦିରରେ ପହଞ୍ଚିଲୁ । ଏହି ମନ୍ଦିରର ଦୁଇଟି ପ୍ରବେଶ ଦ୍ୱାର । ଆମେ ମୁଖ୍ୟଦ୍ୱାର ଦେଇ ପ୍ରବେଶ କଲୁ । ସବୁ ମନ୍ଦିର ସମ୍ମୁଖଭାଗରେ ଗୋଟିଏ ପାଞ୍ଚତାଲା ବିଶିଷ୍ଟ ଗୋଲାକାର ୧୦ଫୁଟ ପରିଧିର ସ୍ତମ୍ଭ ବିଦ୍ୟମାନ । ଆମେ ବାସ୍ତବରେ ମନ୍ଦିରର ପଛପଟ ଦେଇ ଆସିଲୁ । ମହାଲକ୍ଷ୍ମୀ ମନ୍ଦିରକୁ ଅତିକ୍ରମ କରିଗଲୁ ଅଜାଣତରେ ; କିନ୍ତୁ ପହଞ୍ଚିଲୁ ଯାଇ ନାରାୟଣ ମନ୍ଦିରରେ । ଶ୍ରୀନାରାୟଣଙ୍କୁ ଦର୍ଶନ କଲୁ । ଶଙ୍ଖ-ଚକ୍ରଧାରୀ ଶ୍ରୀନାରାୟଣ ତାଙ୍କର ଚାରି ହସ୍ତରେ ପଦ୍ମ-ଗଦାରେ ଶୋଭିତ । ଅତ୍ୟନ୍ତ ମନୋରମ ମୂର୍ତ୍ତି । ଭକ୍ତିଭରେ ମୁଣ୍ଡିଆ ମାରି ପାଦୁକାପାଣି ନେଲୁ । ସେଠାରୁ ପୁଣି ବୁଲି ବୁଲି ସେହି ମନ୍ଦିରର ବିରାଟ ପ୍ରାଙ୍ଗଣରୁ ମନ୍ଦିର ମୁହଁପଟ ବାଟରେ ଭିତରକୁ ପଶିଲୁ । ବିରାଟ ମନ୍ଦିର । ଅତି ସୁନ୍ଦର ଏବଂ କିଛି କାରୁକାର୍ଯ୍ୟ ଖୋଦିତ ହୋଇଛି । ଶ୍ରୀମହାଲକ୍ଷ୍ମୀ

ବହୁତ ଦୂରରେ ବେଶ ହେଉଥିଲେ। ପହଡ଼ ପଡ଼ିଥିଲା। ଅପେକ୍ଷା କଲୁ। ପ୍ରାୟ ପନ୍ଦର ମିନିଟ୍ ପରେ ପହଡ଼ ଫିଟିଲା। ଦର୍ଶନ କଲୁ। ତେଜୋମୟୀ ମୂର୍ତ୍ତି। ମୁଗୁନି ପଥରରେ ଶ୍ରୀ ମହାଲକ୍ଷ୍ମୀଙ୍କର ବିରାଟ ସୌନ୍ଦର୍ଯ୍ୟମୟୀ ମୂର୍ତ୍ତିକୁ ଦର୍ଶନ କରି ମନରେ ଅପାର ଆନନ୍ଦ ପାଇଲୁ। ଶ୍ରୀ ମହାଲକ୍ଷ୍ମୀଙ୍କର ଦେହ କଳା ପରି ପ୍ରତୀତ ହେଲା; କିନ୍ତୁ ସୁନାର ମୁକୁଟ ତାଙ୍କର ମୁଣ୍ଡରେ ଶୋଭାପାଉଥିଲା।

ଏହାଙ୍କର ଉତ୍ସବ-ମୂର୍ତ୍ତି ମଧ୍ୟ ଅତି କମନୀୟ ଏବଂ ପ୍ରତ୍ୟକ୍ଷ ଦର୍ଶନ କଲୁ ମନବୋଧ କରି। ଏଠାରେ ମଧ୍ୟ ଅତିଥି -ଅଭ୍ୟାଗତ ପାଇଁ ବାସସ୍ଥାନ ନିର୍ମାଣ କରାଯାଇଛି। ମନ୍ଦିରରୁ ଫେରିଲୁ ଆନନ୍ଦ ଚିତ୍ତରେ। ମନ୍ଦିରର ଉପରିଭାଗ ଦଧିବାମନ ଅଞ୍ଚଳରେ ସୁନାର ଲେପ ଦିଆଯାଇଛି । ପ୍ରାୟ ପାଞ୍ଚଶ' ବର୍ଷର ମନ୍ଦିର ।

## ଶ୍ରୀ ନାଗେଶ୍ୱର ମହାରୁଦ୍ର ପ୍ରସନ୍ନ (ମନ୍ଦିର) :

ଶ୍ରୀ ନାଗେଶ୍ୱର ମହାରୁଦ୍ର ମହାପ୍ରତ୍ୟକ୍ଷ ଠାକୁର ବୋଲି ଏହି ଅଞ୍ଚଳର ଲୋକମାନେ ମାନନ୍ତି। ଆମେମାନେ ମନ୍ଦିର ପ୍ରାଙ୍ଗଣରେ ପ୍ରବେଶ କଲୁ। ମନ୍ଦିର ସନ୍ନିକଟ ପୁଷ୍କରିଣୀ ଅତ୍ୟନ୍ତ ପରିଷ୍କାର ପାଣିରେ ଭର୍ତ୍ତି ହୋଇଛି। ବାଡ଼ ଘେରା ହୋଇ ପୁଷ୍କରିଣୀ ସୁରକ୍ଷିତ ଭାବରେ ରଖାଯାଇଛି।

ଏହି ମନ୍ଦିରଟି ପ୍ରାୟ ସାତ ଶହ ବର୍ଷର ପୁରୁଣା। ଏଥିରେ ଗ୍ରେନାଇଟ୍ ଚଟାଣ ଦେଉଳ ଭିତରେ ହୋଇଛି। ଶ୍ରୀ ନାଗେଶ୍ୱର ହେଉଛନ୍ତି ଶିବ। ତାଙ୍କ ମୁଖରେ ସୁନାର ମୁକୁଟ। ଏହି ଶିବଲିଙ୍ଗ ସର୍ବଦା ସୁନା ମୁକୁଟରେ ଆବଦ୍ଧ ହୋଇଥା'ନ୍ତି। କେବଳ ଭୋଗ ହେଲାବେଳେ ଏହି ଶିବଲିଙ୍ଗ ଉପରୁ ମୁକୁଟ ବାହାରେ କରାଯାଏ। ଏହି ଦର୍ଶନ ପାଇବାକୁ ହେଲେ ଭଗବାନଙ୍କର ଭୋଗବେଳକୁ ଉପସ୍ଥିତ ହେବାକୁ ପଡ଼ିବ। ଏହି ଶିବଲିଙ୍ଗର ଉପରିଭାଗରେ ଉତ୍ସବ-ମୂର୍ତ୍ତି ଶିବଙ୍କର ଅଛି। ମନ୍ଦିର ପ୍ରାଙ୍ଗଣରେ ଚାରିପଟେ ବୁଲି ଆସିଲୁ। ଦେଉଳର ଉପରିଭାଗ ଦଧିକଳସୀ ସ୍ଥାନ ସୁନାର ଲେପ ଦିଆଯାଇଛି।

ଅଧଘଣ୍ଟା କାଳ ଅପେକ୍ଷା କଲୁ। ବାହାରେ ବର୍ଷା ହେଉଥିଲା।

## ଶ୍ରୀ ମଙ୍ଗେଶ୍ୱର ପ୍ରସନ୍ନ (ମନ୍ଦିର) :

ପ୍ରାୟ ପାଞ୍ଚ କି.ମି. ଦୂରରେ ମଙ୍ଗେଶ୍ୱର ଗ୍ରାମରେ ଏହି ମନ୍ଦିର ଅବସ୍ଥିତ। ଏଠାକୁ ବହୁତ ତୀର୍ଥଯାତ୍ରୀ ଆସିଥା'ନ୍ତି। ମନୋରମ ପରିବେଶରେ ମନ୍ଦିରଟି ଅବସ୍ଥିତ। ମନ୍ଦିରଟି ପ୍ରାୟ ପାଞ୍ଚଶହ ବର୍ଷର ପୁରୁଣା। ମନ୍ଦିର ପ୍ରାଙ୍ଗଣରେ ଅତିଥି-ଅଭ୍ୟାଗତଙ୍କ ପାଇଁ ରହିବା, ଖାଇବା ସୁବିଧା ଅଛି। ମନ୍ଦିର ବାହାରେ ବହୁତଗୁଡ଼ିଏ ଦୋକାନ ଅଛି। କିଛି ଲୁଗା, ପ୍ୟାଣ୍ଟ୍, ସାର୍ଟ, ଖେଳନା ଏବଂ ଘରସଜା ଜିନିଷ ମିଳେ। ତା'ଛଡ଼ା ଔଷଧ ଫଳପତ୍ରର କିଛି ଉଠା ଦୋକାନ ଅଛି।

ମନ୍ଦିରକୁ ଗଲୁ ପ୍ରାୟ ହଜାର ଫୁଟ ଚାଲିଚାଲି। ଏଠାରେ ଗୋଆ ପୋଲିସର ଟ୍ରାଫିକ୍ ବ୍ୟବସ୍ଥା ଅଛି। ଗାଡ଼ି, ଟ୍ୟାକ୍ସି ମନ୍ଦିରଠାରୁ କିଛି ଦୂରରେ ଷ୍ଟାଣ୍ଡରେ ରହେ। ସମ୍ମୁଖରେ ଗୋଟିଏ ଉଚ୍ଚ ବିଦ୍ୟାଳୟ ଅଛି।

ଆମେ ମନ୍ଦିର ଭିତରେ ପହଞ୍ଚିଲୁ। ହାତରେ କିଛି ଫୁଲ ନେଇଥିଲୁ। ଦୀପ ଜାଳିବାର ବ୍ୟବସ୍ଥା ନାହିଁ। ପ୍ରସିଦ୍ଧ ଗାୟିକା ଲତା ମଙ୍ଗେସକରଙ୍କର ଜନ୍ମସ୍ଥାନ ଏହି ଗ୍ରାମ ମଙ୍ଗେସ୍କରରେ ବୋଲି କେତେକ ଲୋକ କୁହାକୁହି ହେଉଥିଲେ। ମନ୍ଦିରରେ ମହାଦେବଙ୍କୁ ଦର୍ଶନ କଲୁ। ଶିବଲିଙ୍ଗ ଉପରେ ସୁନାର ମୁକୁଟ। ଉପରେ ଉତ୍ସବ-ମୂର୍ତ୍ତି। ଦିଅଁଙ୍କ ପାଖରେ ହାତଯୋଡ଼ି ନମସ୍କାର କରି ମନସ୍କାମନା ଜଣାଇଲୁ।

## କାଥୋଲିକ୍ ଚର୍ଚ୍ଚ ଦର୍ଶନ :

ସେତେବେଳକୁ ପ୍ରାୟ ଦିନ ୪ଟା ବାଜିଗଲା। ଏହାପରେ ଆମେ ଗୋଆର ଦକ୍ଷିଣ ପାର୍ଶ୍ୱକୁ ଯିବାପାଇଁ ଉଦ୍ୟତ ହେଲୁ। ବର୍ଷା ଆଉ ଖରାର ଖେଳ ଭିତରେ ଆମେ ଆସି କାଥୋଲିକ୍ ଚର୍ଚ୍ଚ ପାଖରେ ପହଞ୍ଚିଗଲୁ। ବିରାଟ ଚର୍ଚ୍ଚ। ପର୍ତ୍ତୁଗୀଜ୍‌ମାନଙ୍କର ଶାସନ କାଳର ଅପକୀର୍ତ୍ତି ଏବଂ ନୃଶଂସ ହତ୍ୟାକାଣ୍ଡମାନ ବର୍ଣ୍ଣନା କରୁଥିଲେ ଆମର ଚର୍ଚ୍ଚର ଗାଇଡ୍। ଚର୍ଚ୍ଚ ଭିତରକୁ ପଶିଲୁ। ଗାଇଡ୍‌ର ମୁହଁରେ ରକ୍ତର ଆଭା। ବୋଧହୁଏ ହିନ୍ଦୁ ଗାଇଡ୍ ପଚାଶ ଟଙ୍କାରେ ସେ ଆମକୁ ସବୁ ବୁଝାଇଦେବ କହିଲା; କିନ୍ତୁ ତା'ର ଭାଷଣରେ— ବେଶୀକରି ପର୍ତ୍ତୁଗୀଜଙ୍କର

ଶାସନକାଳରେ ପ୍ରାୟ ଦୁଇ ଶହ ହିନ୍ଦୁ ମନ୍ଦିର ଧ୍ୱଂସ କରିଥିଲେ। ହିନ୍ଦୁ ବ୍ରାହ୍ମଣମାନଙ୍କୁ ଜୀଅନ୍ତା ହତ୍ୟା କରୁଥିଲେ। ସୁନା, ରୂପା, ଶସ୍ୟ ଲୁଣ୍ଠନ କରୁଥିଲେ। ଏହି ବିରାଟ କାଥୋଲିକ୍ ଚର୍ଚ୍ଚଟି ହିନ୍ଦୁ ଶିବ ମନ୍ଦିର ଥିଲା ବୋଲି ସେ ଦୃଢ଼ତାର ସହ କହୁଥିଲେ। ଏହି ମନ୍ଦିରର ବ୍ରାହ୍ମଣ ପୂଜକମାନଙ୍କୁ ମାରି ଏଠାରେ ଜଳାଇ ଦେଇଥିଲେ। ସୁନାରୂପା ସବୁ ଏହି ଚର୍ଚ୍ଚ ଏବଂ ଆଖପାଖ ଚର୍ଚ୍ଚମାନଙ୍କରେ ବ୍ୟବହୃତ କଲେ।

ସେ ଦେଖାଇ ଚାଲିଲା ଚର୍ଚ୍ଚର ବିଭିନ୍ନ ସାମଗ୍ରୀ। ପାଦ୍ରୀଙ୍କର ବିଚାର ପ୍ରକୋଷ୍ଠ। ଗୋଆର ରାଜଧାନୀ ପାନାଜିରେ ଏହି ଚର୍ଚ୍ଚଗୁଡ଼ିକ ଅବସ୍ଥିତ। ମାଙ୍କଡ଼ା ପଥରରେ ପ୍ରାୟ ଅଶୀଫୁଟ୍ ଉଚ୍ଚର ଚର୍ଚ୍ଚ ସୁରକ୍ଷିତ। ଏହାର ଉପରିଭାଗରେ କାଠର ପ୍ରସ୍ତର ଅଛି। କାଠଗୁଡ଼ିକ ଲୁଣପାଣିରେ ସିଞ୍ଚନ ହୋଇଥିବାରୁ ଉଈ ବା ଦଦରା ହେଉନାହିଁ। ପରିଷ୍କାରପରିଚ୍ଛନ୍ନ ଏହି କାଥୋଲିକ୍ ଚର୍ଚ୍ଚରେ ପ୍ରାୟ ପାଞ୍ଚଶହ ବେଞ୍ଚ୍ ପଡ଼ିଛି ପ୍ରାର୍ଥନା ପାଇଁ। ସକାଳ ଏବଂ ସନ୍ଧ୍ୟା ପୂର୍ବରୁ ପ୍ରାର୍ଥନା ପ୍ରତ୍ୟେକଦିନ ହୋଇଥାଏ। ଖ୍ରୀଷ୍ଟିଆନମାନଙ୍କର ଏହା ଧର୍ମସ୍ଥଳୀ।

ଏହି ଚର୍ଚ୍ଚର ବିଶେଷ ଖ୍ୟାତି ଅଛି। ଏଠାରେ ଏହି ପୂର୍ବତନ ଚର୍ଚ୍ଚର ପାଦ୍ରୀଙ୍କର ମରଶରୀରକୁ ଅକ୍ଷତ ଭାବରେ ପ୍ରାୟ କୋଡ଼ିଏ ଫୁଟ ଉଚ୍ଚ ମଞ୍ଚାରେ କାଚ କଫିନ୍‌ରେ ଭକ୍ତମାନଙ୍କର ଦର୍ଶନ ପାଇଁ ରଖାଯାଇଛି। ଏହି ମରଶରୀରକୁ କୌଣସି କେମିକାଲ୍ ଭିତରେ ରଖାଯାଇନାହିଁ। କେବଳ ଦେହ ମୁହଁ ସାରା ମହମରେ ଆବୃତ କରାଯାଇଛି। ପବନବିହୀନ କାଚ କଫିନ୍‌ରୁ ପାଦ୍ରୀଙ୍କର ମୁହଁ ଏବଂ ପାଦ ଦୁଇଟି ଦିଶୁଛି। ଆଉ ସାରା ଦେହ ଧଳା ସୁଟ୍‌ରେ ଆବୃତ କରାଯାଇଛି। ପ୍ରତ୍ୟେକ ବାରବର୍ଷରେ ଥରେ ଏହି ମରଶରୀରକୁ ତଳକୁ ଅଣାଯାଏ ସର୍ବସାଧାରଣଙ୍କର ଦର୍ଶନ ପାଇଁ। ପ୍ରାୟ ଶହେ ବର୍ଷ ତଳେ ପାଦ୍ରୀଙ୍କର ଶେଷ ଇଚ୍ଛାରେ ଏପରି କରାଯାଇଛି। ତାଙ୍କର ଶେଷ ଇଚ୍ଛା ଥିଲା "ମୋର ମୃତ୍ୟୁହେଲେ ମୋର ପାର୍ଥିବ ଶରୀର ଗୋଆର କାଥୋଲିକ୍ ଚର୍ଚ୍ଚରେ ସୁରକ୍ଷିତ ଅବସ୍ଥାରେ ରଖାଯିବ।"

ଏହି ବିଶେଷ ଘଟଣା ଯୋଗୁଁ ଖ୍ରୀଷ୍ଟିଆନ୍‌ମାନେ ଏହି ଚର୍ଚ୍ଚକୁ ବହୁତ ମାନନ୍ତି ଏବଂ ଏହି ପାଦ୍ରୀଙ୍କ ପାଖରେ ନିଜର ମନସ୍କାମନା କରି ପ୍ରାର୍ଥନା କରନ୍ତି।

ଚର୍ଚ୍ଚ ବୁଲା ସରିଗଲା । କିଛି ଫଟୋ ଉଠାଇଥିଲୁ । ଏହାପରେ ଆମ୍ଭେମାନେ ନିରମାର ବିଚ୍‌କୁ ଗଲୁ ।

## ନିରମାର ବିଚ୍ :

ଗୋଆର ପାନାଜି ସହରରେ ମୁଖ୍ୟରାସ୍ତା କଡ଼ରେ ସମୁଦ୍ରର କୁଆର ଦେଖୁଥିଲୁ । ସମୁଦ୍ରରେ ବହୁତଗୁଡ଼ିଏ ଛୋଟ ଛୋଟ ଜାହାଜ ରଖାଯାଇଛି । ଏଠାରେ ରାତ୍ରିକାଳରେ ସମୁଦ୍ରରେ ପ୍ରାୟ ପାଞ୍ଚ କି.ମି. ଯାଏ ନାଚ ଗୀତର ଆସର ଥାଏ । ଏଥିରେ ଯିବାକୁ ହେଲେ ୨୦୦ ରୁ ୩୦୦ଟଙ୍କା ଟିକେଟ୍ ପଡ଼େ । ଆମ୍ଭମାନଙ୍କର ସେଦିନ କାରବାର ଫେରିଯିବା କଥା । ତେଣୁ ଏହି କ୍ରୁଚ ମଜଲିସ୍‌ରେ ଭାଗ ନେଇପାରିଲୁନି ।

ନିରମା ବିଚ୍‌ରେ ଆସି ପହଞ୍ଚିଗଲୁ । ସେତେବେଳକୁ ପ୍ରାୟ ପାଞ୍ଚଟା ହେବ । ଆମେମାନେ ଛତା ନେଇ ବିଚ୍‌ର କିଛି ବାଟ ଯାଇଛୁ , ହଠାତ୍ ପ୍ରଚଣ୍ଡ ମେଘ ଆଉ ପବନ ଆସିଲା । ଓଦା ହୋଇଗଲୁ, ଫେରିଲୁ ଟ୍ୟାକ୍ସିକୁ । ପ୍ରାୟ ପନ୍ଦର ମିନିଟ୍ ପରେ ବର୍ଷା ପବନ ଛାଡ଼ିଗଲା । ମୁଁ ଏବଂ ମାମା ଦୁଇଟି ଛତାଧରି ବିଚ୍ ଦେଇ ବୁଲିଲୁ । ସମୁଦ୍ର ତେଉ ଆସୁଛି, ଯାଉଛି । ମନୋହର ଦୃଶ୍ୟ ଦେଖିବାକୁ ବେଶୀ ଲୋକ କିମ୍ବା ଯାତ୍ରୀ ନ ଥିଲେ । କିଛି ବିଦେଶୀ ତରୁଣ-ତରୁଣୀ ଥିଲେ । ବହୁତ କଲେଜ ସ୍କୁଲର ଛାତ୍ରଛାତ୍ରୀ ଗାଧୋଇବାରେ ମଗ୍ନ ଥିଲେ । ଫେରିବାଲାଠାରୁ କିଛି କାନଫୁଲ କିଣିଲୁ । ନିରାମାର ବିଚ୍ ବହୁତ ଭଲ ଲାଗୁଥିଲା । ସମୟ ହୋଇଆସିଲା । ଆମେମାନେ ଟ୍ୟାକ୍ସିରେ ଫେରିଲୁ କାରବାର ନୌସେନାବେଶକୁ । ପହଞ୍ଚିଲାବେଳକୁ ପ୍ରାୟ ରାତି ସାଢ଼େ ଆଠଟା ହୋଇଥିଲା । ବୁଟୁ, ଶ୍ରେୟା , ଶ୍ରେଷ୍ଠା ଘରକୁ ଫେରିଥିଲେ । ସେମାନଙ୍କ ପାଇଁ କିଛି ଆଣିଥିଲୁ । ସମସ୍ତେ ଖୁସି ହେଲେ ।



# ଜୋଗ ଫଲ୍ (ଜଳପ୍ରପାତ) ଏବଂ ମୁଦ୍ରେଶ୍ୱର ମହାଦେବ ପରିଦର୍ଶନ

'କାରବାର ନୌସେନା' ବେଶ୍‌କୁ ଆସିବା ଦିନଠାରୁ ଜୋଗ ଫଲ୍ (jog fall) ଜଳପ୍ରପାତ ଯିବା ପାଇଁ ଆମ୍ଭେମାନେ ମନସ୍ଥ କରିଥିଲୁ । ଏଥିପାଇଁ ସାନଝିଅ ସ୍ମିତା ଏବଂ ସାନ ଜ୍ୱାଇଁ ଶିବପଦ ଅଶେଷ ଆଗ୍ରହ ପ୍ରକାଶ କରି ଯୋଗାଡ଼ରେ ଲାଗିଥିଲେ । ଏଥିପାଇଁ ସମୟ ନିର୍ଘଣ୍ଟ କରିବା ନିହାତି ଜରୁରୀ ଥିଲା । 'କାରବାର ନୌସେନା' ବେଶ୍‌ଠାରୁ ଏହି କମନୀୟ ଜଳପ୍ରପାତଟି ପ୍ରାୟ ୧୬୦ କି.ମି. ଦୂର ଥିଲା । କେବଳ ଏହି ଜଳପ୍ରପାତଟି ସକ୍ରିୟ ହୋଇଉଠେ ବର୍ଷାଋତୁରେ । ବର୍ଷାଋତୁ ଆରମ୍ଭ ହୋଇ ପଶ୍ଚିମଘାଟରୁ ମୌସୁମୀବାୟୁ ଆସି ଏହି ଅଞ୍ଚଳରେ ପ୍ରବଳ ବର୍ଷା କରାଇଥାଏ । ପଶ୍ଚିମଘାଟର ପର୍ବତମାଳା ଏହି ଜଳରାଶିକୁ ଠୁଳ ରଖି ନ ପାରିବାରୁ ଗଡ଼ାଣିଆ ସ୍ଥାନକୁ ଗଡ଼ିଆସେ । ଏହି ଜଳପ୍ରପାତ ଚାରିମାସ ଧରି ହୋଇଥାଏ । ଏହା ଜୁଲାଇ ମାସରୁ କ୍ରମଶଃ ଆରମ୍ଭ ହୋଇ ସେପ୍‌ଟେମ୍ବରରେ ଭୀଷଣ ଆକୃତି ଧରେ ।

ଆମ୍ଭେମାନେ ଗୋଟିଏ ମାରୁତି ଭ୍ୟାନ୍(ଟ୍ୟାକ୍ସି)ରେ ୧୮/୭/୦୯ ସକାଳ ଆଠଟା ବେଳେ ବସିଲୁ । ଆନୁସଙ୍ଗିକ ଖାଦ୍ୟ ଜିନିଷ (ପରଟା ଏବଂ ତରକାରୀ) ସହିତ ବିସ୍କୁଟ୍-ମିକ୍ସର୍ ଓ ପ୍ରଚୁର ପିଇବା ପାଣି ସାଥିରେ ନେଲୁ । କାଳେ ବର୍ଷାରେ ଯିବାକୁ ପଡ଼ିବ ବୋଲି ସାଙ୍ଗରେ ଦୁଇଟି ଛତା ନେଲୁ । ଗାଡ଼ିର ଡ୍ରାଇଭର୍ (ରାଜେନ୍ଦ୍ର) ଜଣେ ସ୍ଥାନୀୟ କର୍ଣ୍ଣାଟକୀ ଚାଲାକ ଚତୁର ଲୋକ ଥିଲା । ତା'ର ସେହି ଜୋଗ ଫଲ୍ ଉପରେ ବିଶେଷ ଜାଣିବାରେ ଏବଂ ରାସ୍ତାର ଖାଲଢିପ ସହିତ ପାହାଡ଼-ପର୍ବତର ରାସ୍ତା ଉପରେ ବିଶେଷ ଦକ୍ଷତା ଥିଲା ।

ସକାଳ ସାଢ଼େ ଆଠଟା ସୁଦ୍ଧା ଆମେ ଗାଡ଼ିରେ ବସିଲୁ । ରାଜେନ୍ଦ୍ର ଗାଡ଼ି ଚଳାଇଲା । ଆଗରେ ଶିବପଦ ଡ୍ରାଇଭର୍ ପାଖ ସିଟ୍‌ରେ ବସିଲେ । ମାରୁତି ଭ୍ୟାନ୍‌ର ପଛପଟ ସିଟ୍‌ରେ ଆମେମାନେ ବସିଲୁ ଆରାମରେ । ପାଣି, ଜଳଖିଆ ଏବଂ ଛତା ଆମ ପାଖରେ ରହିଲା । ଆଉ ଲୁଗାପଟା ଓ ଅନ୍ୟାନ୍ୟ ଜିନିଷମାନ ପଛପଟରେ ରହିଲା ।

ଗାଡ଼ି 'କାରବାର ନୌସେନା'ର ପ୍ରଥମ ଫାଟକ ଦେଇ ସୁରକ୍ଷା କର୍ମୀଙ୍କର ଚେକ୍ ପରେ ଜାତୀୟ ରାଜପଥକୁ ସ୍ପର୍ଶ କଲା । ସତର ନମ୍ବର ଏହି ଜାତୀୟ ରାଜପଥଟି ଗୋଆଠାରୁ ବାଙ୍ଗାଲୋର୍ ଯାଇଛି । ଏହି ରାଜପଥଟି ଅଣଓସାରିଆ ପାର୍ବତ୍ୟ ଅଞ୍ଚଳ ଦେଇ ଗତି କରୁଛି । ମରାମତି ଏବଂ ରକ୍ଷଣାବେକ୍ଷଣ ଉପରେ ଉପଯୁକ୍ତ ଧ୍ୟାନ ଦିଆ ଯାଉ ନ ଥିବାରୁ ରାସ୍ତାର ଅଧିକାଂଶ ଭାଗ ପିଚୁ ଭାଙ୍ଗି ବିରାଟକାୟ ଖାଲ ହୋଇଛି । ଏହାରି ଉପରେ ଟ୍ରକ୍-ବସ୍ ଏବଂ ଛୋଟ କାର୍ ଚଳାଇବା ଡ୍ରାଇଭର୍ ପକ୍ଷରେ ଅସୁବିଧା ହେଉଛି ଏବଂ ଦୁର୍ଘଟଣା ମଧ୍ୟ ଯେ କୌଣସି ମୁହୂର୍ତ୍ତରେ ହୋଇ ଯାଇପାରେ । ଦୁଇଚକିଆ ଯାନ ମଟର ସାଇକେଲ୍ ଏବଂ ସ୍କୁଟର୍‌କୁ ଚଳାଇବା ଦୁରୂହ ବ୍ୟାପାର ବୋଲି ମନେହୁଏ । ପୁନଶ୍ଚ ବର୍ଷା ଯୋଗୁ ସାରା ରାସ୍ତାର ଅଂଶ ପିଚ୍ଛିଳ ଏବଂ କାଦୁଆ ଜଣାପଡୁଛି ।

ଆମ୍ଭେମାନେ 'କାରବାର ନୌସେନା' ବେଶ୍‌କୁ ଆସିବା ଦିନଠାରୁ (୧୧/୬/୦୯) ଆଜି ପର୍ଯ୍ୟନ୍ତ ବର୍ଷା ଲାଗିରହିଛି । ଏହି ଲଗାଣ ବର୍ଷା ଯୋଗୁ ତଳିଆ ଅଞ୍ଚଳରେ ପାଣି ଭର୍ତ୍ତି ହୋଇଯାଇଛି । କର୍ଣ୍ଣାଟକରେ 'ହୁବୁଳି' ଏବଂ 'କୁମୁଟା-ଆଙ୍କୋଲା' ଅଞ୍ଚଳରେ ମଧ୍ୟ ବର୍ଷାରେ କ୍ଷତି ଘଟାଇଛି । ନଦୀ ଏବଂ ସମୁଦ୍ରର ଜଳ ମିଶି କ୍ଷେତବାଡ଼ି ଉଜାଡ଼ି ଦେଇଛି । ପାହାଡ଼ ପର୍ବତରୁ ପାଣିର ଝର ଖସି ଆସୁଛି ଏହି ଜାତୀୟ ରାଜପଥକୁ । ଗାଡ଼ି ଆମର ଏହି ଅଣଓସାରିଆ ଅଙ୍କାବଙ୍କା (Zigzag) ପାର୍ବତ୍ୟ ରାସ୍ତାରେ ଗଲାବେଳେ ମନରେ ଆଶଙ୍କା ସହିତ ଅଶେଷ ଆନନ୍ଦର ଶିହରଣ ଖେଳି ବୁଲୁଥିଲା ଉଚ୍ଚ ପର୍ବତର ଅପୂର୍ବ ଶୋଭାରାଶିର ସବୁଜିମା ଦେଖି । ରାସ୍ତାର ଡାହାଣ ପାର୍ଶ୍ୱରେ ବହୁତ ଭାଗରେ ସମୁଦ୍ରର ସୁନ୍ଦର ଏବଂ ମନୋରମ ଢେଉମାଳାର ଫେନିଳ ଦୃଶ୍ୟ ଏବଂ ଗର୍ଜନ ମନୋମୁଗ୍ଧକର ବୋଧ ହେଉଥିଲା । ପ୍ରକୃତି ରାଣୀର ଫୁଟନ୍ତ ଯୌବନର ପ୍ରାକୃତିକ ଶୋଭା ମନକୁ ଆକୃଷ୍ଟ କରୁଥିଲା ।

ଗାଡ଼ି ଆମର ଆଗକୁ ଗଡ଼ିଚାଲିଲା ସେଇ ଅଙ୍କାବଙ୍କା ପିଚ୍ଛିଳ ଖାଲଢିପ ରାଜରାସ୍ତାରେ। ଆଗରୁ ଆମ୍ଭେମାନେ ଗୋକର୍ଣ୍ଣ ମହାଦେବଙ୍କୁ (ଏହି ରାସ୍ତାରେ ପଡ଼ିବ) ଦର୍ଶନ କରିଥିଲୁ। ସେହି ବିଷୟରେ ଆଗରୁ ବିଶଦ ବିବରଣୀ ଦେଇଛି। ପୁନରାବୃତ୍ତି କରୁନାହିଁ। ବାଟରେ କୌଣସି ଜାଗାରେ ଗାଡ଼ି ଅଟକାଇ ନ ଥିଲୁ। ଗୋକର୍ଣ୍ଣ ଛକ 'କାରବାର'ଠାରୁ ୪୬ କି.ମି. ଦୂର। ଆମ ଗାଡ଼ି ଗୋକର୍ଣ୍ଣ ଛକରେ ପହଞ୍ଚିବା ପୂର୍ବରୁ ବହୁତଗୁଡ଼ିଏ ଛୋଟ ବଡ଼ ଗାଁ, ଛୋଟ ସହର ଅତିକ୍ରମ କରିଥିଲୁ। ସେଗୁଡ଼ିକ ହେଲା ବିନାଗା, ଚେଣ୍ଡିଆ, ପୋଷ୍ଟ ଚେଣ୍ଡିଆ, ଅଣ୍ଡାଲି, ମୁଡ଼ଗା, ଅଭସା, ବାଲଖେରି, ଆଙ୍କୋଲା, ବେଡ଼ସା, ସ୍କିଲ, ଗଙ୍ଗୁଭାଲି ବ୍ରିକ୍, ମାଡ଼ାଗିରି ଓ ଟୋରେକା। ଏହି ଛକ ଉପରେ ପ୍ରସିଦ୍ଧ 'ପାତାଳଫୁଟି ମହାଦେବ'ଙ୍କୁ ଅନ୍ତର ଦେଇ ପ୍ରଣିପାତ କରିଥିଲୁ। ଏଠାରୁ ଗୋକର୍ଣ୍ଣ ମହାଦେବଙ୍କ ମନ୍ଦିର ( ସମୁଦ୍ର କୂଳରେ ଅବସ୍ଥିତ) ପ୍ରାୟ ଦଶ କି.ମି. ବାଟ।

ପ୍ରାୟ ଦିନ ସାଢ଼େ ଦଶଟା ବେଳକୁ ଏହି ସ୍ଥାନର ଛକ ଅତିକ୍ରମ କରି ଆଗକୁ ଚାଲିଲୁ। ମନର ଉତ୍କଣ୍ଠା ବଢ଼ି ଚାଲିଥାଏ। ଏଠାରୁ ପୁନଶ୍ଚ ୧୧୩ କି.ମି.ର ଏହି ଖାଲ-ଢିପ-ପଙ୍କିଳ ରାସ୍ତାକୁ ଡେଇଁଲେ ଲକ୍ଷ୍ୟସ୍ଥଳରେ ପହଞ୍ଚିବ। ଗତିପଥରେ ମଝିରେ ମଝିରେ ପ୍ରବଳ ବର୍ଷା ହେଉଥାଏ। ସେତେବେଳେ ଗାଡ଼ି ଚଳାଇବା ଅସମ୍ଭବ ମନେ ହେଉଥାଏ। ଏହି ବର୍ଷା ମାତ୍ର ଅଧଘଣ୍ଟା ଭିତରେ ଛାଡ଼ି ଯାଉଥାଏ। ଆମ ଗାଡ଼ିର ଡ୍ରାଇଭର (ରାଜେନ୍ଦ୍ର) ବର୍ଷାକୁ ଭୟ ନ କରି ଚଳାଉଥାଏ; କିନ୍ତୁ ଆମେମାନେ ଆଶଙ୍କାରେ ଭୟଭୀତ ହୋଇପଡୁଥିଲୁ। ସେ କିନ୍ତୁ ପେଶାଦାର ଡ୍ରାଇଭର ପରି ଖାଲ-ଢିପ ନ ମାନି ସେହି ଗିରିପଥର ଅଙ୍କାବଙ୍କା ଭୟଶଙ୍କୁଳ ରାସ୍ତାରେ ନିର୍ବିକାର ଚିତ୍ତରେ ଗାଡ଼ି ଚଳାଉଥାଏ। ପଛସିଟ୍‌ରେ ଆମେମାନେ ପ୍ରାୟ ଏକପ୍ରକାର କୁସ୍ତି-କସରତ କଲା ଅବସ୍ଥାରେ ଥିଲୁ। କେତେବେଳେ ଡାହାଣ ପଟକୁ ସମସ୍ତେ ଗଡ଼ି ପଡ଼ିଲା ବେଳକୁ ପରକ୍ଷଣରେ ବାମପଟକୁ ଆଉଜି ପଡୁଥାଉ। ଆମର ଦୁଇ ନାତୁଣୀ ମନୋବୋଧ ଉପଭୋଗ କରୁଥା'ନ୍ତି ଏପରି କୁଦାଚକଟାକୁ। ବେଳେ ବେଳେ ସବା ପଛପଟ ସଟ୍‌ରେ ବସିଥିବା ଆମ ଦୁଇଜଣଙ୍କର ମୁଣ୍ଡ-ପିଠି ଗାଡ଼ିର ଭିତର ଛାତରେ ଅବା କଡରେ ଥିବା ଦ୍ୱାରରେ ବାଜି ଯାଉଥାଏ। ଆହାଃ-ଚୁଃ-

ହସଗୋଳର ଶବ୍ଦ ମନ ସନ୍ତୋଷ କରୁଥିଲା । ତା' ସାଙ୍ଗକୁ ଡ୍ରାଇଭର୍ ହିନ୍ଦୀ ଗୀତ ଲଗାଇ ଦେଇଥାଏ । ଅପୂର୍ବ ମେଳ ଥିଲା ପରି ଜଣାପଡୁଥିଲା । ଗାଡ଼ି ଗିରିପଥର ଅଙ୍କାବଙ୍କା ଭୟଙ୍କର ରାସ୍ତାରେ ଚାଲିଥିଲା ଗୋଟିଏ ନୂଆବୋହୂର ଚାଲି ନେଇ । ବାମ ପଟେ ପର୍ବତମାଳାର ସବୁଜ ବନାନୀ ଏବଂ ଦୀର୍ଘତମ ବୃକ୍ଷରାଜିର ଶୋଭା ସହିତ ଡାହାଣ ପଟର ଉତ୍ତାଙ୍ଗ ତରଙ୍ଗମାଳାର ଚିରାଚରିତ ଗର୍ଜନ ସହିତ ସମୁଦ୍ର ବକ୍ଷର କଳା-ଘନୀଭୂତ ଅବା ନେଳିଆ-ଧଳା ଜଳରାଶି ମାନସପଟରେ ଅପୂର୍ବ ରୋମାଞ୍ଚକର ଶିହରଣ ଜାଗ୍ରତ କରୁଥିଲା ।

ବର୍ଷା ମଝିରେ ମଝିରେ ଆସୁଥିଲା । ପୁଣି ପାଗ ଭଲ ହୋଇ ଯାଉଥିଲା । ପଛପଟର ମାତ୍ର ଗୋଟିଏ କାଚ ଝରକାର ଅଳ୍ପ ଅଂଶ ଖୋଲା ରହୁଥିଲା । ଶୀତଳ ପବନର ପ୍ରବଳ ବେଗ ଦେହ ମୁଣ୍ଡକୁ କାଲୁଆ କରି ଦେଉଥିଲା । ଆମେମାନେ ମନପ୍ରାଣ ଦେଇ ପ୍ରକୃତିର ଏହି କମନୀୟ-ଭୟଙ୍କର ରୂପକୁ ଅନୁଧ୍ୟାନ କରି ଖୁସି ହେଉଥିଲୁ । ଏହି ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରୁ କରୁ ହଠାତ୍ ଶିବପଦଙ୍କର ପାନ ଖାଇବାକୁ ଇଚ୍ଛା ପ୍ରବଳ ହେଲା । ଆମେମାନେ ପଛ ସିଟ୍‌ରେ ବସି ହସଖୁସିରେ ଯାଉଥିବା ବେଳେ ସେ ଏକୁଟିଆ କେବଳ ବାଜୁଥିବା ଗୀତ ଶୁଣି ବସିଥା'ନ୍ତି । ମଝିରେ ମଝିରେ ଆମ ଆଡ଼କୁ ଚାହିଁ ହସି ଦେଉଥା'ନ୍ତି । ରାଜେନ୍ଦ୍ର ସହିତ କିଛି କଥାବାର୍ତ୍ତା କରୁଥା'ନ୍ତି ସେହି ପାଖ ଦେଇ ଯାଉଥିବା ଗାଁ'ଗୁଡ଼ିକ ବା ସହର ବିଷୟରେ । ରାଜେନ୍ଦ୍ର (ଗାଡ଼ିର ଡ୍ରାଇଭର୍) ବହୁତ କଥା କହୁଥିବାର ଜଣାପଡୁଥିଲା । ବିଶେଷତଃ ତା'ର ବ୍ୟବସାୟ ସଂକ୍ରାନ୍ତରେ । ଭାରି କର୍ମଠ ଥିବାର ପ୍ରତୀତ ହେଉଥିଲା । ବାରବର୍ଷ ତଳେ ଗୋଟିଏ ଅଟୋ ଚଲାଉଥିଲା । ପରେ ଖଣ୍ଡିଏ ଅଟୋରିକ୍ସା କିଣିଲା । ଦେଖିବାକୁ ସୁସ୍ଥସବଳ । ଗୋଟିଏ ଅଟୋରୁ ଆଉ ଖଣ୍ଡିଏ ଅଟୋ କଣିଲା । ପରେ ଗୋଟିଏ ମାରୁତି ଭ୍ୟାନ୍ କିଣିଲା । ଦୁଇବର୍ଷ ପରେ, ଏବେ ଦୁଇମାସ ହେଲା ଆଉ ଗୋଟିଏ ମାରୁତି ଭ୍ୟାନ୍ କିଣିଛି । ଗୋଟିଏ ଭ୍ୟାନ୍‌ରେ ଡ୍ରାଇଭର୍ ରଖିଛି । ଏବେ କିଣିଥିବା ପୁରୁଣା ନାଲି ମାରୁତି ଭ୍ୟାନ୍‌କୁ ନିଜେ ଚଲାଉଛି । ଅଟୋ ଦୁଇଟା ପାଇଁ ଦୁଇଟି ଅଟୋ ଡ୍ରାଇଭର୍ କାମ କରୁଛନ୍ତି ।

ତା'ର ଛୋଟ ବ୍ୟବସାୟ କ୍ରମେ ବଡ଼ ରୋଜଗାରର ପନ୍ଥା ବାହାର କରୁଛି ।

ସେ ଟିକିଏ ଗପୁଡ଼ି; କିନ୍ତୁ ଭାରି ସାଧାସିଧା ଜଣାପଡୁଛି। ସେ ଏହି ପାଞ୍ଚବର୍ଷ ତଳେ ବାହା ହୋଇଥିଲା। ତା'ର ଗୋଟିଏ ଝିଅ। ସେ ଏବେ ନର୍ସରିରେ ନାମ ଲେଖାଇଛି। ଗୁଲୁଗୁଲିଆ ଝିଅଟି ମାତ୍ର ତିନିବର୍ଷର ହେବ। ରାଜେନ୍ଦ୍ରର ସ୍ତ୍ରୀ ବର୍ତ୍ତମାନ ମ୍ୟୁନିସିପାଲିଟି କାଉନ୍‌ସିଲର ହୋଇଛି। ତା'ର ଗୋଟିଏ ତେଜରାତି ଦୋକାନ ମଧ୍ୟ ବିନାଗା(ତା'ର ଗାଁ)ରେ ଅଛି। ତେଣୁ ରାଜେନ୍ଦ୍ର ଭାରି ବ୍ୟସ୍ତବହୁଳ ମଣିଷଟିଏ। କାନ ପାଖରେ ମୋବାଇଲ୍ ଧରି ଘଣ୍ଟେ-ଘଣ୍ଟେ ଧରି କର୍ଣ୍ଣାଟକୀ ଭାଷାରେ କ'ଣ ସବୁ ଉଚ୍ଚସ୍ୱରରେ କହୁଥିବାର ଜଣାପଡୁଥିଲା। ମୁଁ ଝିଅକୁ କହିଲି, "ଡ୍ରାଇଭର୍‌ର ଉଚ୍ଚସ୍ୱରରେ କଥାବାର୍ତ୍ତା (କର୍ଣ୍ଣାଟକୀ ଭାଷାରେ) ଆମର ପ୍ରାକୃତିକ ସୌନ୍ଦର୍ଯ୍ୟ ଅବଲୋକନ କରିବାରେ କିଛିଟା ବ୍ୟାଘାତ ସୃଷ୍ଟି କରୁଛି।" ତେଣୁ ମୋବାଇଲ୍ କଥାବାର୍ତ୍ତା ବନ୍ଦ କରିବାକୁ ସୂଚନା ଦେଲି। ଝିଅ ମୋର ମହାଚାଲାକ। ରାଜେନ୍ଦ୍ରକୁ କହିଲା, "ଆମକୁ କିଛି ହିନ୍ଦୀଗୀତ ଶୁଣାଇବ ନା ମୋବାଇଲ୍ ଫୋନ୍ କରୁଥିବ ?" ରାଜେନ୍ଦ୍ର ବୁଝିଗଲା। ସେ ହିନ୍ଦୀ ଗୀତର କ୍ୟାସେଟ୍ ଲଗାଇଲା। ଯାହାହେଉ, ମନଟା ଏକପ୍ରକାର ହାଲୁକା ହୋଇଗଲା। ଏହା ଭିତରେ କ୍ୱାଇଁ ମଧ୍ୟ ରାଜେନ୍ଦ୍ରକୁ କହିଲେ, "ଗୋଟିଏ ଭଲ ସ୍ଥାନରେ ଗାଡ଼ି ରଖିଲେ, କିଛି ସାଧା ପାନ ଭାଙ୍ଗି ନେଇଯିବା।"

'ଗୋକର୍ଣ୍ଣ' ଛକରୁ ପ୍ରାୟ ପଚିଶ କି.ମି.ଗଲା ପରେ 'ମିରିଜାନ୍' ସହର ପଡ଼ିଲା। ଛୋଟ ସହରଟିଏ। ପରିଷ୍କାର-ପରିଚ୍ଛନ୍ନ। କିଛି ଲୋକଗହଳି ଥିଲା। ଗାଡ଼ି-ମଟର-ବସ୍ ମଧ୍ୟ ରହିଥିଲା। ରାଜେନ୍ଦ୍ର ଗାଡ଼ି ନେଇ ଗୋଟିଏ ପାନଦୋକାନ ସମ୍ମୁଖରେ ରଖିଲା। ବର୍ଷା ଆସିବାର ସଙ୍କେତ ଦେଉଥିଲା। ଯଥାଶୀଘ୍ର ପାନ ଭାଙ୍ଗି ଗାଡ଼ିକୁ ଫେରିବାକୁ ଉଦ୍ୟମ କରୁଥିଲା ବେଳେ, ନାତୁଣୀ ଦୁଇଜଣଯାକ ଚକୋଲେଟ୍ ଆଣିବା ପାଇଁ ଗାଡ଼ିରୁ ଓହ୍ଲାଇଲେ। ଦୁହେଁ ପିଲାଲୋକ। ନାତୁଣୀମାନେ ଯାଇ ସେହି ପାନଦୋକାନରେ ପହଞ୍ଚିଲେ। ସେମାନେ ଚାରୋଟି ଚୁଇଙ୍ଗମ ଚକୋଲେଟ୍ ଧରି ଫେରିଆସିଲା ବେଳକୁ ହଠାତ୍ ବର୍ଷା ହୋଇଗଲା। ଦୁଇଜଣଯାକ ରେନ୍‌କୋଟ୍ ପିନ୍ଧିଥିଲେ। ଫେରିଆସିଲେ; କିନ୍ତୁ କ୍ୱାଇଁ ବର୍ଷାରେ ସାମାନ୍ୟ ଓଦା ହୋଇଯାଇଥିଲେ। ଡ୍ରାଇଭର୍ ବାହାରକୁ ଯାଇଥିଲା। ସାମାନ୍ୟ ଓଦା ହୋଇ ଫେରିଲା। ଗାଡ଼ି ଷ୍ଟାର୍ଟ୍ କଲା ଏବଂ ଧୀରେ ଧୀରେ ଚଳାଇଲା। ବର୍ଷା ହୋଇଗଲା ଜୋର୍‌ରେ। ମୁହଁକୁ ମୁହଁ

ଦିଶିଲା ନାହିଁ; ତଥାପି ଅଭ୍ୟାସ ମୁତାବକ ଗାଡ଼ି ଚଳାଉଥିଲା ଧୀରସୁସ୍ଥରେ। ଆମେମାନେ ଭିତରେ ବସି କିଛି ବସ୍କୁଟ୍-ମିକ୍ସର୍ ଖାଉଥିଲୁ। ବର୍ଷାର ଗତି ସହିତ ତାଳ ଦେଇ ଗାଡ଼ିର ଗତି କ୍ରମଶଃ ବଢ଼ିବାକୁ ଲାଗିଲା ସେଇ ଅଙ୍କାବଙ୍କା ପାର୍ବତ୍ୟ ପଥରେ। ଆଗରେ ବସି କ୍ୱାଇଁ ପାନ ଖଣ୍ଡିଏ ପାଟିରେ ପୂରାଇଲେ। ଏଠାକାର ସାଧା ପାନରେ ପ୍ରାୟ ଦଶପ୍ରକାରର ମିଠାମସଲା ପଡ଼ିଥାଏ। ସ୍ମିତା ଏବଂ ଶୈଳବାଳା ମଧ୍ୟ ଖଣ୍ଡିଏ ଖଣ୍ଡିଏ ପାନ ପାଟିରେ ଗୁଞ୍ଜିଲେ। ମୁଁ ମନାକଲି, କାରଣ ବଡ଼ ଗୁଆଖଣ୍ଡ ସହିତ ମିଠାମସଲା ମୋର ସ୍ୱାସ୍ଥ୍ୟ ପାଇଁ ଅନୁକୂଳ ନୁହେଁ। ପିଲାମାନେ ଚକୋଲେଟ୍ ଖାଇବାରେ ବ୍ୟସ୍ତ।

ସେହି ବର୍ଷାର ମଧୁର ଧ୍ୱନି ସହିତ ତାଳ ମିଳାଇ ଡ୍ରାଇଭର୍ ଗାଡ଼ିଟିକୁ ଆଗକୁ ଆଗକୁ ଚଳାଉଥାଏ। ଏହା ଭିତରେ 'ଦିଭିଗି' (Divigi) ଗଲାପରେ, 'ଅଗରନାଶିନି ବ୍ରିଜ୍' ଉପରେ (Aghanasini Bridge) ଗାଡ଼ି ଗଲାବେଳେ ଦୁଇପଟର ଭରା ଜଳସ୍ରୋତକୁ ଚାହିଁଲେ ଦେହ ଶିତେଇ ଉଠୁଥିଲା। ପ୍ରଚଣ୍ଡ ବେଗରେ ନଦୀର ପାଣି ସମୁଦ୍ର ଦିଗକୁ ଯାଉଥିଲା। ଏହା ପରେ 'କୁଣ୍ଟା' (Kunta) ନାମକ ଛୋଟ ସହର ପଡ଼ିଲା। ଜନଗହଳି ବିଶେଷ ନ ଥିଲା। ଆମେମାନେ ଆଗେଇଲୁ। ପ୍ଲାନିଡ଼ି ଗାଓଁ (Planidigaon) ଗାଁ' ପଡ଼ିଲା। ଏହା ପରେ 'ଭରନାକେରୀ' (Varanakeri) ପଡ଼ିଲା। ଗାଡ଼ି ରହିଲାନି; କିନ୍ତୁ ବର୍ଷା କମିଯାଇଥିଲା ଅନେକ ପରିମାଣରେ। ଝିପିଝିପି ବର୍ଷାରେ ଗାଡ଼ି ଆଗକୁ ଯାଉଥିଲା। 'ବାହେରି ବ୍ରିଜ୍' (Baheri Bridge) ପଡ଼ିଲା। ନଦୀ ଉପରେ ହୋଇଛି। ମଧ୍ୟମ ଧରଣର ବ୍ରିଜ୍। ବ୍ରିଜ୍ ଶେଷ ହେବା ପରେ ଛୋଟ ଗାଁ'ଟିଏ ପତୀୟମାନ ହେଲା। 'କଭଲା କକି ଭିଲେଜ୍' (Kavala kaki village) ଗାଁ'ଟିକୁ ପାର ହୋଇଗଲୁ। ଏହି ସମୟରେ ଦୁଇପଟରେ ପାହାଡ଼ମାଳା, ଦୀର୍ଘକାୟ ବୃକ୍ଷରାଶି ଦୃଶ୍ୟମାନ ହେଲା। ଅତି ମନୋହର ଦୃଶ୍ୟ। ହଠାତ୍ ମେଘମାଳା ଏଠାରେ କୁହୁଡ଼ି ରୂପ ଧାରଣ କରି ସାରା ରାସ୍ତା ଘୋଡ଼ାଇଦେଲା। ଆଗକୁ କିଛିମାତ୍ର ଦେଖାଗଲା ନାହିଁ। ଦୁଇପଟର ପାହାଡ଼ମାଳା ମଧ୍ୟ ଲୁଚିଗଲେ। ସବୁଆଡ଼ କୁହୁଡ଼ିମୟ ହୋଇ ଧବଳ ଆକାର ଗ୍ରହଣ କରିଥିବାର ଦେଖାଗଲା। ଡ୍ରାଇଭର୍ ଲାଇଟ୍ ଦେଇ ଗାଡ଼ି ଚଳାଇବାକୁ

ବାଧ୍ୟ ହେଲା । ଆଗପଟରୁ ଦୁଇଟା ଲାଇଟ୍ ଦେଖିଲେ ଗାଡ଼ି ଆସିବାର ସଙ୍କେତ ମିଳୁଥିଲା ।

ସେହି ମେଘ କୁହୁଡ଼ିରେ ବାଟ କଟାଇ ଆମ ଗାଡ଼ି ଆଗକୁ ଚାଲୁଥିଲା । ଏହି ସ୍ଥାନରୁ joga fall (ଜୋଗ ଫଲ୍) ଆଉମାତ୍ର ପଚାଶ କି.ମି. ଦୂର ହେବ । ବଙ୍କା-ଟଙ୍କା ପାର୍ବତ୍ୟ ରାସ୍ତାରେ ମେଘ କୁହୁଡ଼ି ଭିତରେ ଆମର ମାରୁତି ଭ୍ୟାନ୍ ଆଗକୁ ଗଲାବେଳେ ପ୍ରତି ମୁହୂର୍ତ୍ତରେ ବିପଦର ଆଶଙ୍କା ଥିଲା । ଏଥିପାଇଁ ଡ୍ରାଇଭର୍‌କୁ ଅତ୍ୟନ୍ତ ସଜାଗ ହେବାକୁ ପଡ଼ିଥାଏ । ଏଥର 'ଗେରୁମହଲ' (Geru Mahala) ଗାଁ ପଡ଼ିଲା ।  ଘନଅରଣ୍ୟ ଏହା ପରେ ଶେଷ ହେବାକୁ ଲାଗିଲା । ଗାଡ଼ି କ୍ରମଶଃ ତଳକୁ ତଳକୁ ଖସିବାରେ ଲାଗିଲା ରାଜପଥରେ । 'ଉନୋଡ଼ି' (Unodi) ଗାଁ'ରେ ପହଞ୍ଚିଲୁ । ପାଗ ଟିକିଏ ବଦଳିବାକୁ ଲାଗିଲା । ଘନବର୍ଷା କ୍ରମଶଃ କମିବାକୁ ଲାଗିଲା । ଉନୋଡ଼ିରେ ଆମେମାନେ କାର୍‌ରୁ ଓହ୍ଲାଇଲୁ । ଏଠି ପାହାଡ଼ ତଳକୁ ଯିବା ପାଇଁ ବାଟ ଅଛି । ବହୁତ ଯୁବକ, ଯୁବତୀ, ପ୍ରୌଢ଼ ବ୍ୟକ୍ତି ନିଜ ନିଜର ମାନସିକ ପାଇଁ ଏହି ପୁରୁଣାକାଳିଆ ଆମ୍ବଗଛଟାରେ କିଛି ମନୋମୁଗ୍ଧକର ଖେଳନାମାନ ସଜାଇ ଦେଇଥିଲେ । ସମସ୍ତେ ଏହି ଦିଅଁଙ୍କ ପାଖରେ ମୁଣ୍ଡିଆ ମାରି ସାରା ପରିବାରର ମଙ୍ଗଳ ପାଞ୍ଚୁଥିଲେ । '

## 'ଜୋଗଫଲ୍' ଜଳପ୍ରପାତର ଗୋଟିଏ ପାର୍ଶ୍ୱ :

ଗାଡ଼ିକୁ ରଖିଲୁ । ଗାଡ଼ିରୁ ଓହ୍ଲାଇ 'ଜୋଗ' ଜଳପ୍ରପାତର ଗୋଟିଏ ପଟର ଦୃଶ୍ୟ ଉପଭୋଗ କଲୁ । କିଛି ସମୟ ପରେ ବର୍ଷା ଆସିବାର ଆଗୁଆ ସୂଚନା ଦେଲା । ଆମେମାନେ ଛତା ଖୋଲି ନିର୍ମିତ କଂକ୍ରିଟ୍ ପାହାଚରେ ତଳକୁ ତଳକୁ ଓହ୍ଲାଇଲୁ । ଦୂରରୁ ଜଳପ୍ରପାତର ମନୋହର ଦୃଶ୍ୟ ଦେଖିଲୁ । ବହୁତ ଉଚ୍ଚରୁ ଆସୁଥିବା ଜଳର ପ୍ରଖର ସ୍ରୋତର ଗର୍ଜନ ମନକୁ କିଛିଟା ଆନନ୍ଦ ଦେଉଥାଏ । ମଝିରେ ମଝିରେ ଗୋଟିଏ ସ୍ଥାନରେ ଛତା ପରି ଆକୃତିର ସିମେଣ୍ଟ ଛାତ ତଳେ ଆଶ୍ରୟ ନେଇ ଜଳପ୍ରପାତର ଦୃଶ୍ୟକୁ ଉପଭୋଗ କରିବାରେ ଲାଗିଲୁ । ମୋର ସ୍ତ୍ରୀ କିଛିଦୂରରେ ଗୋଟିଏ ଛତା ନେଇ ଠିଆ ହୋଇଥିଲେ । ଶ୍ୱାସ ଥିବାରୁ ତଳକୁ

ଓହ୍ଲାଇବା ଠିକ୍ ହେବ ନାହିଁ ବୋଲି ମନେହେଲା । ନାତୁଣୀ ଦୁଇଜଣ ରେନ୍‌କୋଟ୍ ଲଗାଇ ସପନ ରାଇଜର କୁନି ପରୀଟି ପରାୟ ଦିଶୁଥା'ନ୍ତି । ସେମାନେ ଜଳପ୍ରପାତର ଅତୀବ ମନୋହର ଦୃଶ୍ୟ ଦେଖି ପିଲାମନରେ ଅଶେଷ ଆନନ୍ଦ ପାଉଥା'ନ୍ତି । ବହୁତ ଜନସମାଗମ ହୋଇଥାଏ । ସ୍କୁଲ-କଲେଜ୍‌ର ଛାତ୍ର-ଛାତ୍ରୀ ମଧ୍ୟ ବହୁ ସଂଖ୍ୟାରେ ଆସିଥା'ନ୍ତି । ସମସ୍ତଙ୍କର ମନ ଏବଂ ଆଖି ପ୍ରକୃତିରାଣୀର ଅପୂର୍ବ ଶୋଭା ଦେଖିବାରେ ଉଜ୍ଜ୍ୱଳ ହୋଇଉଠିଥାଏ । ଆନନ୍ଦ ଓ ଆଶଙ୍କା ମଧ୍ୟରେ ଠିଆ ହୋଇ ପ୍ରକୃତିରାଣୀର ମନୋରମ ସୌନ୍ଦର୍ଯ୍ୟର ଅବଗାହନ କରୁଥିବା ବେଳେ ହଠାତ୍ ପ୍ରବଳ ବର୍ଷାର ଆଗମନ ହେଲା । ଛତା ଖୋଲିଲୁ । ତା'ରି ଭିତରେ ଜଳପ୍ରପାତ କାହିଁ ପାହାଡ଼ର ଉଚ୍ଚତମ ଶିଖରରୁ ତଳକୁ ଡେଇଁବାରେ ଅହରହ ଚେଷ୍ଟା କରୁଛି; କିନ୍ତ ତା'ର ଅନ୍ତ ନାହିଁ । ଶେଷ ହେଉନାହିଁ ଜଳର ଧାର । ସେହି ଧାର ତଳେ ପ୍ରଚଣ୍ଡ ବେଗରେ ପଡ଼ି ପୁନଶ୍ଚ ମେଘର କୁହୁଡ଼ି ସୃଷ୍ଟି କରୁଛି । ସେହି କୁହୁଡ଼ି ମଧ୍ୟ କ୍ରମଶଃ ପାହାଡ଼କୁ ଆଚ୍ଛାଦନ କରୁଛି । ଏକାଥରକେ ପାଞ୍ଚୋଟି ଜଳପ୍ରପାତ ପାଖକୁ ପାଖ ଅଛି ।

ମୋ ପାଖରେ ଜଣେ ବୃଦ୍ଧ ବ୍ୟକ୍ତି ତାଙ୍କର ପୁଅ, ବୋହୂ, ଦୁଇଟି ନାତିନାତୁଣୀ ଏବଂ ସ୍ତ୍ରୀଙ୍କ ସହ ସେହି ସିମେଣ୍ଟ ଛତା ତଳେ ଆଶ୍ରୟ ନେଇଥିଲେ ଏହି କର୍ଣ୍ଣାଟକର ବାସିନ୍ଦା । ନାତୁଣୀମାନଙ୍କୁ କଳପ୍ରପାତ ବୁଲାଇବାକୁ ଆଣିଥିଲେ । ତାଙ୍କ ସହିତ ସ୍ୱଳ୍ପ ପରିଚୟ ପରେ ଆମେ ଭୁବନେଶ୍ୱରରୁ ଆସିଛୁ ଶୁଣି ଖୁବ୍ ଖୁସି ହୋଇଗଲେ । ସେ କହିଲେ, "ଏହା ହେଉଛି ଜୋଗଫଲ୍(ଜୋଗ ଜଳପ୍ରପାତ)ର ଗୋଟିଏ ଦିଗରୁ ଦେଖିବା ସ୍ଥାନ । ଏହି ଫଲ୍‌ର ପୂର୍ଣ୍ଣ ଶରୀର ଦେଖିପାରିବେ ସେପ୍‌ଟେମ୍ବର ମାସରେ । ଏବେ ବର୍ଷା ହେବାରୁ ପାଣି ପର୍ବତ-ପାହାଡ଼ରୁ ଜଳପ୍ରପାତ ଦେଇ ଆସୁଛି । ଏହାର କଳେବର ଛୋଟ । ଗର୍ଜନ ମଧ୍ୟ କମ୍; କିନ୍ତୁ ପରେ ପ୍ରାୟ କୋଡ଼ିଏ ଫୁଟ ଚଉଡ଼ାର ବିରାଟ ଦଳପ୍ରପାତ ସୃଷ୍ଟି ହେବ ବିଭିନ୍ନ ସ୍ଥାନରେ ଏହି ପାହାଡ଼ର ବିଭିନ୍ନ ଅଙ୍ଗରେ ।" ବର୍ଷା ଭୀଷଣ ଭାବରେ ବଢ଼ିବାକୁ ଲାଗିଲା । ଆମେମାନେ ଛତା ତଳେ ଥାଇ ମଧ୍ୟ ପ୍ରାୟ ଅଧାଅଧି ଓଦା ହୋଇଗଲୁ । ସେହି ବର୍ଷାରେ ମୋର ଝିଅ କ୍ୱାଇଁ କିଛି ଫଟୋ ଉଠାଇଥିଲେ ।

ପିଲାମାନଙ୍କ ପାଇଁ ବିକା ହେଉଥିବା "ପାଟିରୁ ମାରି ଫୋଟକା କରିବା" (ବବଲ୍ କରିବା) ଦୁଇଟି ଶିଶି କିଣାଗଲା । କିଛି ତଟକା ମସଲା ମୁଢ଼ି (ପାକେଟ୍‌ରେ ଥିବା) କିଣା ହେଲା । ସେତବେଳକୁ ପ୍ରାୟ ସାଢ଼େବାରଟା ବାଜି ସାରିଲାଣି । ଆମେମାନେ ସେହି ବର୍ଷାରେ ଛତାର ଆଶ୍ରୟ ନେଇ ଫେରିଆସିଲୁ ଗାଡ଼ି ପାଖକୁ । ଗାଡ଼ିରେ ଆମେମାନେ ବସିଗଲୁ ।

ଡ୍ରାଇଭର୍ ଆସି କହିଲା– ଏହି ଜଳପ୍ରପାତର ଅନ୍ୟ ଦିଗରୁ ଦେଖିଲେ ଅତୀବ ମନୋମୁଗ୍ଧକର ହେବ, ତେଣୁ ସେହି ସ୍ଥାନକୁ ଯିବା ।

## ଜୋଗଫଲ୍ (ଜଳପ୍ରପାତର) ଅନ୍ୟପାର୍ଶ୍ୱ :

ଏହି ସ୍ଥାନକୁ 'ଜୋଗଫଲ୍' ବୋଲି କୁହାଯାଏ । ଏଠି ସରକାରଙ୍କ ତରଫରୁ ଗୋଟିଏ ଟିକେଟ ବିକ୍ରୟ କେନ୍ଦ୍ର ଅଛି ଏବଂ ସୁରକ୍ଷାକର୍ମୀମାନଙ୍କ ଦ୍ୱାରା ବାଉଁଶ ପକାଇ ଫାଟକ ତିଆରି ହୋଇଛି । ଗାଡ଼ି ପିଛା କୋଡ଼ିଏ ଟଙ୍କା ଦେଇ ଭିତରକୁ ଗାଡ଼ି ସହ ଗଲୁ । ସେତେବେଳକୁ ଗୋଟାଏ ବାଜିଗଲାଣି । ଗାଡ଼ି ରହିଗଲା ପରେ ଡ୍ରାଇଭର ଛତା ଧରି ଖାଇବାକୁ ଚାଲିଗଲା । ଆମମାନଙ୍କୁ ମଧ୍ୟ ଭୋକ ହେଉଥିଲା । ମାମା (ସ୍ମିତା) ଘରୁ ରାତିରୁ ଉଠି ପୁରି ଏବଂ ବୁଟଡାଲିରେ ଆଳୁ ପକାଇ ତରକାରୀ କରି ଆଣିଥିଲା । ସଙ୍ଗରେ କିଛି ଆଚାର ମଧ୍ୟ । କାଗଜ ପ୍ଲେଟ୍‌ରେ ସମସ୍ତଙ୍କୁ ସେଇ କାର୍ ଭିତରେ ବାଢ଼ିଦେଲା । ଆନନ୍ଦରେ ଖାଇଦେଲୁ । ଭୋକ ଏଥର ନିର୍ବାଣ ହୋଇଗଲା । ଘରୁ ନେଇଥିବା ପାଣି ମନ ଭରି ପିଇଲୁ । ଅଧଘଣ୍ଟାଏ ବିତିଗଲା । ବର୍ଷା ସାମାନ୍ୟ କମିବାରେ ଲାଗିଲା । ରାଜେନ୍ଦ୍ର (ଡ୍ରାଇଭର୍) ମଧ୍ୟ ଆସି ପହଞ୍ଚିଗଲା । ସେ ଗୋଟିଏ ନୂଆ ଛତା କିଣି ଆଣିଥାଏ । ସେହି ଛତାଟିକୁ ମଧ୍ୟ ଆମକୁ ଦେଲା । ଆମେମାନେ ସମସ୍ତେ ଗୋଟିଏ ଗୋଟିଏ ଛତା ନେଇ ଆଗକୁ ଆଗକୁ ପାହୁଣ୍ଡ ବଢ଼େଇଲୁ । ଫଟୋ ଉଠାଳିମାନେ ଆସି ବାଟ ଓଗାଳି ଫଟୋ ଉଠାଇବା ପାଇଁ କହୁଥିଲେ । ମୁଁ କହିଲି, "ପ୍ରଥମେ 'ଜୋଗଫଲ୍' (ଜଳପ୍ରପାତ) ଦେଖିଲା ପରେ ଯାଇ ଫଟୋ ଉଠାହେବ ।"

ବୁଟୁ (କ୍ୱାଇଁ) ସେହିକଥା କହିଲେ । ଫଟୋ ଉଠାଳିଟି ଆଗ୍ରହୀ ହୋଇ

ଆମକୁ ଗୋଟିଏ ଉଚ୍ଚ ସୁରକ୍ଷିତ ଯାଗାକୁ ଯିବାକୁ ବାଟ କଢ଼େଇନେଲା । ଆମେମାନେ ଯାଇ ସେହି ବାଡ଼ ଘେରା ସ୍ଥାନରେ ଠିଆ ହୋଇ ଜଳପ୍ରପାତର ମନୋହର ଦୃଶ୍ୟ ଦେଖିବାକୁ ଲାଗିଲୁ । ଏକାଥରକେ ପାଞ୍ଚଗୋଟି ଦୀର୍ଘକାୟ ଜଳପ୍ରପାତ (ଦଶଫୁଟ ମୋଟର) ୨୦୦୦ ଫୁଟ ଉଚ୍ଚପର୍ବତରୁ ତଳକୁ ଡେଇଁ ଚାଲିଛନ୍ତି ଅବିରାମ ଗତିରେ ଉଚ୍ଚନାଦ କରି । ଏକାଥରକେ ଏହି ପାଞ୍ଚଗୋଟି ଜଳପ୍ରପାତକୁ ଚାହିଁଲେ ମନରେ ଅପୂର୍ବ ଆନନ୍ଦ ଜାଗ୍ରତ ହୋଇଉଠେ । ଆମର ଅବସ୍ଥା ମଧ୍ୟ ସେଇଆ ହେଲା । ଆମେମାନେ ଭାବବିହ୍ୱଳ ହୋଇ ଦେଖିବାରେ ମଜ୍ଜିଗଲୁ । ହଠାତ୍ ଫଟୋଉଠାଳିର ଚିତ୍କାରରେ ଆମେ ଶଙ୍କା ପାଇଲୁ । ସେ ତରତର ହେଉଛି କାଳେ ଭୀଷଣ ବର୍ଷା ଆସିଗଲେ ସେ ଫଟୋ ଉଠାଇ ପାରିବନି ଆମମାନଙ୍କର ଜଳପ୍ରପାତ ସହ । ତା' ଆଡ଼କୁ ମୁହଁ କରି ଠିଆ ହେଲୁ ଲୁହାବାଡ଼କୁ ଧରି । ଫଟୋ ଉଠାଇଲା ଦୁଇଥର ମୋର ଇଚ୍ଛାରେ । କହିଲା, "ଆଜ୍ଞା ସଙ୍ଗେ ସଙ୍ଗେ ପନ୍ଦର ମିନିଟ୍ ଭିତରେ ଆପଣଙ୍କୁ ଫଟୋ ଦେଇ ଟଙ୍କା ନେବି ।" ସେ ଫଟୋ ଉଠାଇଲା ବେଳକୁ ପାଞ୍ଚଟି ଜଳପ୍ରପାତରୁ ତିନିଟି ମେଘ-କୁହୁଡ଼ିରେ ଅଦୃଶ୍ୟ ହୋଇ ଯାଇଛନ୍ତି । ଟକିଏ ଆଗରୁ ଫଟୋ ଉଠାଇଥିଲେ ଆମର ପଛ ପଟେ ପାଞ୍ଚଟି ଜଳପ୍ରପାତରେ ଚିତ୍ର ଉଠିଥା'ନ୍ତା ।

ଏହାପରେ ବର୍ଷା ବଢ଼ିବାକୁ ଲାଗିଲା । କମିବାର କୌଣସି ଲକ୍ଷଣ ଦିଶିଲା ନାହିଁ । ଦେଖୁ ଦେଖୁ ମାତ୍ର ପାଞ୍ଚ-ଦଶମିନିଟ୍ ଭିତରେ ମେଘର କୁହୁଡ଼ି ସମସ୍ତ ଜଳପ୍ରପାତ ସହ ସମୁଦାୟ ଉଚ୍ଚପର୍ବତ ଏବଂ ସେହି ଗଭୀର ଖାଲୁଆ ଅଂଶକୁ ଆବଦ୍ଧ କରିନେଲା । କେବଳ ଧବଳ ବର୍ଣ୍ଣର କୁହୁଡ଼ି ଛଡ଼ା ଆଉ କିଛି ଦୃଶ୍ୟ ହେଲା ନାହିଁ । ସିନେମା ଶେଷ ହେଲା ପରେ ଧଳା ପରଦା ଦିଶିଲା ପରି ପ୍ରକୃତିର କିଛି ଅଂଶ କୁହୁଡ଼ି ପରଦାରେ ଅଦୃଶ୍ୟ ହୋଇଗଲା । ପ୍ରକୃତିର ଏହି ବିଚିତ୍ର ଖେଳକୁ ଆମେମାନେ ପିଲାଙ୍କ ପରି ଦେଖୁଥିଲୁ ସିନା ଆଉ ବଦଳାଇବାର ଶକ୍ତି ଆମ ପାଖରେ ନ ଥିଲା ।

ବର୍ଷା ଅବିରାମ ଗତିରେ ବଢ଼ିଚାଲିଥିଲା । ଆମେମାନେ ସେହି ସ୍ଥାନରେ ହିଁ ଅପେକ୍ଷା କଲୁ ଫଟୋଗ୍ରାଫରକୁ ଫଟୋ ଆଣିବା ପାଇଁ । ଏହି ଗୋଟିଏ ସ୍ଥାନରେ ଦେଖଣାହରୀଙ୍କ ଦେଖିବା ପାଇଁ କିଛିଟା ବନ୍ଦୋବସ୍ତ କରାଯାଇଛି । ଉପରେ ଛାତ ।

ତଳେ ଠିଆ ହୋଇ ସବୁଦିଗ ଦେଖିପାରିବେ। ଏହି ସ୍ଥାନଟି ଉଚ୍ଚରେ। ଏହାଠାରୁ ଜଳପ୍ରପାତର ଦୂର ପ୍ରାୟ ଏକ କି.ମି. ହେବ; କିନ୍ତୁ ଦୃଶ୍ୟମାନ ଅତି ସୁନ୍ଦର। ଏହି ଜଳପ୍ରପାତର ତଳଦେଶକୁ ଯାଇ ପାଣିକୁ ଛୁଇଁବା ପାଇଁ ପ୍ରାୟ ଏକ ହଜାରର ପାହାଚ ତଳକୁ ଯାଇଛି। ଅଂସଖ୍ୟ ଦର୍ଶକ, ଯୁବକ-ଯୁବତୀ ତଳକୁ ଓହ୍ଲାଇ ଯିବାରେ ଅପୂରଣୀୟ ଆନନ୍ଦ ପାଆନ୍ତି, ଯେତେବେଳେ ଜଳପ୍ରପାତର ପାଣିକୁ ହାତରେ ଧରନ୍ତି। ତିନିପାଖ ପ୍ରାୟ ଲୋକରେ ଭର୍ତ୍ତି। ଦର୍ଶକମାନେ ଆସୁଥା'ନ୍ତି ଏବଂ ଯାଉଥା'ନ୍ତି। ଅତି ମନୋହର ପରିବେଶ ମଧ୍ୟ କରାଯାଇଛି। ମୋର ମନେହେଲା– ପୂର୍ବତରୀ ମେଘାଳୟ ରାଜ୍ୟର ସିଲଂରୁ ଚେରାପୁଞ୍ଜିର ବାଟ ମେଘ-କୁହୁଡ଼ିରେ ଭର୍ତ୍ତି। ଚେରାପୁଞ୍ଜିରେ ସାରା ପୃଥିବୀର ମେଘ ଅଧିକା ଥିବାରୁ ପ୍ରସିଦ୍ଧ। ଏଠାରେ ବିରାଟ ବିରାଟ ପର୍ବତମାଳା ପ୍ରାୟ ୫୦୦୦ ଫୁଟ ଉଚ୍ଚର। ଏହା ଦେହରୁ ପ୍ରାୟ ସାତଟି ଦୀର୍ଘକାୟ ଜଳପ୍ରପାତ ବର୍ଷ ସାରା ପଡୁଥାଏ। ଅତି ମନୋହର ପ୍ରକୃତିର ଦୃଶ୍ୟକୁ ଜଳପ୍ରପାତର ଦୃଶ୍ୟ ; କିନ୍ତୁ ବହୁ ସମୟ ମେଘ-କୁହୁଡ଼ିରେ ଘୋଡ଼ାଇ ହୋଇ ରହିଥିବାରୁ ଅଧିକାଂଶ ଦର୍ଶକ ଏହି ବିରଳ ଦୃଶ୍ୟ ଦେଖିବାରୁ ବଞ୍ଚିତ ହୋଇଥା'ନ୍ତି। ଚେରାପୁଞ୍ଜିର ବର୍ଷା ପାଣି ଆମମାନଙ୍କର ଦେହରେ ବାଜିଛି ମନୋମୁଗ୍ଧକର ଚେତନା ଦେଇ। ବର୍ଣ୍ଣନା ଅସମ୍ଭବ। ସେହି ସ୍ଥାନର ମାଧୁର୍ଯ୍ୟ ଭାଷାରେ ଲେଖିବା ଧୃଷ୍ଟତା ମାତ୍ର। ଆଜି ସେହିପରି ଲାଗିଲା। କୋଗ ଫଲ୍ ସେହିପରି ପ୍ରତୀୟମାନ ହେଲା। ଚେରାପୁଞ୍ଜି ପରି ମେଘମାଳାର କୁହୁଡ଼ିରେ ସମଗ୍ର ଅଂଶ ଧବଳମୟ ହୋଇଗଲା, ମାତ୍ର କ୍ଷଣିକ ଭିତରେ ସବୁ (ପାଞ୍ଚଟି) ଜଳପ୍ରପାତ ଅଦୃଶ୍ୟ ହୋଇଗଲେ ସମସ୍ତ ପାହାଡ଼-ପର୍ବତଙ୍କ ସହିତ ତଳିଆ ଅଞ୍ଚଳ ସହ। ପ୍ରକୃତିର ଏହି ରୋମାଞ୍ଚକର ଦୃଶ୍ୟ ଏବଂ ଖେଳ ବଡ଼ ବିଚିତ୍ର ମନେହେଲା।

ବହୁତ ଦର୍ଶକ ନିରାଶ ହୋଇ ଫେରିଗଲେ ଜଳପ୍ରପାତ ନ ଦେଖି। କିଛି ଲୋକ ଅପେକ୍ଷା କରିରହିଲେ। କୁହୁଡ଼ି ଅପହରଣ ହେଲେ ଜଳପ୍ରପାତକୁ ଦେଖିବେ ବୋଲି। ଏହା ଭିତରେ ସ୍ମିତା ଗୁଡ଼ିଏ ଫଟୋ ତାଙ୍କର କ୍ୟାମେରାରୁ ଉଠାଇ ନେଇଥିଲା ଏବଂ ଭିଡିଓ ରେକଡ଼ିଂ ମଧ୍ୟ କରାଇନେଲା। ବୁଟୁ ମଧ୍ୟ ବିଭିନ୍ନ ଫଟୋ ଉଠାଇଲେ। ବର୍ଷା ଲାଗି ରହିଥିଲା। ଛତା ତଳେ ଫଟୋଉଠାଳିର ଆସିବା ଡେରି

ଦେଖି ବୁଟୁ ତାକୁ ଖୋଜି ବାହାର କଲେ। ସେ ଫଟୋ ଦୁଇଟି ଧରି ଆସିଲେ। ଫଟୋ ଭଲ ଉଠିଥିଲା ଏପରି ବର୍ଷା ସମୟରେ । ଫଟୋଉଠାଳିକୁ ୬୦ ଟଙ୍କା ଦିଆଗଲା। ଧନ୍ୟବାଦ ଜଣାଇ ଫେରିବାକୁ ବାଧ୍ୟ ହେଲୁ। ଆଉ ଆମର ଚେଷ୍ଟା କରିବାର କିଛି ନ ଥିଲା। ପ୍ରକୃତିର ଖେଳ ଆଗରେ ମନୁଷ୍ୟର ଭାବନା-ଇଚ୍ଛା ବହୁତ ସୀମିତ। ଫଟୋଉଠାଳିଟି କହିଲା, "ଏହି ବର୍ଷାଦିନରେ ଜଳପ୍ରପାତ ଦେଖିବାକୁ ଆସୁଥିବା ବାହାର ଦେଶର ଲୋକଙ୍କୁ ଘଣ୍ଟା ଘଣ୍ଟା ଧରି ଏପରିକି ଦିନେ ଦୁଇଦିନ ଅପେକ୍ଷା କରିବାକୁ ପଡ଼ିଥାଏ।

ଆମେ ନିଜକୁ ଧନ୍ୟ ମନେ କରୁଥିଲୁ। ଅଳ୍ପ ସମୟ ପାଇଁ ହେଉ ପଛେ ପାଞ୍ଚଟି ଜଳପ୍ରପାତ (ଜୋଗଫଲ୍) ଦେଖିପାରିଲୁ। ମନେ ମନେ ଖୁସି ହୋଇ ଫେରିବାକୁ ଲାଗିଲୁ। ଏବେ ମନ ଭିତରେ ଜୋଗଫଲ୍‌ର ସୌନ୍ଦର୍ଯ୍ୟ ସବୁଦିନ ପାଇଁ ଆଛନ୍ନ କରି ରଖିବ।

## ଶ୍ରୀ ମୁଦ୍ରେଶ୍ୱର (ମୂଢ଼େଶ୍ୱର) ମହାଦେବଙ୍କୁ ଦର୍ଶନ :

ଜୋଗଫଲ୍ (ଜୋଗ ଜଳପ୍ରପାତ) ଦେଖିଲୁ ଏବଂ ବିଭିନ୍ନ ଫଟୋ ଉଠାଇଲୁ। ବର୍ଷା ଅବିରାମ ଗତିରେ ଚାଲିଥିଲା। ଆଉ ଦେଖିବାକୁ ଇଚ୍ଛା ଥିଲେ ମଧ୍ୟ ଘନ ବର୍ଷାର କୁହୁଡ଼ି ଜୋଗଫଲ୍‌ର ପାଞ୍ଚଟି ଜଳପ୍ରପାତକୁ ସମ୍ପୂର୍ଣ୍ଣ ଭାବରେ ଘୋଡ଼ାଇ ରଖିଥିଲା। ଧବଳ ଚାଦରରେ ପ୍ରକୃତିରାଣୀ ତା'ର ବିଭବକୁ ଲୁଚାଇଦେଲା। ଆମେମାନେ ଈଶ୍ୱରଙ୍କର ଏହି ମହନୀୟ ଲୀଳାରେ ଅଭିଭୂତ ହୋଇଗଲୁ। ଭଗବାନଙ୍କୁ ଧନ୍ୟବାଦ ଦେଲୁ ଯେ ଏପରି ଭୀଷଣ ବର୍ଷାରେ ଆମେମାନେ ଜୋଗଫଲ୍‌ର ପାଞ୍ଚଟି ଜଳପ୍ରପାତକୁ କିଛିକ୍ଷଣ ପାଇଁ ଅନୁଧ୍ୟାନ କରି ଉପଭୋଗ କଲୁ।

ସମୟ ସାଢ଼େ ତନିଟା ହୋଇଥିଲା। ବର୍ଷା ବି ଚାଲିଥିଲା। ଗାଡ଼ି ସେହି ସ୍ଥାନକୁ ଛାଡ଼ି ଆଗକୁ ଗଲା। ଶେଷଥର ପାଇଁ ଗାଡ଼ି ଭିତରେ ଥାଇ ଜୋଗଫଲ୍‌ର ଜଳପ୍ରପାତକୁ ଦେଖିବାକୁ ପ୍ରୟାସ କରିଥିଲୁ। ବୃଥା ହେଲା। ଘନକୁହୁଡ଼ିର ଆବରଣ ତଳେ ଲୁଚିରହିଥିଲା ଜଳପ୍ରପାତଗୁଡ଼ିକ।

ଏହା ପରେ ଆମେ ମୁଦ୍ରେଶ୍ୱର ଅଭିମୁଖେ ଯାତ୍ରା କଲୁ । ସେଠାରେ ପ୍ରତ୍ୟକ୍ଷ ମହାଦେବ ଶ୍ରୀ ମୂଦ୍ରେଶ୍ୱରଙ୍କୁ ଦର୍ଶନ କରିବା ପାଇଁ ଏହି କୋଗଫଲରୁ ପ୍ରାୟ ୬୦ କି.ମି. ଦୂର ଯିବାକୁ ହେବ । ମନ ଭିତରର ଉତ୍କଣ୍ଠା ଆମକୁ ଆଗକୁ ଟାଣିନେଲା । ରାଜେନ୍ଦ୍ର (ଡ୍ରାଇଭର୍) ଖୁସି ହୋଇ ଗାଡ଼ିକୁ ପଛୁଆ ଦିଗରେ (ଆମେ ଆସିଥିବା ବାଟରେ) ନେଲା । ଜାତୀୟ ରାଜପଥ (ନମ୍ବର ୧୩) ଦେଇ ଆମେ ଫେରିଲୁ ପ୍ରାୟ ୩୦ କି.ମି. ବାଟ । ସରାବଦ୍ଧି ବ୍ରିଜ୍ ଉପରେ ଗାଡ଼ି ଚାଲିଲା । ନଦୀର ଦୁଇପଟେ ଭୀଷଣ ବର୍ଷାର ଜଳ ଦେଖିବାକୁ ମିଳିଲା । ନଦୀର ଜଳ ପଙ୍କୁଆ ହୋଇ ଉଛରେ ତରଙ୍ଗାୟିତ ହେଉଥିଲା । ପାଣିର କୁଳୁ କୁଳୁ ସ୍ୱର ପରିବର୍ତ୍ତେ ଗର୍ଜନର ସ୍ୱର ଶୁଣାଯାଉଥିଲା । ସମୁଦ୍ର ସଙ୍ଗେ ମିଶିଯାଇଛି ଆଗରେ ପ୍ରାୟ ପନ୍ଦର କି.ମି. ଦୂରରେ । ସମୁଦ୍ରର ଜୁଆର ପାଣି ମାଡ଼ିଆସେ ଏହି ବ୍ରିଜ୍ ପର୍ଯ୍ୟନ୍ତ । ବୁଟୁ ଏହି ନଦୀର ଜଳପ୍ରବାହର ଫଟୋ ଉଠାଇଲେ । ମାରୁତିକାର୍ ବ୍ରିଜ୍ ଉପର ଦେଇ ଅପର ପାର୍ଶ୍ୱକୁ ଗଲା । ଏହା ପରେ ଗୋଟିଏ ଛକ ନିକଟରେ ଡାହାଣ ପଟକୁ ଦେଇ ପୂର୍ବାଭିମୁଖରେ ଚାଲିବାକୁ ଲାଗିଲା । ରାସ୍ତାର ଅବସ୍ଥା ବହୁତ ଖରାପ । ଖାଲ-ଡିପରେ ଭର୍ତ୍ତି । ତଥାପି ରାଜେନ୍ଦ୍ର ଗାଡ଼ିକୁ ସାବଧାନରେ ଚଳାଉଥାଏ । ବର୍ଷା କମି ଯାଇଥିଲା । ପୁନଶ୍ଚ ରାସ୍ତାର ଅବସ୍ଥା ଦେଖି ଏବଂ ଦୂରତ୍ୱକୁ ହିସାବକୁ ନେଇ ଠିକ୍ କଲୁ ଯେତେ ଯାହା ହେଉ ପଛକେ ମହାଦେବଙ୍କୁ ଦର୍ଶନ କରି ଫେରିବା । ରାଜେନ୍ଦ୍ର କହିଲା, "ଆମେମାନେ 'କାରବାର ନୌସେନା' ବେଶ୍‌ରେ ରାତି ସାଢ଼େ ନଅଟା ସୁଦ୍ଧା ପହଞ୍ଚିଯିବା ।" ପ୍ରସ୍ତାବରେ ଅରାଜି ହେବାର କିଛି ନ ଥିଲା ।

ସନ୍ଧ୍ୟା କ୍ରମଶଃ ପୃଥିବୀପୃଷ୍ଠକୁ ତା'ର କଳା ଓଢ଼ଣୀଟି ଧରି ଓହ୍ଲାଇ ଆସିବାକୁ ପ୍ରସ୍ତୁତ ହେଉଥିଲା । ସୂର୍ଯ୍ୟଦେବଙ୍କୁ ଆମେ ଦେଖିପାରିଲୁନି । ସେହି ଖାଲଡିପ ଜାତୀୟ ରାଜପଥଟି ମାଙ୍ଗାଲୋର ଯାଉଥିଲା । ଆମେମାନେ ମୁଦ୍ରେଶ୍ୱରଠାରେ ଛକରେ ମନ୍ଦିର ଅଭିମୁଖରେ ଚାଲିଲୁ । ବର୍ଷା ମଧ୍ୟ ଆରମ୍ଭ ହୋଇଯାଇଥିଲା ଏହି ସ୍ଥାନରେ । ଗାଡ଼ି ଯାଇ ଶ୍ରୀ ମୁଦ୍ରେଶ୍ୱର ମହାଦେବଙ୍କର ମନ୍ଦିର ସମ୍ମୁଖରେ ଅଟକିଲା । ଡ୍ରାଇଭର୍ ଆମକୁ ଓହ୍ଲାଇଦେଇ ଗାଡ଼ିର ବ୍ୟାଟେରୀ ଚାର୍ଜ୍ କରିବାକୁ ଚାଲିଗଲା । ପ୍ରାୟ ପଇଁଚାଳିଶ ମିନିଟ୍ ପରେ ପହଞ୍ଚିବ ବୋଲି କହିଲା । ତା'ର ଲେଖାଯୋଖାରେ

ଭାଇର ଘର ଏହି ମୁଡ୍ରେଶ୍ୱରରେ । ତା'ର ଭାଇଟି ଆଉ ମାରୁତି ଭ୍ୟାନ୍‌ଟି ଚଲାଉଛି । ତା'ର ଘରେ ବୋଧହୁଏ କିଛି ଟଙ୍କା ଦେଇ ଆସିପାରେ ବୋଲି ଅନୁମାନ କଲୁ ।

ମୁଡ୍ରେଶ୍ୱର ଗୋଟିଏ ଛୋଟ ସହର ଏହି ଆରବ ସମୁଦ୍ର କୂଳରେ । ସହରଟି ପରିଷ୍କାର-ପରିଛନ୍ନ ଥିଲା ପରି ଜଣାପଡୁଥିଲା । ଘରଗୁଡ଼ିକ ସିମେଣ୍ଟ୍ ଛାତ ହେଲେ ମଧ୍ୟ ଗଡ଼ାଣିଆ ଥିଲା ଏବଂ ତା'ରି ଉପରେ ଟାଇଲ୍ ଛପର । କର୍ଣ୍ଣାଟକର ଏହି ପଶ୍ଚିମ ଉପକୂଳ ଅଞ୍ଚଳରେ ବର୍ଷାର ଭୟାବହତା ଯୋଗୁ ଗଡ଼ାଣିଆ ଘର ତିଆରି ହେଉଛି । ବର୍ଷାର ଗତି କମେ ନାହିଁ ଏଠାରେ । ରାସ୍ତା-ଘାଟ ଅଳ୍ପ ବର୍ଷାରେ ପାଣିରେ ଭର୍ତ୍ତି ହୋଇଯାଏ । ଏହି ଛୋଟ ସହରଟି ବ୍ୟବସାୟିକ କେନ୍ଦ୍ରରେ ପରିଣତ ହୋଇ ଯାଇଛି ମୁଡ୍ରେଶ୍ୱର ମହାଦେବଙ୍କ ପାଇଁ । ଏଠାରେ ସ୍କୁଲକଲେଜ୍ ଅଛି । ସରକାରୀ ଅଫିସ୍ ଅଛି । ହୋଟେଲ୍, ଲଜିଙ୍ଗ୍ ମଧ୍ୟ ଅଛି । ତେଣୁ କେହି ବାହାରର ଅତଥି ଏଠାରେ ରାତି ବିତାଇ ପାରିବ ।

ମନ୍ଦିରର ସମ୍ମୁଖ ଭାଗ ପ୍ରବେଶ ଦ୍ୱାର ଦାକ୍ଷିଣାତ୍ୟ ଡିଜାଇନ୍‌ର ତେର ମହଲା ଉଚ୍ଚ । ଗୋଟିଏ ମହଲା ଦଶଫୁଟ ହେଲେ ମନ୍ଦିରର ତୋରଣ ଦ୍ୱାର ପ୍ରାୟ ୧୩୦ ଫୁଟ ଉଚ୍ଚ ହେବ । ଓସାରରେ ପ୍ରାୟ ଚାଳିଶ ଫୁଟ ହେବ । ମନୋମୁଗ୍ଧକର କାରୁକାର୍ଯ୍ୟପୂର୍ଣ୍ଣ ଏହି ତୋରଣଟିର (ପ୍ରବେଶ ଦ୍ୱାର) କୋତାଷ୍ଟାଣ୍ଡ୍‌ରେ ସମସ୍ତେ କୋତା ରଖିଥିଲୁ । ସେହି ପାଖରେ ସମୁଦ୍ରର ଲହଡ଼ିମାଳା ଆମକୁ ଆକୃଷ୍ଟ କରୁଥିଲା । ଏହି ମନ୍ଦିରର ତିନିପଟ ଭାଗ ଏହି ଆରବସାଗରର ବେଷ୍ଟନୀରେ ଆବଦ୍ଧ । ସୁନ୍ଦର-ପରିଷ୍କାର-ପରିଛନ୍ନ ପରିବେଶ ଗଠନ କରାଯାଇଛି । ସମ୍ମୁଖରୁ ମନ୍ଦିରକୁ ଚାହିଁବା ମାତ୍ରେ ସମୁଦ୍ରର ଅପୂର୍ବ ମନମତାଣିଆ ଦୃଶ୍ୟ ଉପଲବ୍‌ଧ ହୁଏ । ବର୍ଷା ଅନବରତ ଚାଲିଥାଏ । ମେଘମାନେ ଆକାଶରୁ ସିଧା ପାଣି ହୋଇ ତଳକୁ ଖସି ପଡୁଥା'ନ୍ତି । ପଶ୍ଚିମପଟରୁ ସମୁଦ୍ରରୁ ଆସୁଥିବା ପବନ ଆମର ମନକୁ ଦୋହଲାଇ ଦେଉଥାଏ ।

ଆମେ ଏଥର ମନ୍ଦିର ଭିତରେ ପ୍ରବେଶ କଲୁ । ନାଲି ଏବଂ ହଳଦିଆ ଗାଲିଚା ପ୍ରବେଶଦ୍ୱାର ମୁହଁରୁ ଭିତର ପଟ ପାହାଚ ପର୍ଯ୍ୟନ୍ତ ପଡ଼ିଛି । ଅନୁମାନ କଲି ବର୍ଷା ଯୋଗୁ ଯାତ୍ରୀଙ୍କର ଗୋଡ଼ ଗ୍ରେନାଇଟ୍ ପଥରରେ ହୋଇଥିବା ଚଟାଣରେ ଖସିଯିବାର

ସମ୍ଭାବନା ଅଧିକ । ମନ୍ଦିର ପ୍ରବେଶ ପଥର ବାମପଟେ ଗୋଟିଏ ସ୍ତ୍ରୀ ଲୋକ ଭୋଗ ପୂଜାସାମଗ୍ରୀ ଧରି ବସିଥିଲା । ନଡ଼ିଆ ସହିତ ଭୋଗ ଚାଳିଶ ଟଙ୍କା କହିଲା; କିନ୍ତୁ ସାଧାରଣ ଆଳତି ପାଇଁ କୋଡ଼ିଏ ଟଙ୍କା ପଡ଼ିବ କହିଲା । ତାକୁ କୋଡ଼ିଏ ଟଙ୍କା ଦେଇ ରସିଦ୍ ସହିତ ଆଳତି ଏବଂ ଗୋଟିଏ ଲଡୁ ଭୋଗ ବାବା ମୃଢ଼େଶ୍ୱରଙ୍କ ପାଇଁ ନେଲୁ । ବର୍ଷା ସେପରି ହେଉଥାଏ । ଆମେମାନେ ମୁଖ୍ୟ ଦେଉଳରେ ପ୍ରବେଶ କଲୁ । ଗୋଟିଏ ସିକ୍ୟୁରିଟି ପୋଲିସ୍ ଆମକୁ ଡାହାଣ ପଟ କଡ଼କୁ ଯିବାକୁ କହିଲା । ବ୍ରାହ୍ମଣ (ପୂଜାରୀ) ଆସି ଆମ ହାତରୁ ରସିଦ୍ ଏବଂ ଆଳତି ସାମଗ୍ରୀ ନେଇ ମନ୍ଦିର ଭିତରେ ବାବା ମୃଢ଼େଶ୍ୱରଙ୍କ ପାଖରେ ଆଳତି କଲା । ଆମେ ଦିଅଁଙ୍କଠାରୁ ପ୍ରାୟ କୋଡ଼ିଏ ଫୁଟ ଦୂରରେ ଥାଇ ଆଳତି ଦର୍ଶନ କଲୁ । ପୂଜାରୀଟି ଆଣି ଆମକୁ ଭୋଗ (ମିଠେଇ) ଦେଲା । ଗୋତ୍ର-ନାମ ଇତ୍ୟାଦି ପଚାରି ଠାକୁରଙ୍କ ପାଖରେ ସଂସ୍କୃତରେ ପ୍ରାର୍ଥନା କରିଥିଲା । ଏଠି ପୂଜାରୀମାନେ ଜବରଦସ୍ତ ପଇସା ଆଦାୟ କରନ୍ତି ନାହିଁ । ଲେଖା ହୋଇଛି 'ଦାନଦ୍ରବ୍ୟ ହୁଣ୍ଡିରେ ଦିଅ' । ମୁଁ ହୁଣ୍ଡିରେ କିଛି ଟଙ୍କା ଏବଂ ବ୍ରାହ୍ମଣ(ପୂଜାରୀ)କୁ କିଛି ଟଙ୍କା ଦେଲି । ଆଗ୍ରହରେ ନେଇଗଲା । ତାକୁ ପଚାରିବାରେ ମୃଢ଼େଶ୍ୱର ମହାଦେବଙ୍କ ବିଷୟରେ ସଂକ୍ଷେପରେ କହିଥିଲା ।

ପ୍ରଭୁ ଶ୍ରୀ ମୃଢ଼େଶ୍ୱର ହେଉଛନ୍ତି ପାତାଳଫୁଟି ମହାଦେବଙ୍କର ମୁଗୁନି ପଥର ଲିଙ୍ଗ । ଏହି ସୁନ୍ଦର ମୂର୍ତ୍ତି ଦେଖିବାକୁ ବିଶାଳ-ମହନୀୟ । କଥିତ ଅଛି, ରାବଣାସୁର ମହାଦେବଙ୍କୁ ହିମାଳୟରେ ତପସ୍ୟା କରି ସନ୍ତୁଷ୍ଟ କରାଇଦେଲା । ମହାଦେବ ପ୍ରସନ୍ନ ହୋଇ ତାକୁ ଭିକ୍ଷା ମାଗିବାକୁ କହିଲେ । ମହାପ୍ରତାପୀ ରାବଣ ଯୋଡ଼ହସ୍ତରେ କହିଲା, "ଆପଣଙ୍କୁ ଲିଙ୍ଗ ରୂପରେ ମୋ ସହିତ ଲଙ୍କାକୁ ଯିବାକୁ ହେବ ।" 'ତଥାସ୍ତୁ' କହି ମହାଦେବ ଶିବ ଲିଙ୍ଗ ଜ୍ୟୋତିରେ ପରିଣତ ହେଲେ । ରାବଣ ତାଙ୍କୁ ହସ୍ତରେ ଧରି ଲଙ୍କା ଅଭିମୁଖେ ବାହାରିଲା । ଦେବତାମାନଙ୍କର ଅନୁରୋଧ ତଥା ପରାମର୍ଶରେ ଭଗବାନ ଗଣେଶ ରାବଣର ପଥ ଓଗାଳିଲେ । ରାବଣ ଭୟଭୀତ ହୋଇ ଯୁଦ୍ଧ କରିବାକୁ ବାହାରି ପଡ଼ିଲା । ଗଣେଶଙ୍କ ହସ୍ତରେ ପରାଜିତ ହୋଇ ଲଙ୍କପତି ରାବଣ ପ୍ରଥମେ ଭୋଗ ମଣ୍ଡପ ଆଡ଼େ ମନ ପୂରାଇଲା । କିଛି ଉପାୟ ନ ପାଇ ଭୋଗ ମଣ୍ଡପ ଛାଡ଼ି ପାତାଳପୁରୀ(ଗୋକର୍ଣ୍ଣ)ରେ ଲୁଚିଗଲା । ସେଠାରେ ପ୍ରଭୁ ମହାଦେବ

ସେହି ସ୍ଥାନରେ ପାତାଳକୁ ଚାଲିଗଲେ । ପରେ ପାତାଳ ଫୁଟାଇ ନିଜ ଲିଙ୍ଗ ରୂପରେ ବାହାରିଲେ ପଦାକୁ । ଗଣେଶ ନିଜ ସ୍ଥାନକୁ ଗଲେ । ଏହି ସ୍ଥାନ ହେଉଛି ଗୋକର୍ଣ୍ଣ । ଏହାର ଅଧିଷ୍ଠାତା ଦେବ ହେଉଛନ୍ତି ଶ୍ରୀ ଗୋକର୍ଣ୍ଣ ମହାଦେବ । ରାବଣ ପୁନଷ୍ଟ ଚେଷ୍ଟା କଲା ଲିଙ୍ଗକୁ ଉପୁଡ଼ାଇବାକୁ, ପାରିଲାନି । ତା'ର ହସ୍ତରେ ସେହି ଶିବଲିଙ୍ଗରେ କିଛି ପୋଡ଼ା ଅଂଶ (ବାହାରି ପଡ଼ିଥିବା ମୁଗୁନିପଥରର ଲିଙ୍ଗର କିଛି ଅଂଶ) ଛିଟିକି ଯାଇ ଶହେ କୋଶ ଦୂରରେ ପଡ଼ିଲା । ଯେଉଁ ଯାଗାରେ ଏହି ଛିନ୍ନଖଣ୍ଡମାନ ପଡ଼ିଲା, ତା'ର ନାମ 'ମୁଡ୍ରେଶ୍ୱର' ବୋଲି କୁହାଗଲା । ଏହି ଅଂଶର ଛିଟିକା ପଥର ପାତାଳକୁ ଯାଇ ପୁନଷ୍ଟ ଧରଣୀ ଉପ୍ପରକୁ ଆସିଲା । ଏଣୁ ଏହି ଶିବଙ୍କର ପାତାଳଫୁଟି ଲିଙ୍ଗ 'ମୂଡ଼େଶ୍ୱର ମହାଦେବ' ନାମରେ ବିଖ୍ୟାତ ହେଲେ । ଏହି ସମୁଦ୍ର କୂଳରେ ତାଙ୍କର ନିବାସ ହେଲା କେଉଁ ଅନନ୍ତଯୁଗ କାଳରୁ ।

ଏଠି ତିଆରି ହୋଇଥିଲା ଛୋଟ ମନ୍ଦିରଟିଏ । ତା'ର ଦୁଇପଟ ଭାଗରେ ମା' ପାର୍ବତୀ୍ ଏବଂ ଶ୍ରୀ ଗଣେଶ ବିଦ୍ୟମାନ ଅଛନ୍ତି । ଭୀଷଣ ବର୍ଷା ଯୋଗୁ ମୂଡ଼େଶ୍ୱରଙ୍କର ଦର୍ଶନ ପରେ ଆଉ ମା-ପାର୍ବତୀ ଏବଂ ଶ୍ରୀ ଗଣେଶ ମନ୍ଦିରକୁ ଯିବାକୁ ସମ୍ଭବ ହେଲାନି । ଦୂରରୁ ଭକ୍ତିପୂତ ପ୍ରଣାମ ଜଣାଇଥିଲୁ ।

ବାବା ମୂଡ଼େଶ୍ୱର ମନ୍ଦିର ବାହାରକୁ ଆସିବା ପୂର୍ବରୁ ଆମ୍ଭେମାନେ ପାଦୁକ-ଭୋଗ ପାଇଥିଲୁ । ମନର ଗ୍ଲାନି, ବିଦ୍ୟମାନ ମୂଡ଼େଶ୍ୱରଙ୍କୁ ଜଣାଇଥିଲୁ । ସମସ୍ତେ ଭଲରେ, ଶାନ୍ତିରେ ରହନ୍ତୁ ବୋଲି ପ୍ରାର୍ଥନା କଲୁ । ମନ୍ଦିର ଭିତରେ ଲିଙ୍ଗ ରୂପରେ ପୂଜା ପାଉଛନ୍ତି ଶ୍ରୀ ମୂଡ଼େଶ୍ୱର । ତାଙ୍କର ବେଶ ମନୋରମ ହୋଇଛି ଉତ୍ସବ ମୂର୍ତ୍ତିରେ । ମୁଣ୍ଡରେ ସୁନାର ମୁକୁଟ ଏବଂ ରତ୍ନହାର ଗଳାରେ ପିନ୍ଧିଛନ୍ତି ।

ମହାଦେବଙ୍କୁ ଦର୍ଶନ କରି ଫେରିବାକୁ ଜମାରୁ ଇଚ୍ଛା ହେଲାନି; କିନ୍ତୁ ଆହୁରି ବହୁତ କମନୀୟ-ଆଶ୍ଚର୍ଯ୍ୟ ଜିନିଷମାନ ଏହି ମନ୍ଦିର ଭିତର ତଥା ବାହାରେ ଅଛି, ତାକୁ ଦେଖିବାକୁ ଅଦମ୍ୟ ଇଚ୍ଛା ହେଲା । ସେହି ବର୍ଷାରେ ଛତାର ଆଶ୍ରୟ ନେଇ ମନ୍ଦିର ବାହାରକୁ ଆସିଲୁ ।

ଏହି ମନ୍ଦିରର ଗୋଟିଏ ବିଶେଷତଃ ହେଉଛି, ପୁରୁଣା ମନ୍ଦିରକୁ ଲାଗି ଗୋଟିଏ ପାହାଡ଼ କୁଦ କରାଯାଇଛି । ସେହି ପାହାଡ଼କୁ ଯିବାକୁ ମନ୍ଦିର ପଟୁ ପାହାଚ

ପଡ଼ିଛି ଏବଂ ମନ୍ଦିର ବାହାରୁ କାର୍, ମଟର ସାଇକେଲ୍ ଇତ୍ୟାଦି ଯିବା ପାଇଁ ସୁନ୍ଦର ରାସ୍ତା କରାଯାଇଛି କଂକ୍ରିଟ୍‌ରେ। ଏହି ପାହାଡ଼ ଉପରେ ବିରାଟକାୟ (୧୨୦' ୦") ଉଚ୍ଚର ଶିବମୂର୍ତ୍ତି ଶୋଭା ପାଉଛନ୍ତି। ଶିବମୂର୍ତ୍ତି ବସିଥିବା ଶିଳାଖଣ୍ଡର ଗୋଲାଇ ପ୍ରାୟ ୨୦୦ ଫୁଟ ହେବ। ଦୂରରୁ ଜାଜ୍ୱଲ୍ୟମାନ ଏହି ଶିବମୂର୍ତ୍ତିଙ୍କୁ ଦେଖିବାକୁ ମନ୍ଦିର ଭିତରପଟ ପାହାଚ ପାଖକୁ ଗଲୁ। ବନ୍ଦ ଥିଲା। ବାଧ୍ୟ ହୋଇ ବାହାରପଟୁ ଯାଇ ଶିବମୂର୍ତ୍ତି ଦେଖି ଆସିବୁ ବୋଲି ଠିକ୍ କଲୁ। ଆମେ ମନ୍ଦିର ବାହାରକୁ ଆସି ଚେଷ୍ଟା କଲୁ ଚାଲି କରି ଯିବାକୁ। ମନ୍ଦିର ବାହାରେ ପ୍ରାୟ ଆଣ୍ଠୁଏ ପାଣି ହୋଇଥିଲା। ପାଣି ଭିତରେ କିଛି ବାଟ ଚାଲିଲୁ। ଉପରେ ବର୍ଷା ଅବିରାମ ଗତିରେ ହେଉଛି। ତଳେ ଚାଲିଲା ବେଳେ ପାଣି। ଯାଇ ପାରିଲୁନି। ଗାଡ଼ିକୁ ଅପେକ୍ଷା କଲୁ। ପ୍ରାୟ ୬ଟା ବେଳକୁ ଗାଡ଼ି ଆସିଲା।

ଗାଡ଼ିରେ ବସି ପାହାଡ଼ ଉପରକୁ ଗଲୁ। ସେଠି କାର୍ ଅଟକିଗଲା ଗୋଟିଏ ସମତଳ ଅଞ୍ଚଳରେ। ଏଠି ପାର୍କିଂର ବ୍ୟବସ୍ଥା ଅଛି। ଏହି ସ୍ଥାନରୁ ପାହାଡ଼ ଉପରୁ ପ୍ରାୟ ପଚାଶଟି ପାହାଚ ପଡ଼ିଛି। ଏହି ପାହାଚଗୁଡ଼ିକ ସିମେଣ୍ଟ କଂକ୍ରିଟ୍‌ରେ ତିଆରି। ପ୍ରାୟ ଆଠଫୁଟ ଚଉଡ଼ାର। ଗ୍ରାନାଇଟ୍ ପଥର କରାଯାଇଛି। ସମତଳ ଅଞ୍ଚଳରୁ ଉପରକୁ ଉଠିଗଲୁ। ଏଠି ପୁଣି ପ୍ରାୟ କୋଡ଼ିଏଟି ୬ ଫୁଟ ଓସାରର ଦୁଇଟି ଜାଗାରେ ସେହି ଏକା ରକମର ପାହାଚ ଅଛି। ଧରିବାକୁ ମଝିରେ ଆଲୁମିନିୟମ୍ ବାର୍ ଦିଆଯାଇଛି। ମୋର ନାତୁଣୀ ଦୁଇଜଣ ଖୁବ୍ କ୍ଷିପ୍ର ଗତିରେ ଏହି ସବୁ ପାହାଚ ଅତିକ୍ରମ କରି ଶିବଙ୍କର ପ୍ରତିମୂର୍ତ୍ତି ପାଖରେ ପହଞ୍ଚିଗଲେ। ଆମେ ପ୍ରାୟ ତଳୁ ୨୦୦ ଫୁଟ ଉଚ୍ଚରେ ଥିଲୁ। ଏଠି ଶିବ ବସିଥିବା ଶିଳାକୁ ସ୍ପର୍ଶ କଲୁ। ଶିବଙ୍କର ଚାରିଗୋଟି ହସ୍ତ। ପ୍ରତ୍ୟେକ ହସ୍ତର ଲମ୍ବ ପ୍ରାୟ ପଚାଶ ଫୁଟ ହେବ। ଡାହାଣ ହାତ ତଳେ ବିରାଟ ଦୁଇମୁହାଁ ସ୍ତମ୍ଭ ହୋଇଛି। ଏହି ହାତର ଓଜନ ଏହି ସ୍ତମ୍ଭ ବହନ କରୁଛି। ଅନ୍ୟ ହସ୍ତକୁ ସର୍ପ ମହାରାଜ ତାଙ୍କ ଫେଣାରେ ଧରିଛନ୍ତି। ତୃତୀୟ ହସ୍ତ ଏବଂ ଚତୁର୍ଥ ହସ୍ତ ଉଇହୁଙ୍କାର ଆଶ୍ରୟ ନେଇଛନ୍ତି। ବିରାଟକାୟ ସର୍ପମାନଙ୍କର ଭୟଙ୍କର ରୂପ ହଳଦିଆ ବର୍ଣ୍ଣର କରାଯାଇଛି। ଶିବଙ୍କର ମୁଖମଣ୍ଡଳ ଧବଳବର୍ଣ୍ଣ, ଆଖି ଦୁଇଟି ବଡ଼ ଡୋଳା ସହିତ ଦୁଇ କାନର ଉଚ୍ଚତା ପ୍ରାୟ ଆଠ ଦଶଫୁଟ ହେବ। ଦୀର୍ଘକାୟ ନାସିକା ମନୋରଞ୍ଜନ କରୁଛି। ବାଘଛାଲ ଉପରେ ଶିବଶଙ୍କର ଅର୍ଦ୍ଧମୁଦ୍ରିତ

ନୟନରେ ବସିଛନ୍ତି । ଶିବଙ୍କର ଏହି ପ୍ରକାଣ୍ଡକାୟ ମୂର୍ତ୍ତି ମନରେ ଭକ୍ତିଭାବ ଆଣୁଥିଲା ।

ଏପରି ମୂର୍ତ୍ତିର ବର୍ଣ୍ଣନା କରିବାକୁ ଉପଯୁକ୍ତ ଭାଷାର ଅଭାବ ମଧ୍ୟ ଘଟୁଛି । ଏହି ପାହାଡ଼ ତଳଭାଗଟିକୁ ଗୁମ୍ଫା କରା ହୋଇଛି । ଏଠାରେ ଶ୍ରୀ ସୁନ୍ଦର ରାମେଶ୍ୱର ମହାଦେବ ଲିଙ୍ଗ ପ୍ରତିଷ୍ଠା ହୋଇଛନ୍ତି ।

ଏହି ଗୁମ୍ଫାର ଏକ ଅଂଶରେ ଶ୍ରୀ ସୁନ୍ଦର ମହାଦେବଙ୍କର ଶିବଲିଙ୍ଗର ଉଚ୍ଚତା ପ୍ରାୟ ତିନିଫୁଟ । ଗୋଲେଇ ଦୁଇଫୁଟର ମୁଗୁନିପଥର । ଉପରେ ଶିବ-ପାର୍ବତୀଙ୍କ ପ୍ରତିମୂର୍ତ୍ତି । ଆମେମାନେ ମନ ଭରି ଦର୍ଶନ କଲୁ । ଭୋଗ ପାଇଲୁ । ବହୁତ ଦର୍ଶନାର୍ଥୀଙ୍କର ଭିଡ଼ । ବର୍ଷାର ପ୍ରାଦୁର୍ଭାବ ଭିତରେ ଆମେ ସେହି ବିରାଟ ଶିବଙ୍କର ଚାରିପଟେ ନିର୍ମିତ ପଥର ଚଟାଣରେ ବୁଲିଲୁ ଏବଂ ତଳକୁ ଚାହିଁ ଆରବ ସାଗରର ସେହି ମନୋରମ ଦୃଶ୍ୟକୁ ଉପଭୋଗ କରୁଥିଲୁ । ମନ୍ଦିର ବାହାର ଅଞ୍ଚଳ ସୁନ୍ଦର ଭାବରେ ଗତ ୨୦ ବର୍ଷ ହେଲା ତିଆରି ଚାଲିଛି । ଏହି ଅଞ୍ଚଳରେ ବହୁତଗୁଡ଼ିଏ ମନୋରମ ମୂର୍ତ୍ତି ତିଆରି ହୋଇଛି । ଉପଯୁକ୍ତ ବଗିଚା ସହିତ ପାର୍କର ବ୍ୟବସ୍ଥା ଅଛି । ସମୁଦ୍ରକୂଳରେ ବର୍ଷା ପାଣିକୁ ସଂଗ୍ରହ କରିବାକୁ ଗୋଟିଏ ମଧ୍ୟମ ଧରଣର ପୋଖରୀ ଅଛି । ଏହି ସଂଗୃହୀତ ବର୍ଷା ଜଳରୁ ବିଭିନ୍ନ ପନିପରିବା ଚାଷ ହୁଏ । ଏ ଜଳ ଉଦ୍ୟାନର ବୃକ୍ଷ ଏବଂ ଛୋଟ ଛୋଟ ଗଛଗୁଡ଼ିକରେ ପଡ଼େ । ଏହା ଗୋଟିଏ ଭଲ କାମ ବୋଲି ହୃଦ୍‌ବୋଧ ହେଲା । ଦାକ୍ଷିଣାତ୍ୟ ଏବଂ ପଶ୍ଚିମାଞ୍ଚଳରେ ବହୁ ସ୍ଥାନରେ ଏପରି ଭାବରେ ବର୍ଷା ପାଣି ସଂଗୃହୀତ ହୋଇ କୃଷି ଉତ୍ପାଦନ ତଥା ପାନୀୟ ଜଳ ଭାବେ ବ୍ୟବହାର ହୋଇଥାଏ । ଶିବମୂର୍ତ୍ତିଠାରୁ ପ୍ରାୟ ୧୫୦ ମିଟର ଦୂରରେ ସୁନ୍ଦର ଲନ୍ ଉପରେ ଭଗବାନ ଶ୍ରୀକୃଷ୍ଣ ସାରଥୀ ହୋଇ ଧଳା ଘୋଡ଼ାଯୁକ୍ତ ରଥରେ ଅର୍ଜୁନଙ୍କୁ ଗୀତାବାଣୀ ଶୁଣାଉ ଅଛନ୍ତି । ସେହି ରଥ ସହିତ କୃଷ୍ଣ ଏବଂ ଅର୍ଜୁନଙ୍କର ମୂର୍ତ୍ତିଗୁଡ଼ିକ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇଛି । ତା'ର କିଛି ଦୂରରେ ସୂର୍ଯ୍ୟଙ୍କର ପ୍ରତିମୂର୍ତ୍ତି ସହ ଅଶ୍ୱଯୁକ୍ତ ରଥ ମଧ୍ୟ ଶୋଭା ପାଉଛି । ତା'ର ଅପର ପାର୍ଶ୍ୱରେ ପ୍ରାୟ ୫୦୦ ମିଟର ଦୂରରେ ଅତିଥି ଭବନ ଏବଂ ଭୋଜନାଳୟ ଅଛି । ଯେ କୌଣସି ଯାତ୍ରୀ ଏଠାରେ ଦେୟ ଦେଇ ରାତ୍ରିଯାପନ କରିପାରିବାର ସୁବିଧା କରାଯାଇଛି ।

ବର୍ଷା ଯୋଗୁ ଆମ୍ଭେମାନେ ସେହି ଅଞ୍ଚଳ ବୁଲି ପାରିଲୁନି; କିନ୍ତୁ ଏହି ପାହାଡ଼ ଉପରୁ ପ୍ରତ୍ୟେକ ସ୍ଥାନର କମନୀୟତା ଉପଲବ୍ଧ କରୁଥିଲୁ । ଆହୁରି କିଛି ମୁନି-ଋଷିଙ୍କର ମୂର୍ତ୍ତିମାନ ସ୍ଥାପିତ ହୋଇ ସ୍ଥାନର ବିଶେଷତା ବଢ଼ାଉଥିଲା । ଶ୍ରୀ ମୂଡ଼େଶ୍ୱର ମନ୍ଦିର ସହିତ ଏହି ସ୍ଥାନଗୁଡ଼ିକ ଯୋଡ଼ା ଯାଇଥିଲା ଏବଂ ସମୁଦ୍ର ଭିତରେ ତ୍ରିକୋଣ ହୋଇ ଗୋଟିଏ କୋଣ ସମୁଦ୍ର ଭିତରକୁ ପଶିଯାଇଥିଲା । ସୁନ୍ଦର ପରିକଳ୍ପନା କରି ଏହି ସ୍ଥାନଟି ୨୦ ବର୍ଷ ପୂର୍ବରୁ ସ୍ଥାପିତ ହେଲାଣି ବୋଲି ସ୍ଥାନୀୟ ବାସିନ୍ଦାଙ୍କଠାରୁ ଜାଣିବାକୁ କ୍ଷମ ହେଲୁ । ଝିଅ ଏବଂ ଜ୍ୱାଇଁ କହୁଥିଲେ ଯେ ଏହି ସ୍ଥାନଟି କୁମାରିକା (Cape town) ପରି ମନେହେଉଛି । କେପ୍ ଟାଉନ୍ ଆରବସାଗର ଏବଂ ବଙ୍ଗୋପସାଗରର ମିଳନସ୍ଥଳ । ଭାରତ ମାନଚିତ୍ରକୁ ଅନୁଧ୍ୟାନ କଲେ ମ୍ୟାପ୍‌ର ନିମ୍ନ ଦେଶରେ ଦକ୍ଷିଣକୁ କୁମାରିକା (Cape town) ଦେଖାଯିବ । ସୁନ୍ଦର ସହରଟିଏ । ଏଠି ସ୍ୱାମୀ ବିବେକାନନ୍ଦଙ୍କର ପଥରର ପ୍ରତିମୂର୍ତ୍ତି ସମୁଦ୍ର ମଝିରେ ଅଛି । ଦର୍ଶନୀୟ ସ୍ଥାନ । ଭାରତ ମହାସାଗର (ଦୁଇ ସାଗର– ଆରବସାଗର ଏବଂ ବଙ୍ଗୋପସାଗର ମିଳନସ୍ଥଳ) ଏଠାରୁ ହିଁ ଆରମ୍ଭ ହୋଇ ଆଗକୁ ବଢ଼ିଛି ।

କୁମାରିକା ଠାରୁ ଏହି ସ୍ଥାନଟି ଅତ୍ୟନ୍ତ ଦର୍ଶନୀୟ ହୋଇଛି ବୋଲି ସେମାନେ କୁହାକୁହି ହେଉଥିଲେ । ଆଲୁଅ(ବିଦ୍ୟୁତ୍)ର ବ୍ୟବସ୍ଥା ସହ ଟ୍ୟାକ୍ସି ଷ୍ଟାଣ୍ଡ-ବସ୍ ଷ୍ଟାଣ୍ଡ୍ ଏବଂ କିଛି ଉଠା ଦୋକାନରେ ଜଳଖିଆ-ଚା ଖାଇବାର ସୁବିଧା ଥିଲା । ସବୁଆଡ଼ ପରିଷ୍କାର କରିବା ପାଇଁ ଉତ୍ସାହ ଦେଖା ଯାଉଥିଲା ।

ସନ୍ଧ୍ୟା ହୋଇ ଆସିଲା । ରାତ୍ରିର ଅନ୍ଧକାର ସହିତ ବର୍ଷାର ଧୀର-ମଧ୍ୟମ ଗତି ଆମକୁ ସେଠାରୁ ଫେରିବାକୁ ନିର୍ଦ୍ଦେଶ ଦେଲା । ଏହି ଶିବାଳୟ ପ୍ରତିଷ୍ଠାନର ମହିମା ଏବଂ ସୌନ୍ଦର୍ଯ୍ୟ ଅତୁଳନୀୟ । ଆମେ ମାତ୍ର ଦୁଇଘଣ୍ଟା ଏଠାରେ କଟାଇଥିଲୁ । ମୋର ମନେହୁଏ ପୂରାଦିନ ଏଠାରେ ରହି ସ୍ଥାନର ଖ୍ୟାତି ସହିତ ସମୁଦ୍ରର ତିନି ପଟର ମହନୀୟ ଦୃଶ୍ୟ ଉପଭୋଗ କଲେ ମଧ୍ୟ ଆହୁରି କିଛି ବାକି ରହିଯିବ ଅନ୍ତରର ଆକାଂକ୍ଷା ପାଇଁ । ଆମେମାନେ ଶିବଙ୍କର ସମ୍ମୁଖରେ ଦଣ୍ଡାୟମାନ ହୋଇ ଫଟୋମାନ ଉତ୍ତୋଳନ କଲୁ । ବୁଟୁ ବହୁତ ଗୁଡ଼ିଏ ସ୍ଥାନର ପ୍ରାକୃତିକ ଶୋଭାର

ଫଟୋ ଉଠାଇଲେ। ଏହା ପରେ ଆମେମାନେ ଫେରିବା ପାଇଁ ନିଶ୍ଚିତ ହୋଇ ଗାଡ଼ିରେ ବସିଲୁ। ରାଜେନ୍ଦ୍ର ଆଉ କାଳବିଳମ୍ବ ନ କରି ଗାଡ଼ି ଚଳାଇଲା 'କାରବାର ନୌସେନା ବେଶ୍' ଅଭିମୁଖେ। ବର୍ଷା ସେପରି ଗତିରେ ଚାଲିଥାଏ। ଆମେମାନେ ଗାଡ଼ି ଭିତରୁ ପଛକୁ ମୁହଁ କରି ଶ୍ରୀ ମୁଦ୍ରେଶ୍ୱର (ମୂଢ଼େଶ୍ୱର) ମହାଦେବଙ୍କୁ ନମସ୍କାର କଲୁ।

ଗାଡ଼ି ମଧ୍ୟମ ଗତିରେ ଚାଲୁଥିଲା ସେହି ପାହାଡ଼ ପର୍ବତର ଅଙ୍କାବଙ୍କା ରାସ୍ତା ଦେଇ ବର୍ଷା ରାତିରେ। ପଛ ଏବଂ ଆଗରୁ ଟ୍ରକ୍, ଦୂରଗାମୀ ବସ୍‌ମାନ ଅତିକ୍ରମ କଲାବେଳେ ମନରେ କିଛି ଆଶଙ୍କା ଜାତ ହେଉଥିଲା, ଭୟ ବି ଲାଗୁଥିଲା; କିନ୍ତୁ ପେଶାଦାର ଡ୍ରାଇଭର୍ ରାଜେନ୍ଦ୍ର ସୁରୁଖୁରୁରେ ଗାଡ଼ି ଆଗକୁ ଚଳାଉଥିଲା। ପିଲାମାନେ ଥଣ୍ଡାପବନ ପାଇ ଶୋଇ ପଡ଼ିଲେ ତାଙ୍କର ମା' କୋଳରେ। ଆମମାନଙ୍କୁ ମଧ୍ୟ କିଛି କ୍ଳାନ୍ତିର ଛିଟା ଲାଗି ଯାଇଥିଲା। ରାଜେନ୍ଦ୍ର ବାଟରେ ଗୋଟିଏ ଜାଗାରେ ଗାଡ଼ି ରଖୁଥିଲା ତିଆରି ହେଉଥିବା ଡ୍ୟାମ୍ ଦେଖିବାକୁ; କିନ୍ତୁ ରାତ୍ରିର ଅନ୍ଧକାର ଏହାକୁ ବାରଣ କଲା। ବହୁତ ବାଟ ପର୍ବତର ସେଇ ଅଙ୍କାବଙ୍କା ସଡ଼କ ଦେଇ ଆମେମାନେ ସମତଳ ରାଜପଥକୁ ଗାଡ଼ିରେ ଆସିଲୁ।

ରାତି ଦଶଟା ବେଳକୁ 'କାରବାର' ସହରର ଇଟିଲି ବିଦେଗାଠାରେ ପହଞ୍ଚିଲୁ। ଖାଇବାକୁ କାହାର ଇଚ୍ଛା ନ ଥିଲା। ତେଣୁ ରାସ୍ତା କଡ଼ ଢାବାରୁ କିଛି ରାତ୍ରିର ଖାଦ୍ୟ କିଣି ଆଣିଲୁ।

ରାତି ସାଢ଼େ ଦଶଟା ବେଳକୁ ପ୍ରାୟ ୪ଶହ କି.ମି. ରାସ୍ତା ପରିଭ୍ରମଣ କରି ଗାଡ଼ି ଆସି 'କାରବାର ନୌସେନା'ର ଆମର କ୍ୱାର୍ଟର୍‌ରେ ପହଞ୍ଚିଲା। ସମସ୍ତେ ଓହ୍ଲାଇଲୁ। ଆଜି ପର୍ଯ୍ୟନ୍ତ ମନ ଭିତରେ ପ୍ରଭୁ ମୂଢ଼େଶ୍ୱର (ମୁଦ୍ରେଶ୍ୱର), ଶିବ ମହାଲିଙ୍ଗ ଏବଂ ତାଙ୍କ ମନ୍ଦିର ତିନିପାଖ ଆରବସାଗରର ପ୍ରାକୃତିକ ସୌନ୍ଦର୍ଯ୍ୟ ମନ ଭିତରେ ଲିପିବଦ୍ଧ ହୋଇଯାଇଛି।

ଏହି ମୂଢ଼େଶ୍ୱର ମହାଦେବଙ୍କୁ ଦେଖିବାକୁ ସାରା ଭାରତରୁ ଭକ୍ତମାନେ ଆସିଥା'ନ୍ତି।





ଜୋଗ ଫଲ୍ ଜଳ ପ୍ରପାତର ଦୃଶ୍ୟ



ଶିଲଂ ସହରକୁ
ଏହି ଉଚ୍ଚତମ
ସ୍ଥାନରୁ
ଦେଖିହୁଏ ।



ସେଭେନ ହିଲସ୍



ଶିଲଂ ପିକ୍



କାମାକ୍ଷା ମନ୍ଦିରରେ ପତ୍ନୀ, ଝିଅ, ଜ୍ୱାଇଁ, ନତୁଣୀ ଓ ପରିବାରବର୍ଗଙ୍କ ସହ



ଏଲିଫାଣ୍ଟ୍ ଜଳପ୍ରପାତ ନିକଟରେ ଲେଖକ ଧର୍ମପତ୍ନୀଙ୍କ ସହିତ



ମୁଡ଼େଶ୍ୱର ମହାଦେବ  ମନ୍ଦିର



ଶ୍ରୀ ଶ୍ରୀ ମୁଡ଼େଶ୍ୱର ମନ୍ଦିର

# ପରିଦର୍ଶନରେ ଆସାମର ଗୌହାଟି, ମେଘାଳୟର ସିଲଂ, ବର୍ଷାପୁଞ୍ଜ ଚେରାପୁଞ୍ଜି

ପିଲାଦିନେ ପାଠ ପଢୁଥିଲା ସମୟରେ ଜାଣିଥିଲି ସର୍ବୋଚ୍ଚ ବର୍ଷା ଆସାମର ଚେରାପୁଞ୍ଜି ରେ ହୁଏ ବୋଲି। ବର୍ଷସାରା କିଛି କିଛି ବର୍ଷା ହୋଇ ସର୍ବୋଚ୍ଚ ୪୨୦ ଇଞ୍ଚ ବର୍ଷା ହୁଏ। ଭୂଗୋଳ ପଢ଼ିଲାବେଳେ ମନରେ କିଛିଟା ଆଗ୍ରହ ଥିଲା ଦେଶର ପାଣିପାଗ ସମ୍ବନ୍ଧରେ। ମୌସୁମୀ ବାୟୁ ଦକ୍ଷିଣ-ପଶ୍ଚିମ ଦିଗରୁ ବହିଲେ ଓଡ଼ିଶାରେ ପ୍ରବଳ ବର୍ଷା ହୁଏ। ଜୁନ୍ ମାସ ଶେଷରୁ ଆରମ୍ଭ ହୋଇ ଅଗଷ୍ଟ ମାସ ଶେଷକୁ ସରିଥାଏ। କ୍ରମଶଃ ପାଣିପାଗର ଦିଗ ବଦଳିବାରେ ଲାଗିଛି। ଠିକ୍ ସମୟରେ ମୌସୁମୀ ପ୍ରବାହ ନ ହେବାରୁ ସାରା ଭାରତର ବହୁତ ଅଞ୍ଚଳ ପ୍ରଭାବିତ। ସୂର୍ଯ୍ୟଙ୍କର ତେଜରେ ଅସହ୍ୟ ଗରମ ଏବଂ ଗ୍ରୀଷ୍ମପ୍ରବାହ ଏହି ପ୍ରଦେଶମାନଙ୍କୁ ଆକ୍ରମଣ କରିଥାଏ। ଫଳରେ ଲୋକମାନେ ବିକଳ, ତଟସ୍ଥ ହେବା ସହିତ ବର୍ଷାକୁ ଆକୁଳ ଚିତ୍ତରେ ଚାହିଁଥା'ନ୍ତି। କେବଳ ସାମୁଦ୍ରିକ ଝଡ଼ କିମ୍ବା ସାମୁଦ୍ରିକ ପବନ ପ୍ରବାହ ଯୋଗୁଁ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ପ୍ରବଳ ବର୍ଷା ହୋଇ ଧନଜୀବନ ନଷ୍ଟଭ୍ରଷ୍ଟ କରେ।

କିନ୍ତୁ ଚେରାପୁଞ୍ଜି ସମୁଦ୍ର ପତ୍ତନଠାରୁ ପ୍ରାୟ ଆଠ ହଜାର ଫୁଟ ଉଚ୍ଚରେ ଏପରି ସ୍ଥାନ, ଯେଉଁଠାରେ ମେଘମାଳାର ଅବସ୍ଥିତି ସବୁଦିନ ରହେ। ପିଲା ମନରେ ଆସିଥିଲା କେବେ ଯଦି ସୁଯୋଗ ମିଳେ, ଚେରାପୁଞ୍ଜି ଦେଖିବାକୁ ଆସିବି। ସେହି ବର୍ଷାରେ ଗାଧୋଇ ଆସିବି।

ମୋର ଚାକିରି ସରିବାର ପ୍ରାୟ ଦଶବର୍ଷ ପରେ ଏପରି ସୁଯୋଗ ହଠାତ୍ ଆସି ପହଞ୍ଚିଗଲା। ମୁଁ ଏବଂ ମୋର ସ୍ତ୍ରୀ ବିଶାଖାପାଟଣାରେ ସାନଝିଅ ଘରେ ରହୁଥିଲୁ। ମାର୍ଚ୍ଚ ମାସ ଶେଷ ହୋଇ ଏପ୍ରିଲ୍ ମାସ ଆରମ୍ଭ ହୋଇଥାଏ। ୨୦୦୮

ମସିହାର କଥା । ବଡ଼ ଝିଅ-ଜ୍ୱାଇଁ ଏବଂ ମଝିଆ ଝିଅ-ଜ୍ୱାଇଁ ସେମାନଙ୍କର ପିଲାମାନଙ୍କ ସହ ମେଘାଳୟର ରାଜଧାନୀ ଶିଲଂ ଯିବାକୁ ସ୍ଥିର କଲେ । ଶିଲଂରେ ମଝିଆ ଜ୍ୱାଇଁ ହିମାଂଶୁଙ୍କର ସାନଭଉଣୀ ଏବଂ ଭିଣୋଇ ଥିଲେ । ଭିଣୋଇ ବିଶ୍ୱମୋହନ ମିଶ୍ର ହେଉଛନ୍ତି ଶିଲଂରେ ଅବସ୍ଥାପିତ ଉତ୍ତର-ପଶ୍ଚିମ ବିଶ୍ୱବିଦ୍ୟାଳୟର ଅର୍ଥନୀତିର ମୁଖ୍ୟ ଅଧ୍ୟାପକ । ତାଙ୍କର ସ୍ତ୍ରୀ (ଡଲି) ମଧ୍ୟ ସେହି ଶିଲଂର ହାଇସ୍କୁଲରେ କମ୍ପ୍ୟୁଟର ଶିକ୍ଷୟିତ୍ରୀ । ତାଙ୍କର ଏକମାତ୍ର ପୁତ୍ର ଶ୍ରୀମାନ୍ (ଇକୋ) ମାଟ୍ରିକୁଲେସନ୍ ପାଶ୍ କରି ଯୁକ୍ତ ଦୁଇରେ ପଢୁଥାଏ । ବିଚକ୍ଷଣ ବୁଦ୍ଧି ତା'ର । ଅବଶ୍ୟ ପାଠପଢ଼ାରେ ଅସୀମ ନିଷ୍ଠା ଯୋଗୁଁ ପରବର୍ତ୍ତୀ ସମୟରେ ଆଇଆଇଟିରେ ଇଞ୍ଜିନିୟରିଂ ପଢ଼ିଲା ।

ମଝିଆ ଜ୍ୱାଇଁ ଏବଂ ଝିଅ ମମିତା ଫୋନ୍ କଲେ, "ଆମେମାନେ ଶିଲଂ ବୁଲିବାକୁ ବାହାରିଛୁ ଆସନ୍ତା ଏପ୍ରିଲ ମାସ ଶେଷ ସପ୍ତାହରେ । ତୁମେ ଦୁଇ ଜଣ ଆମ ସାଥିରେ ଗଲେ ବୁଲିଆସିବ । ମନରେ ଶାନ୍ତି ଆସିବ ।" ବିନା ଦ୍ୱିଧାରେ ହଁ କରିଦେଲି । ସେହି ସମୟରେ ମୋର ପୁତ୍ର ଦେବାଶିଷ ମହାପାତ୍ର ଏବଂ ନାତି ବିଭବ ଭୁବନେଶ୍ୱରରେ ଥିଲେ । ସେମାନେ ଆମ ସହିତ ସାମିଲ ନ ହେବାର କାରଣ ଜାଣିପାରିଲିନି । ବୋଧହୁଏ ସେମାନେ ଏ ବିଷୟରେ କଥାବାର୍ତ୍ତା ହୋଇନାହାନ୍ତି ବା ବ୍ୟାଙ୍କ ଚାକିରି ଯୋଗୁଁ ଛୁଟି ପାଇବାରେ ଅସୁବିଧା ହେଲା । ଝିଅ ମମତା, ନମିତା ବହୁତ ଆଗ୍ରହ ଦେଖାଇଥିଲେ । ବଡ଼ ଜ୍ୱାଇଁ ରମେଶ ଯିବାପାଇଁ ସମସ୍ତ ବନ୍ଦୋବସ୍ତ କରିଥିଲେ । ଭୁବନେଶ୍ୱରଠାରୁ କଲିକତା ହାଓ୍ୱଡ଼ା ପର୍ଯ୍ୟନ୍ତ ଏକ ସ୍ପେଶିଆଲ୍ ଦ୍ରୁତଗାମୀ ଟ୍ରେନ୍‌ରେ ରିଜରଭେସନ୍ କରିଦେଲେ । ଏହି ଟ୍ରେନ୍‌ଟି ବାଙ୍ଗାଲୋରରୁ ବାହାରି କଲିକତା ପର୍ଯ୍ୟନ୍ତ ଯାଉଥିଲା ।

ଆମମାନଙ୍କ ଭିତରୁ ବହୁତ ଜଣ ପ୍ଲେନ୍‌ରେ ବସି ନ ଥା'ନ୍ତି । ତେଣୁ ବଡ଼ ଜ୍ୱାଇଁ ରମେଶ କଲିକତା ବିମାନ ବନ୍ଦରରୁ ଆସାମର ରାଜଧାନୀ ଗୌହାଟୀ ପର୍ଯ୍ୟନ୍ତ କିଙ୍ଗଫିସର୍‌ରେ ସମସ୍ତଙ୍କ ପାଇଁ ଅଗ୍ରୀମ ଟିକେଟ କିଣି ଦେଇଥିଲେ । ଆମେମାନେ ବହୁତ ଖୁସି ହେଲୁ ।

ଆମେ ଦୁହେଁ ବିଶାଖାପାଟଣାରୁ ଏପ୍ରିଲ ୨୧ ତାରିଖରେ ଭୁବନେଶ୍ୱରକୁ

ଫେରିଆସିଲୁ । ଆମ ସାଥିରେ ତାଙ୍କର ନାଭାଲର ଜଣେ ଅଫିସର ଆସିଥିଲେ । ସେ ପୁରୀ ଯାଉଥିଲେ ତାଙ୍କର ପରିବାର ସହ ବୁଲିବାକୁ ।

ଘରେ ପହଞ୍ଚିଲୁ । ପୁଅ-ବୋହୂଙ୍କର ମନ କିଛିଟା ଅବସାଦରେ ଭରିଥିଲା ପରି ଜଣାପଡ଼ିଲା । ନାତି ବିଭବ ପାଖକୁ ଆସି ଅଳି କଲା — ବାପା ମୋତେ ସାଥିରେ ନେବନା ? ମୁଁ ନିରୁତ୍ତର୍ ଥିଲି । ଦଶବର୍ଷର ପିଲା , ତାକୁ କ'ଣ କହିବି ଜାଣିପାରିଲିନି । ମନେ ମନେ ଭାବିଲି ଏହି ପୁଅ-ଝିଅଙ୍କ ମଧ୍ୟରେ ବୁଝାମଣାର ଅଭାବ ବହୁତ ଥିଲା ।

ବିଶାଖାପାଟଣାରୁ ଭୁବନେଶ୍ୱର ଦ୍ରୁତଗାମୀ ଟ୍ରେନ୍‌ରେ ପ୍ରାୟ ଆଠ ଘଣ୍ଟା ଲାଗେ । ବହୁତ ହାଲିଆ ଆମ ଦୁଇଜଣ ସ୍ୱାମୀ-ସ୍ତ୍ରୀଙ୍କୁ ଲାଗୁଥିଲା । ତଥାପି ଶୈଳବାଳା ଅଶେଷ ଧୈର୍ଯ୍ୟର ସହ ରାତ୍ରିର ଭୋଜନ ପରେ ଜିନିଷପତ୍ର ବ୍ୟାଗ୍‌ରେ ସଜାଡ଼ି ରଖିଲେ । ଫୋନ୍‌କରି ବୁଝିଲି ସମସ୍ତେ ଲଗେଜ୍ ବନ୍ଧାବନ୍ଧି କରିଛନ୍ତି । ୨୨ ତାରିଖ ସକାଳ ଦଶଟାରେ ସେହି ସ୍ପେଶିଆଲ୍ ଟ୍ରେନ୍ ଆସିବ । ଆମେ ସମସ୍ତେ ବଡ଼ ଜ୍ୱାଇଁ ରମେଶ , ଝିଅ ନମିତା ଏବଂ ତାଙ୍କର ଏକମାତ୍ର ଝିଅ ଇପ୍‌ସିତା (ଗୁଡ଼ଲି) , ମଝିଆ ଜ୍ୱାଇଁ ହିମାଂଶୁ , ମଝିଆ ଝିଅ ମମିତା ଏବଂ ତାଙ୍କର ଦୁଇ ପୁତ୍ର ଆହ୍ୱାନ୍ (ବବୁଲ୍) , ଅଂଶୁମାନ (ପପୁଲୁ) ସମସ୍ତେ ଆସି ନିର୍ଦ୍ଧାରିତ ସମୟର ପୂର୍ବରୁ ପ୍ଲାଟଫର୍ମରେ ଏକ ନମ୍ବରରେ ମିଳିତ ହେଲେ । ଆମ ଦୁହିଁଙ୍କୁ ଛାଡ଼ିବାକୁ ଭୁବନେଶ୍ୱର ଷ୍ଟେସନକୁ ମୋର ପୁଅ ଦେବାଶିଷ , ବୋହୂ ଲିନୁ ଏବଂ ନାତି ଦିପ୍ୟମାନ (ବିଭନ) ଆସିଥିଲେ । ସେମାନେ ଆମମାନଙ୍କୁ ଛାଡ଼ିବାକୁ ଆସିଥିଲେ ସତ; କିନ୍ତୁ ମନକୋଣରେ ସେମାନଙ୍କର କିଛି ଅବସାଦ-ଅଭିଯୋଗ ଭର୍ତ୍ତି ହୋଇଥିଲା ।

ଟ୍ରେନ୍‌ର ଅସମ୍ଭବ ବିଳମ୍ବ ଘଟିବାକୁ ଲାଗିଲା । ଦଶଟାବେଳେ ଆସିବା କଥା । ଆସିଲା ପ୍ରାୟ ବାରଟା ବେଳେ । ଦୁଇଘଣ୍ଟାର ବିଳମ୍ବରେ ଆମେ ଟ୍ରେନ୍‌ରେ ଚଢ଼ିଲୁ । ତା'ପୂର୍ବରୁ ପ୍ଲାଟ୍‌ଫର୍ମରେ ବସି ତିଆରି ହୋଇଆସିଥିବା ପରଟା-ତରକାରି ଖାଇ ନେଇଥିଲୁ । ଟ୍ରେନ୍ ବାରଟା ଦଶମିନିଟ୍‌ରେ ଛାଡ଼ିଲା ।

ହାତ ବୁଲାଇ ହଲାଇ ଆମମାନଙ୍କୁ ମୋର ପୁଅବୋହୂ ବିଦାୟ ଦେଇଥିଲେ । ବିଭନର ଆଖି ଛଳଛଳ ହୋଇଯାଇଥିଲା । ଟ୍ରେନ୍‌ଟି ପ୍ଲାଟ୍‌ଫର୍ମରୁ ଅଦୃଶ୍ୟ ହୋଇଗଲା

ଦୂରକୁ ଦୂରକୁ । କିନ୍ତୁ ଏହି ଟ୍ରେନ୍‌କୁ ଅତିକ୍ରାନ୍ତ କରି ପଛରୁ ଆସୁଥିବା ଟ୍ରେନ୍‌ଗୁଡ଼ିକ ଆଗକୁ ଆଗକୁ ମାଡ଼ି ଚାଲିଥିଲେ। ଆମ ସ୍ୱତନ୍ତ୍ର ଟ୍ରେନ୍‌ର ଗତି କିଛିଟା ମନ୍ଥର ଥିଲା । ପ୍ରାୟ ପ୍ରତ୍ୟେକ ଯାଗାରେ ବହୁସମୟ ଧରି ରହୁଥିଲା । ଆମମାନଙ୍କ ମନରେ ସନ୍ଦେହ ଆସୁଥିଲା । ଏପରି ଗତିରେ ଗଲେ ତା' ଆରଦିନ କଲିକତା ବିମାନ ବନ୍ଦରରେ ବିମାନ ଧରିପାରିବୁ ତ ? ମନର ସନ୍ଦେହ କ୍ରମଶଃ ବଢ଼ି ଚାଲିଲା । ରାତି ଦଶଟା ସୁଦ୍ଧା କଲିକତା-ହାଓ୍ୱାଡ଼ା ଷ୍ଟେସନରେ ସ୍ୱତନ୍ତ୍ର ଟ୍ରେନ୍ ପହଞ୍ଚି ଯିବା କଥା । ମାତ୍ର ଏ ପର୍ଯ୍ୟନ୍ତ ମାତ୍ର ଖଡ଼ଗପୁର ଷ୍ଟେସନରେ ପହଞ୍ଚିନାହିଁ । ମନରେ ଶଙ୍କା ବଢ଼ିବାକୁ ଲାଗିଲା । ମୋର ବଡ଼ ଝିଅ ନମିତା ବଡ଼ ବ୍ୟସ୍ତ ହୋଇପଡ଼ିଲା । ତା' ସହିତ ମଝିଆଁ ଝିଅ ମମିତା ମଧ୍ୟ ବ୍ୟସ୍ତତା ଦେଖାଇଲା । ଆମର ରାତିରେ ହାଓ୍ୱଡ଼ା ଷ୍ଟେସନରେ ଗେଷ୍ଟ୍‌ରୁମ୍‌ରେ ରହିବାର ଥିଲା । ନାତିନାତୁଣୀମାନେ ମଧ୍ୟ ବ୍ୟସ୍ତ ହୋଇପଡ଼ିଲେ । କାରଣ ସକାଳ ୯ଟା ସୁଦ୍ଧା ବିମାନ ବନ୍ଦରରେ ପହଞ୍ଚିବା କଥା । ଦଶଟା ବେଳକୁ ବିମାନ ସେଠାରୁ ବାହାରିବ ଗୌହାଟୀ ବିମାନ ବନ୍ଦର । ଆଶଙ୍କାରେ ଆମେ ସମସ୍ତେ ବୁଡ଼ିଗଲୁ ।

ରାତି ଦୁଇଟା ବେଳକୁ ଖଡ଼ଗପୁର ଷ୍ଟେସନରେ ଆମର ସ୍ୱତନ୍ତ୍ର ଟ୍ରେନ୍‌ଟି ପହଞ୍ଚିଲା । ଆମେମାନେ ଦେବାଦେବୀଙ୍କର ନାମ ନେଇ ଚାଲିଲୁ । ସଂକୀର୍ତ୍ତନ କଲୁ । ଆମର ବିମାନଯାତ୍ରା ପ୍ରଥମଥର ପାଇଁ ହେବ କେବଳ ଜ୍ୱାଇଁ ରମେଶ ଏବଂ ହିମାଂଶୁକୁ ଛାଡ଼ି । ମନର ଉଦ୍‌ଗ୍ରୀବତା କ୍ରମଶଃ ଆହୁରି ବଢ଼ିବାକୁ ଚାଲିଲା । ଟ୍ରେନ୍‌ଟି ଖଡ଼ଗପୁର ଷ୍ଟେସନରୁ ଛାଡୁନାହିଁ । ସାରାରାତି ଆମେ ଅନିଦ୍ରା ରହିଲୁ । ସକାଳ ପ୍ରାୟ ପାଞ୍ଚଟା ବେଳକୁ ଟ୍ରେନ୍ ଛାଡ଼ିଲା । ମନରେ କିଛିଟା ଆଶା ସଞ୍ଚାର ହେଲା । ହାଓ୍ୱଡ଼ା ଷ୍ଟେସନ୍ ଠାରୁ ମାତ୍ର ୩୦ କି.ମି. ହେବାକୁ ଅଛି, ଗାଡ଼ିକୁ ଜମାରୁ ଲାଇନ୍ କ୍ଲିଅରାନ୍‌ସ ମିଳିଲାନି । ଲୋକାଲ୍ ଟ୍ରେନ୍‌ଗୁଡ଼ିକ ଯିବାକୁ ଲାଗିଲା । ସେତେବେଳକୁ ଦିନ ପ୍ରାୟ ଆଠଟା ହେଲାଣି । ହା-ହତାଶ ମଧ୍ୟରେ ଟ୍ରେନ୍ ଛାଡ଼ିଲା ସାଢ଼େ ଆଠଟା ବେଳକୁ ଏବଂ ହାଓ୍ୱଡ଼ା ଷ୍ଟେସନରୁ ଯିବାପାଇଁ ଲାଇନ୍ ପାଇଲାନି । ଆମେମାନେ ଆଶା-ଆଶଙ୍କାରେ ରହିଗଲୁ । କାରଣ ବିମାନର ଟିକେଟ୍‌ର ପଇସା ପ୍ରାୟ ୨୨,୦୦୦ ଟଙ୍କା ଆମର କ୍ଷତି ହେବ । ଟଙ୍କା ବୁଡ଼ିଯିବ । ଆମର ମଧ୍ୟ ପ୍ରଥମ ବିମାନ ଯାତ୍ରା ଅସଫଳ ରହିବ । ଆମର ଟ୍ରେନ୍ ପ୍ରାୟ ୮/୪୫ ମିନିଟ୍ ବେଳକୁ

ହାଓ୍ୱାଡ଼ା ଷ୍ଟେସନରେ ପହଞ୍ଚିଲା । ଆଶଙ୍କା ଭିତରେ ଶୀଘ୍ର ଟ୍ରେନ୍‌ରୁ ଓହ୍ଲାଇ ଦୁଇଟା ଟ୍ୟାକ୍ସି କରି ଦମ୍‌ଦମ୍ ବିମାନଘାଟିକୁ ଅଗ୍ରସର ହେଲୁ । ବହୁତ ସମୟରେ ବିମାନଗୁଡ଼ିକ ନିର୍ଦ୍ଧାରିତ ସମୟଠାରୁ ବିଳମ୍ବରେ ଛାଡ଼ିଥା'ନ୍ତି । ଟ୍ୟାକ୍ସି ଜୋର୍‌ରେ ଯାଉଥାଏ କଲିକତା ସହରର ଗହଳିକୁ ଭେଦ କରି । ବିମାନ ବନ୍ଦରରେ ପହଞ୍ଚିଲୁ ସାଢ଼େ ନ'ଟାରେ କିଛିଟା ଆଶା ଥିଲା ; କିନ୍ତୁ ଦେଖିଲୁ ସେହି ମୁହୂର୍ତ୍ତରେ କିଙ୍ଗଫିସର୍ ବିମାନଟି ଆକାଶକୁ ଉଠି ଚକ୍କର ମାରି ଅଦୃଶ୍ୟ ହୋଇଗଲା ଆମର ଆଖିର ପରଦାରେ । ସମସ୍ତେ ପ୍ରାୟ ଭାଙ୍ଗିପଡ଼ିଲୁ । ମୋର ଝିଅ ଦୁଇଜଣ, ନାତି ଏବଂ ନାତୁଣୀ ପ୍ରାୟ କାନ୍ଦ କାନ୍ଦ ହୋଇଯାଉଥିଲେ । ମୁଁ ମଧ୍ୟ ସ୍ତବ୍ଧ ହୋଇଯାଉଥିଲି । କ୍ଷଣିକ ଭିତରେ ୨୨,୦୦୦ ଟଙ୍କା ବୁଡ଼ିଗଲା ; କିନ୍ତୁ ଦେଖିଲି ବଡ଼ ଜ୍ୱାଇଁ ରମେଶ ଏବଂ ମଝିଆ ଜ୍ୱାଇଁ ହିମାଂଶୁ ବ୍ୟସ୍ତତା ପ୍ରକାଶ ନ କରି ତାଙ୍କ ଭିତରେ କ'ଣ ଆଲୋଚନା କରି ଦମ୍‌ଦମ୍ ବିମାନ ବନ୍ଦରର ଏ ମୁଣ୍ଡରୁ ସେ ମୁଣ୍ଡଯାଏଁ ପଚାରି ବୁଝୁଛନ୍ତି । ରମେଶ ତାଙ୍କର ଏ.ଟି.ଏମ୍ କାର୍ଡଟିକୁ ଆଣିବାକୁ ଭୁଲିଯାଇଛନ୍ତି । ହିମାଂଶୁଙ୍କ ପାଖରେ ଏ.ଟି.ଏମ୍ କାର୍ଡ ଥିଲା । ପୁନଶ୍ଚ ୨୨,୦୦୦ ଟଙ୍କା (ବାଇଶି ହଜାର ଟଙ୍କା) ଦେଇ ଆମ ନଅ ଜଣଙ୍କ ପାଇଁ ଅନ୍ୟ ବିମାନ ଇଣ୍ଡିଗୋରେ ଟିକେଟ୍ ଧରି ଆସିଲେ । ପରବର୍ତ୍ତୀ ପ୍ଲେନ୍ ୧୧ଟା ୩୦ ମିନିଟ୍‌ରେ ଅଛି । ଆମମାନଙ୍କର ବାଇଶି ହଜାର ଟଙ୍କା ପାଣିରେ ବୁଡ଼ିଗଲା କେବଳ ରେଳବାଇର ଅଯଥା ବିଳମ୍ବ ଯୋଗୁଁ । ଏଥିପାଇଁ ରେଳମନ୍ତ୍ରୀ, ଭାରତ ସରକାରଙ୍କୁ ଦାୟୀ କରିବାକୁ ପଛାଉ ନ ଥିଲୁ । ଦେଶ ସ୍ୱାଧୀନ ହେବାର ଏକଷଠି ବର୍ଷ ପରେ ମଧ୍ୟ ଇଣ୍ଡିଆନ୍ ରେଲଓ୍ୱେର ସମୟାନୁବର୍ତ୍ତିତା ହେଲାନାହିଁ । ଏଥିପାଇଁ ରେଳମନ୍ତ୍ରୀ ଲାଲୁପ୍ରସାଦ ଯାଦବ ଏବଂ ପ୍ରଧାନମନ୍ତ୍ରୀ ମନମୋହନ ସିଂହ, ସର୍ବୋଚ୍ଚ ନେତ୍ରୀ କଂଗ୍ରେସର ସୋନିଆ ଗାନ୍ଧୀଙ୍କୁ ମନ ଭିତରେ ଗାଳି ଦେଉଥିଲୁ । ଏଥିରୁ ଜଣାପଡ଼ିଲା ବିମାନର ଟିକେଟ୍ ଅଗ୍ରିମ କିଣିଲେ ଦିନକ ଆଗରୁ ଆସି କଲିକତାରେ ରହିବା ଶ୍ରେୟସ୍କର । ମନଇଚ୍ଛା ବିମାନର ମାଲିକଙ୍କୁ ଚେତାବନି ଦେବା କଥା । ଅଯଥାରେ ଠକି କରି ପଇସା ନେଇଯାଉଛନ୍ତି । ବିମାନ ଫେଲ୍ ହୋଇଥିବା ଯାତ୍ରୀଙ୍କୁ କିଛି ଅଂଶ ଟଙ୍କା ଫେରାଇଦେବା କଥା । କାରଣ ବିମାନ ଯାତ୍ରାର ତ୍ରୁଟି ବହୁତ ଅଛି । କୌଣସି ବିମାନ ପ୍ରାୟ ନିର୍ଦ୍ଧାରିତ ସମୟରେ ପହଞ୍ଚେ ନାହିଁ ବା ଛାଡ଼େ ନାହିଁ । ସେଥିପାଇଁ ଯାତ୍ରୀମାନଙ୍କୁ ଘୋର

ଅସୁବିଧା ଭୋଗ କରିବାକୁ ପଡ଼ିଥାଏ । ରେଳ ସଂସ୍ଥାର ସମୟ ରକ୍ଷିବାର ଦାୟିତ୍ୱହୀନତା ଏବଂ ବିମାନ ମାଲିକର ଅଯଥା ଠକି ଟଙ୍କା ନେବାର କାରବାରକୁ ଭାରତ ସରକାର ବିଫଳ ହୋଇଛନ୍ତି ଏକଷଠି ବର୍ଷ ପରେ । ଆମମାନଙ୍କର କୌଣସି ଭୁଲ୍ ନଥିବା ସତ୍ତ୍ୱେ ଭାରତ ସରକାରଙ୍କର ତ୍ରୁଟିପୂର୍ଣ୍ଣ ଶାସନ ଯୋଗୁଁ ବାଇଶି ହଜାର ଟଙ୍କା ହରାଇଲୁ ବିମାନ କର୍ତ୍ତୃପକ୍ଷଙ୍କ ଦ୍ୱାରା । ଏଥିପାଇଁ ରେଳପଥ ଏବଂ ବିମାନପଥ କର୍ତ୍ତୃପକ୍ଷ ପୂରା ଦାୟୀ । ଦେଖାଯାଉ, ଭାରତ ସରକାରଙ୍କର କେତେ ଶହ ବର୍ଷ ପରେ ଆଇନକୁ ସୁଧାରିବାକୁ ବେଳ ଆସୁଛି । ମନରେ ଉଭୟ ରେଲୱେ ଏବଂ ବିମାନ ସଂସ୍ଥା ପ୍ରତି ବିତୃଷ୍ଣା ଆସିବାରୁ ଏପରି ଲେଖିଲି କାଳେ ଭବିଷ୍ୟତରେ ଭାରତ ସରକାରଙ୍କର କଡ଼ା ଦୃଷ୍ଟି ଏହି ଦାୟିତ୍ୱହୀନ ଦୁଇ ସଂସ୍ଥା ଉପରେ ପଡ଼ିବ । ଫଳରେ ସାଧାରଣ ଜନତା କିଛିଟା ଉପଶମ ପାଇବେ ।

ଆମ୍ଭେମାନେ ଟ୍ରେନ୍ ଭିତରେ ଆମର ନିତ୍ୟକର୍ମ ସାରି ଦେଇଥିଲୁ । ସାମାନ୍ୟ ଜଳଖିଆ ମଧ୍ୟ ଖାଇଥିଲୁ । ଉତ୍କଣ୍ଠା ଆମର । ନୂଆକରି ଦମ୍‌ଦମ୍ ବିମାନଘାଟିରେ ଇଣ୍ଡିଗୋ ବିମାନରେ ବସିବୁ । ସାଢ଼େ ଦଶଟା ବେଳକୁ ଆମେ ବିମାନଘାଟିର ପ୍ରକୋଷ୍ଠକୁ ପ୍ରବେଶ କଲୁ । ଟିକେଟ୍ ଦେଖାଇ ଲଗେଜ୍‌କୁ ଓଜନ କରାଇନେଲୁ । ସିକ୍ୟୁରିଟି ବାଲା ତାଙ୍କ ନୀତି ନିୟମାନୁସାରେ ପ୍ରତ୍ୟେକ ବ୍ୟକ୍ତିର ଦେହମୁଣ୍ଡ ଏବଂ ସାଥିରେ ନେଉଥିବା ବ୍ୟାଗ୍, ଭ୍ୟାନିଟ୍ ବ୍ୟାଗ୍ ଏବଂ ଲଗେଜ୍ ତନଖି କରୁଥିଲେ । ଏଥିପାଇଁ ପ୍ରାୟ ଅଧଘଣ୍ଟା ଲାଗିଗଲା । ତନଖି ପରେ ଆମେମାନେ ଯାଇ ଅପେକ୍ଷା ଗୃହରେ ପହଞ୍ଚିଲୁ । ଏଠାରେ ଆମେମାନେ ବସି ରହିଲୁ । ଇଣ୍ଡିଗୋ ବିମାନଟି ଦିଲ୍ଲୀରୁ ଆସି ପହଞ୍ଚିଲା । ପ୍ରାୟ ଅଧଘଣ୍ଟା ପରେ ଆମମାନଙ୍କୁ ଗେଟ୍ ଖୋଲି ଆଗକୁ ଯିବାକୁ ପଡ଼ିଲା । ଗୋଟିଏ ବସ୍‌ରେ ଆମେମାନେ ପ୍ଲେନ୍ ରହିଥିବା ସ୍ଥାନକୁ ଗଲୁ ।

ବିରାଟ ଇଣ୍ଡିଗୋ ବିମାନ । ପ୍ରାୟ ତିନିଶହ ଯାତ୍ରୀ ଏକାଥରକେ ବସିପାରିବେ । ଆମେମାନେ ସିଡ଼ି ଦେଇ ବିମାନ ଭିତରକୁ ପ୍ରବେଶ କରିବାକୁ ଲାଗିଲୁ । ଦମ୍ ଦମ୍ ବିମାନଘାଟିରେ ପ୍ରାୟ ଶହେ ହେବ ବିମାନ ଥିବାର ଦେଖିଲୁ । ବିମାନଘାଟିର ଆୟତନ ଖୁବ୍ ବେଶୀ । ଇଣ୍ଟରନ୍ୟାସନାଲ୍ ବିମାନ ବନ୍ଦର । ତେଣୁ ପୃଥିବୀର ବିଭିନ୍ନ ପ୍ରାନ୍ତରୁ ବିମାନ ଏଠାକୁ ଆସନ୍ତି । ଆମ ଭାରତୀୟ ବିମାନ ମଧ୍ୟ

ଏଠାରୁ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଦେଶମାନଙ୍କୁ ଯାଇଥାଏ । ଦମ୍‌ଦମ୍ ବିମାନଘାଟି ପୂରାପୂରି ସୁରକ୍ଷିତ । ବହୁତ ସୁରକ୍ଷା କର୍ମଚାରୀ ମୂତୟନ ହୋଇଛନ୍ତି । ବିମାନଘାଟୀ ବାହାରେ ହଜାର ହଜାର ଟ୍ୟାକ୍ସି, କାର୍ ଅପେକ୍ଷାରତ ।

ଆମେମାନେ ବିମାନ ଭିତରେ ପ୍ରବେଶ କଲୁ । ଆମକୁ ବିମାନର କର୍ମଚାରୀ ସ୍ୱାଗତ କରିଥିଲେ । ନିର୍ଦ୍ଦିଷ୍ଟ ଆସନରେ ସମସ୍ତେ ବସିଥିଲୁ । ମୋର ପାଖରେ ପପୁଲୁ ଏବଂ ସ୍ତ୍ରୀ ଝରକା ପାଖରେ ବସିଥିଲେ । ନିର୍ଦ୍ଦେଶ ଆସିଲା ବିମାନର ଚାଳକ ରୁମ୍‌ରୁ । ସମସ୍ତେ ବେଲଟ୍ ବାନ୍ଧିଲେ ଅଣ୍ଟାରେ । ପ୍ରଥମେ ସାମାନ୍ୟ ଅସୁବିଧା ହେଲା । ପରେ ଠିକ୍ ହୋଇଗଲା ବେଲ୍‌ଟ ବାନ୍ଧିବାରେ । ବିମାନ ଭିତରେ ଦୁଇ ଧାଡ଼ି କରି ସିଟ୍‌ମାନ ଅଛି । ପ୍ରତ୍ୟେକ ଧାଡ଼ିରେ ଛଅଟି କରି ଆସନ । ମଝିରେ ଯିବାପାଇଁ ଛୋଟ ବାଟ ଅଛି । ଦୁଇ ଜଣ ଲୋକ ଥରକେ ଯାଇପାରିବେ ।

ବିମାନଟି ଏୟାର କଣ୍ଡିସନ୍‌ଡ । ତେଣୁ ବାହ୍ୟର ଉତ୍ତାପ ସହିତ ତାଳମେଳ ରଖି ବିମାନର ଶୀତତାପ ନିୟନ୍ତ୍ରଣ କରାଯାଏ । ବିମାନଟି ଚାଲିବାର ସଂକେତ ଦେଲା ଉଚ୍ଚସ୍ୱରରେ ସାଇରନ୍ ବଜାଇ । ଭୀଷଣ ଶବ୍ଦ କରି ଧୀରେ ଧୀରେ ଆଗକୁ ଆଗକୁ ଗଡ଼ିଚାଲିଲା । ଆମମାନଙ୍କର ମନରେ ଉତ୍ସାହ ଭରି ରହିଥିଲା । ପ୍ରଥମ ଥର ପାଇଁ ଆକାଶରେ ଉଡ଼ିବୁ, ତଳକୁ ଚାହିଁବୁ, ମେଘ ଦେଖିବୁ । ସତକୁ ସତ ବିମାନଟି କ୍ଷୀପ୍ର ଗତିରେ ଦୌଡ଼ିବାକୁ ଲାଗିଲା । ହଠାତ୍ ଆକାଶ ମାର୍ଗରେ ଉଡ଼ିବାକୁ ଲାଗିଲା ମୁହଁ ଉପରକୁ କରି । ଆମେମାନେ ପଛକୁ ଠେଲି ହୋଇ ପଡ଼ିଗଲା ପରି ଲାଗିଲା । ପୁଣି ଜୋର୍‌ରେ ଚାଲି ସମତଳ ହୋଇ ଆକାଶମାର୍ଗରେ ଉଡ଼ିବାକୁ ଲାଗିଲା ପକ୍ଷୀ ପରି । ତଳକୁ ଚାହିଁ ଦେଖିଲୁ କଲିକତା ସହରର ଡେଙ୍ଗା କୋଠାଘର ମାନ ଛୋଟ ଛୋଟ ଦିଶୁଛି । ଆଉ କିଛି ଦିଶୁଛି ଝାପ୍‌ସା ହୋଇ । ମେଘ ଉପରେ ବିମାନଟି ଚାଲିଲା । ମେଘମାଳା ଆସି ବିମାନରେ ପିଟି ହେଉଥିଲେ । ଆମେମାନେ ମେଘ ଉପରେ ବିମାନଟି ଉଡ଼ିଯାଉଥିବାର ଦେଖିଲୁ । ଏହି ଦୃଶ୍ୟ ଅତ୍ୟନ୍ତ ଚମତ୍କାର । ସୂର୍ଯ୍ୟଙ୍କର ତାପ ଜୋର୍ ଥିଲା ବୋଲି ପ୍ରତୀୟମାନ ହେଲା । ମୋର ସ୍ତ୍ରୀ ଝରକା ପାଖରେ ବସି ପ୍ରାକୃତିକ ଦୃଶ୍ୟ ଉପଭୋଗ କରୁଥିଲେ । ମୁଁ ଆଉ ପପୁଲୁ (ନାତି) ଝରକା ଦେଇ ଦେଖୁଥିଲୁ । ହଠାତ୍ ଦେଖିଲି ପପୁଲୁ ଯାଇ ଝରକା ପାଖରେ ବସିଛି ।

ମୋର ସ୍ତ୍ରୀ ମଝି ସିଟ୍‌ରେ ବସିଛନ୍ତି । ଗୁଡ୍‌ଲି ରମେଶ ଏବଂ ନମିର ମଝିରେ ବସିଛି ଆଗପଟରେ । ଆମ ଧାଡ଼ିର ଅପରପାର୍ଶ୍ୱରେ ହିମାଂଶୁ, ମଝିରେ ବୁବୁଲୁ (ନାତି) ଏବଂ ମମିତା ଝରକା ପାଖରେ ବସିଛନ୍ତି । ସମସ୍ତଙ୍କର ମନର ଆନନ୍ଦ । ବର୍ତ୍ତମାନ ଆକାଶରେ ଉଡ଼ିବାର ମଜା ନେଉଛନ୍ତି । କଲିକତା ଡେଇଁ ଆମେ ବହୁତ ଆଗକୁ ଆସିଲୁ । ତଳେ ଖାଲି ସବୁଜିମା ଏବଂ ପାହାଡ଼ ପର୍ବତର କିଛି ଅଂଶ ଦେଖାଯାଉଥିଲା ; କିନ୍ତୁ ମେଘମାଳାମାନେ ବିମାନର ତଳେ ତଳେ ଥିବାରୁ ବିଶେଷ କିଛି ସ୍ଥଳଭାଗ ଦିଶୁ ନ ଥିଲା । ଏହାପରେ ବ୍ରହ୍ମପୁତ୍ର ନଦୀର ପାଣି ଦେଖାଦେଲା । ପପୁଲ ମୋତେ ନଦୀର ପାଣି ଦେଖାଇଦେଲା । ଆଇକୁ ମଧ୍ୟ । ଛୋଟ ଦୁଇଟି ଗାର ମଧ୍ୟରେ ପାଣି ଅଛି । ବ୍ରହ୍ମପୁତ୍ର ନଦୀକୁ ବିମାନରୁ ଦେଖିଲୁ ।

ବିମାନ ମଧ୍ୟରେ ଆମକୁ କିଛି ପାଉଁରୁଟି, ଫ୍ରୁଟ୍ ସାଲାଡ୍ ଏବଂ ପିଇବା ପାଣି ମିଳିଥିଲା । ଏଥିପାଇଁ ପ୍ରାୟ ରମେଶ ଏବଂ ହିମାଂଶୁ ସାତଶହ ଟଙ୍କା ଖର୍ଚ୍ଚ କରିଥିଲେ । ବିମାନ ମଧ୍ୟରେ ଦର ସେମାନଙ୍କର ନିର୍ଦ୍ଧାରିତ ଥିଲା । ଆମେ ସେଥିରେ ମୁଣ୍ଡ ନ ଖେଳାଇ ବିମାନର ଝରକାରୁ ପ୍ରକୃତିର ସୌନ୍ଦର୍ଯ୍ୟରାଶିକୁ ଦେଖୁଥିଲୁ ।

ଏହି ସମୟରେ ସତର୍କବାଣୀ ଆସିଲା ଗୌହାଟୀ ହୋଇଗଲା । ଅଣ୍ଟାରେ ବେଲ୍‌ଟ ବାନ୍ଧ । ବେଲ୍‌ଟ ବାନ୍ଧିଲୁ । ବିମାନଟି ତଳମୁହାଁ ହୋଇ ଖସିଲା ବେଳେ ସାମାନ୍ୟ ଅସ୍ୱାଭାବିକ ବୋଧକଲୁ । ତଳକୁ ମୁଁହ କରି ବିମାନଟି ଓହ୍ଲାଇଲାବେଳେ ଆମେମାନେ ତଳକୁ ମୁହଁ କରିଥିଲୁ; କିନ୍ତୁ ପଛପଟ ସିଟ୍‌କୁ ଆଉଜି ବସିଥିଲୁ । ଏହାପରେ ମନ୍ଥର ଗତିରେ ବିମାନଟି ପଡ଼ିଆରେ ବିନା ବାଧାବିଘ୍ନରେ ଓହ୍ଲାଇଲା । ଆମେମାନେ ଆଶ୍ୱସ୍ତ ହେଲୁ । ପ୍ରଥମ କରି ବିମାନ ଯାତ୍ରା କରିବାର ଆନନ୍ଦରେ ଉଚ୍ଛୁଳି ପଡୁଥିଲୁ । ବିମାନ ବନ୍ଦରରୁ ବାହାରକୁ ଆସିଲୁ ଆମର ସମସ୍ତ ଲଗେଜ୍ ସହ । ଲଗେଜ୍‌ଗୁଡ଼ିକ ମୁଭିଂ ବେଲ୍‌ଟରୁ ଉଦ୍ଧାର କରିବାକୁ ମୋର ନାତିନାତୁଣୀଙ୍କର ଆଗ୍ରହ ଅତ୍ୟଧିକ ଥିଲା ।

ବିମାନବନ୍ଦର ବାହାରେ ଟ୍ୟାକ୍ସି ଏବଂ ବିଶୁବାବୁ ତାଙ୍କର କାର୍ ନେଇ ଆସିଥିଲେ । ବର୍ତ୍ତମାନ କିଛି ସମୟପରେ ଗୌହାଟିରୁ ମେଘାଳୟର ରାଜଧାନୀ ଶିଲଂ ଯିବାକୁ ପ୍ରସ୍ତୁତ ହୋଇଉଠିଲୁ । ଆମମାନଙ୍କ ପାଖରେ ବିଶେଷ କିଛି

ଟଙ୍କାପଇସା ନଥାଏ । ସବୁ ଖର୍ଚ୍ଚ ହୋଇଛି ବିମାନ ଟିକେଟ୍‌ରେ । ତେଣୁ ସାମାନ୍ୟ ଜଳଖିଆ ଖାଇନେଲୁ । ପିଲାମାନେ କୋଲଡ ଡ୍ରିଙ୍କ୍‌ସ ସହିତ କିଛିମାତ୍ରାରେ ଜଳଖିଆ ଖାଇଲେ । ଗୌହାଟି ଦେଖିବାର ନିଶା ଥିଲା; କିନ୍ତୁ ସମୟ ନାହିଁ । ଫେରିଲାବେଳକୁ ଦେଖିବୁ । ତେଣୁ ସମସ୍ତେ କାର୍ ଏବଂ ଟ୍ୟାକ୍ସିରେ ଚଢ଼ିଲୁ । ବିଶୁବାବୁ (ପ୍ରଫେସର) ତାଙ୍କର କାର୍ ଚଳାଇଲେ ଆଗରେ । ସେଥିରେ ବୁନୁ ଆଉ ପିଲାମାନେ ଗଲେ । ପଛରେ ଟ୍ୟାକ୍ସିରେ ରମେଶ, ନମି, ମମି ଏବଂ ଆମେ ଦୁହେଁ ଗଲୁ ଶିଲଂ ଉଦ୍ଦେଶ୍ୟରେ । ଏଠାରୁ ୨୦୦ କି.ମି. ଦୂର ହେବ ।

## ଶିଲଂ ଯାତ୍ରା

ଗୌହାଟିରୁ ଶିଲଂ ହେଉଛି ଦୁଇଶହ କିଲୋମିଟର । ମେଘାଳୟର ରାଜଧାନୀ । ପାହାଡ଼ ଜଙ୍ଗଲ ଦେଇ ଜାତୀୟ ରାଜପଥ ଦେଇ ଶିଲଂ ଯିବାକୁ ପଡ଼େ । ପାହାଡ଼ କଟା ହୋଇ ରାସ୍ତା ହୋଇଛି । ଦୁଇପଟର ଘଞ୍ଚ ଜଙ୍ଗଲ, ପାହାଡ଼ପର୍ବତ ଦେଇ ଗଲାବେଳେ ମନରେ ଅପୂର୍ବ ଶିହରଣ ଆସୁଥିଲା । ବାଟରେ ବହୁତ ଛୋଟ ବଡ଼ ଗାଁ ଏବଂ ସହର ପଡ଼ିଲା । ସନ୍ଧ୍ୟା ପୂର୍ବରୁ ପାହାଡ଼ିଆ ରାସ୍ତାରୁ ଚାଲିଯିବାକୁ ହେବ । ଆମେ ପ୍ରାୟ ଦିନ ୨.୩୦ ମିନିଟ୍‌ରେ ଗୌହାଟି ବିମାନବନ୍ଦରରୁ ବାହାରିଥିଲୁ । ଆମର ଟ୍ୟାକ୍ସି ଡ୍ରାଇଭର ହେଉଛି ବିହାର ଅଞ୍ଚଳର ବାସିନ୍ଦା । ଶିଲଂରେ ପ୍ରାୟ ତିରିଶ ବର୍ଷ ଧରି ରହିଲାଣି । ତା'ର ବାପା ସେଠାରେ ଚାକିରି କରୁଥିଲେ । ଘରବାରି କରି ଶିଲଂରେ ରହିଯାଇଥିଲେ । ତେଣୁ ଡ୍ରାଇଭର ରବି ସିଂ ମଧ୍ୟ ନିଜକୁ ଶିଲଂର ବାସିନ୍ଦା ବୋଲି ଭାବେ । ବାଟରେ ସେ ଆମକୁ ପ୍ରତ୍ୟେକ ସ୍ଥାନର ବିଶଦ ବିବରଣୀ ଦେଉଥାଏ । ଆସାମର ରାଜଧାନୀ ଗୌହାଟିକୁ ପ୍ରାୟ ପ୍ରତ୍ୟେକ ଦିନ ଟ୍ୟାକ୍ସି ଧରି ଯିବାଆସିବା କରେ ଯାତ୍ରୀ ନେଇ । ଏହି ଟ୍ୟାକ୍ସିରେ ସେ ବେଶ୍ ରୋଜଗାର କରେ ।

ସେ କହୁଥିଲା, "ଆମର ଆସାମ ରାଜ୍ୟକୁ ଭାଗ ଭାଗ କରି ଚାରୋଟି ପ୍ରଦେଶ ଗଠନ କରାଯାଇଛି । ଆସାମ, ମେଘାଳୟ, ଅରୁଣାଞ୍ଚଳ ପ୍ରଦେଶ ଓ ନାଗାଲାଣ୍ଡ । ଏଠାରେ ଉଗ୍ରବାଦୀଙ୍କ କାର୍ଯ୍ୟକଳାପ ଅଧିକ । ସାବଧାନ ହୋଇ

ଚଳିବାକୁ ପଡ଼େ । ବୋଡ଼ ମାନେ ତାଙ୍କର ହିଂସା ଲୀଳା ଲଗାଇ ଚାଲିଥା'ନ୍ତି ପ୍ରାୟ ଚାରୋଟି ପ୍ରଦେଶରେ । ତେଣୁ ଭାରତ ସରକାରଙ୍କର ସୈନ୍ୟବାହିନୀର ସ୍ୱତନ୍ତ୍ର ବାହିନୀ ଶାନ୍ତିରକ୍ଷା ପାଇଁ ଆଉ ପ୍ରତ୍ୟକ୍ଷ ଭାଗ ନେଇଥା'ନ୍ତି । ତେଣୁ ମିଲିଟାରୀମାନେ ଏଠାରେ ହିଂସା କାର୍ଯ୍ୟକୁ ପ୍ରତିହତ କରିବାକୁ ନିୟୋଜିତ ହୋଇଛନ୍ତି ।"

ଆମର ଯାତ୍ରା ଶେଷ ହୋଇଆସିଲା । ମେଘାଳୟ ଏବଂ ଆସାମର ମଝିରେ ଜାତୀୟ ରାଜପଥ ଯାଇଥିବାରୁ ମନରେ ସ୍ୱତଃ ଭାବନା ଆସେ । ଗୋଟିଏ ପାର୍ଶ୍ୱରେ ଆସାମ ଓ ଅନ୍ୟ ପାର୍ଶ୍ୱରେ ମେଘାଳୟ ରାଜ୍ୟ । ପ୍ରଶାସନିକ ଏବଂ ଉନ୍ନତିମୂଳକ କାର୍ଯ୍ୟରେ ପ୍ରଭେଦ ବାରି ହେଉଥାଏ । ବିଶେଷତଃ ଜାତୀୟ ରାଜପଥର ଦକ୍ଷିଣ ପାର୍ଶ୍ୱରେ ଥିବା ମେଘାଳୟ ରାଜ୍ୟର ଉନ୍ନତିକର କାର୍ଯ୍ୟ ଅଧିକ ସୁସଂଗଠିତ ଏବଂ ସ୍ଥାୟୀ, ମଜଭୁତ୍ ଥିଲା ପରି ଜଣାପଡୁଥିଲା । ଆର୍ଥିକ ସ୍ତରରେ ମେଘାଳୟର ଲୋକମାନେ ଆସାମଠାରୁ ସ୍ୱଚ୍ଛଳ ଥିଲେ । ଏମାନଙ୍କର ବେଶଭୂଷା ରୁଚିକର ଥିଲା ।

ଠିକ୍ ସନ୍ଧ୍ୟା ସାତଟାବେଳେ ଆମେ ଶିଲଂରେ ପହଞ୍ଚିଗଲୁ । ବିଶୁବାବୁ (ପ୍ରଫେସର)ଙ୍କ କ୍ୱାର୍ଟରରେ ପହଞ୍ଚିଲୁ । ସେ ସରକାରୀ କ୍ୱାର୍ଟର ପାଇଛନ୍ତି ବିଶ୍ୱବିଦ୍ୟାଳୟ ପ୍ରଫେସର୍ ହିସାବରେ । ଶିଲଂ ବିଶ୍ୱବିଦ୍ୟାଳୟ ପରିସରରେ ସୁନ୍ଦର କ୍ୱାର୍ଟର ତଳ ମହଲା ଏବଂ ଉପର ମହଲା । କାଠ ତିଆରି ଘର କହିଲେ ଅତ୍ୟୁକ୍ତି ହେବନାହିଁ । ଉପର ମହଲାରେ ରୋଷେଇଘର, ଖାଇବା ସ୍ଥାନ, ଗୋଟିଏ ଶୋଇବା ଘର । ତଳ ମହଲାରେ ଦୁଇଟି ଶୋଇବା ଘର ଏବଂ ଦୁଇଟି ଗାଧୁଆ ଘର ଅଛି । ସୁନ୍ଦର କ୍ୱାଟର । ଆମମାନଙ୍କୁ ଘର ଭିତରକୁ ପାଛୋଟି ନେଇଗଲେ ପ୍ରଫେସର ବିଶ୍ୱମୋହନ । ବିଶ୍ୱମୋହନଙ୍କ ସ୍ତ୍ରୀ ଡଲି ହସ ହସ ମୁହଁରେ ଆମକୁ ସ୍ୱାଗତ କଲା । ଟ୍ୟାକ୍ସିର ଭଡ଼ା ପ୍ରାୟ ଦୁଇ ହଜାର ଟଙ୍କା ହିମାଂଶୁ ଦେଲେ । ଲଗେଜ୍ ପତ୍ର ଧରି ଘର ଭିତରକୁ ଗଲୁ । ତଳ ମହଲାରେ ଜିନିଷପତ୍ର ଥୋଇଲୁ । ସିମେଣ୍ଟ ଚଟାଣ ଏବଂ ଇଟାର କାନ୍ଥ । ଦୁଇଟି ବଡ଼ ବଖରା । ଏହି ଘର ଦୁଇଟି ସୁନ୍ଦର ଭାବରେ ସଜା ହୋଇଛି । ଦୁଇ ବଖରାରେ ଶେଯ ପଡ଼ିଛି । ସୁନ୍ଦର ଆସାମ ହ୍ୟାଣ୍ଡଲୁମ୍‌ର ବିଛଣା ଚଦର ଏବଂ ତକିଆ ପଡ଼ିଛି । ଘରକୁ ଲାଗି ଗାଧୁଆଘର ଅଛି । ପାଣି ଯଥେଷ୍ଟ ଆସୁଥିଲା । ଏଠାରେ ପ୍ରବଳ ଥଣ୍ଡା ପାଗ ଯୋଗୁଁ ବର୍ଷ ତମାମ ଗାଧୁଆ

ଘରରେ ଗରମ ପାଣିର୍ ବ୍ୟବସ୍ଥା ଅଛି । କୌଣସି ରୁମ୍‌ରେ ପଙ୍ଖାର ଆବଶ୍ୟକତା ଥିଲାପରି ମନେପଡ଼େନି । ତଥାପି ଏତେ ଥଣ୍ଡାରେ ମଶାର କିଛିଟା ପ୍ରାଦୁର୍ଭାବ ଅନୁଭବ କଲୁ । ଉପର ମହଲା କାଠରେ ଛାତ ପଡ଼ିଛି । କାଠ ଶିଡ଼ି ଦେଇ ଉପରକୁ ଗଲୁ । ଭଲ ଲାଗିଲା । ନୂତନ ଅନୁଭୂତି । କାଠର ଶିଡ଼ି ଏବଂ କାଠର ଚଟାଣ ମନକୁ ଆନନ୍ଦ ଦେଉଥିଲା । ଉପର ମହଲାରେ ଖାଇବାଘର, ରୋଷେଇଘର ଏବଂ ଗୋଟିଏ ରୁମ୍ ଅଛି ପୁଅ ରିକୋ ପାଇଁ । ଏଠି କମ୍ପ୍ୟୁଟର ଏବଂ ତା'ର ପଢ଼ାଘର ଭିତରେ ଗୋଟିଏ ଖଟ ପଡ଼ିଛି । ରିକୋର ବର୍ତ୍ତମାନ ବାର କ୍ଲାସ(ଆଏସ୍‌ସି) । ଏହି ବର୍ଷ ଭୀଷଣ ପରିଶ୍ରମ କରୁଛି ଭଲଭାବରେ ପାଶ୍ କରି ଉଚ୍ଚତର କଲେଜରେ (ଆଟିଆଇ)ରେ ପଢ଼ିବ । ମନେହେଲା ତା'ର ପରିଶ୍ରମ ପାଇଁ ଊଣାଅଧିକେ ତା'ର ବାପା-ବୋଉ ଉଦ୍ୟମ ଅବ୍ୟାହତ ରଖିଛନ୍ତି । ରିକୋ ମଧ୍ୟ ବହୁତ ଜ୍ଞାନୀ, ଚାଲାକ୍ ପିଲା । ସେ ଭବିଷ୍ୟତରେ ନିଶ୍ଚୟ ଆଇ.ଟି.ଆଇ. ରେ ପାଇବ ବୋଲି ଆଶା ଥିଲା । ପରେ ଅବଶ୍ୟ ସେ ଆଇ.ଟି.ଆଇ.ଇ ରେ ପାଠ ପଢ଼ିବାକୁ ଯୋଗ୍ୟତା ଅର୍ଜନ କରିଥିଲା । ରାତ୍ରିଭୋଜନର ଆୟୋଜନ ହୋଇସାରିଥିଲା । ମମିତା ଏବଂ ଡଲି ଦୁହେଁ ମିଶି ଘରର ଚାକରାଣୀ ସହ ଭୋଜନର ସାମଗ୍ରୀ ଡାଇନିଂ ଟେବୁଲ୍‌ରେ ଥୋଇଦେଲେ । ଆମେମାନେ ଆଗରୁ ମୁହଁ ହାତ ଦେହ ପାଣିରେ ଧୋଇ ଦେଇଥିଲୁ । ରାତ୍ରିର ପୋଷାକ ପରିଧାନ କରି ସମସ୍ତେ ଏକାଥରକେ ଖାଇବା ଟେବୁଲ୍‌କୁ ଆସିଗଲୁ । ଭାତ, ଡାଲି, ମାଛ ତରକାରି ହୋଇଛି , କିଛି ଭଜା ମଧ୍ୟ ।

ହସଖୁସିର କଥାବାର୍ତ୍ତା ଦେଇ ଆମେ ସମସ୍ତେ ଖାଇ ବସିଲୁ । ଆମ ଭିତରେ ବିଶୁବାବୁ ଏବଂ ରମେଶ ଖୁବ୍ କମ୍ ଖାଦ୍ୟ ଖାଇବାର ଦେଖିଲୁ । ପିଲାମାନଙ୍କର ରିକୋ ହେଲା ଲିଡର୍ । ତା'ରି ରୁମ୍‌ରେ କମ୍ପ୍ୟୁଟର ଖେଳ ମଧ୍ୟରେ ନାତିନାତୁଣୀ ପପୁଲୁ-ବବୁଲୁ ଏବଂ ଇପ୍‌ସିତା ଆନନ୍ଦରେ ରାତ୍ରିର ଭୋଜନ କରିଥିଲେ ।

କଥା ଆମର ସରି ଆସିଥିଲା । ଦ୍ୱିତୀୟ ଦିନ ଶିଲଂଠାରୁ ଚେରାପୁଞ୍ଜି ପ୍ରାୟ ୧୫୦ କି.ମି ଯିବାର ସମସ୍ତ ଆୟୋଜନ କରାଯାଇଥିଲା । ଦୁଇଟା ଟ୍ୟାକ୍ସି ଦରକାର; କିନ୍ତୁ ବିଶୁବାବୁ ତାଙ୍କର କାର୍ ଚଳାଇ ସାଥିରେ ପାଞ୍ଚଜଣ ନେଇଗଲେ । ଅନ୍ୟ ଗୋଟିଏ ଟ୍ୟାକ୍ସିରେ ଆମେ ସମସ୍ତେ ଯାଇପାରିବୁ । ସେହି ଟ୍ୟାକ୍ସିବାଲାକୁ ଖବର

ଦିଆଗଲା । ସେ ସକାଳ ୭ଟାରେ ଆସି ପହଞ୍ଚିବ ବୋଲି ନିର୍ଭର ପ୍ରତିଶ୍ରୁତି ଦେଲେ । ଆମେମାନେ ଖୁସି ହୋଇ ଶୋଇବାକୁ ଚାଲିଗଲୁ । ସେତେବେଳେ ଖରାଦିନ । ଓଡ଼ିଶା, ବିହାର, ବେଙ୍ଗଲ ଏବଂ ଆସାମର ଗୌହାଟୀରେ ଭୀଷଣ ଗରମ ହେଉଛି; ଅଥଚ ରାତିରେ ଆମେ ଦେହରେ କମ୍ବଳ ଦେଇ ଶୋଇବାକୁ ହେଲା । ଶିଲଂ ହେଉଛି ହିମର ଘର । ମେଘର ଆଳୟ ଏଠାରେ । ତେଣୁ ପ୍ରଦେଶର ନାମ ମେଘାଳୟ । ବର୍ଷସାରା ଶିଲଂରେ ଶୀତର ଅନୁଭୂତ ହୁଏ । ଆମେ ଆରାମରେ ଶୋଇଗଲୁ ।

## ଚେରାପୁଞ୍ଜି ପରିଦର୍ଶନ

ସକାଳ ସାତଟାବେଳକୁ ଆମେମାନେ ନିତ୍ୟକ୍ରମ ସାରି ପ୍ରସ୍ତୁତ ହେଉଥିବା ପରଟା, ତରକାରି ଜଳଖିଆ ଖାଇସାରିଥିଲୁ । ବାଟ ପାଇଁ ଆବଶ୍ୟକ ପରିମାଣର ପିଇବାପାଣି ପାଉଁରୁଟି ସହିତ ସକାଳୁ ରନ୍ଧା ହୋଇଥିବା ଖେଚେଡ଼ି, ପାଚିଲା କଦଳୀ କିଛି ପ୍ରସ୍ତୁତ ତରକାରି ସହିତ ଭଜା ନେଇଥିଲୁ । ଦୁଇଟିଯାକ ଗାଡ଼ି ଆଗପଛ ହୋଇ ଚାଲିଲେ । ଆଗ ବିଶୁବାବୁଙ୍କ କାର୍‌ରେ ବୁନୁ (ମୋର ମଝିଆଁ ଜ୍ୱାଇଁ) ରିକୋ, ପପୁଲୁ, ବବୁଲୁ ଏବଂ ଇପ୍‌ସିତା (ଗୁଡ଼ଲି) ବସିଥିଲେ । ପଛ ଟ୍ୟାକ୍ସିରେ ଆମେ ଦୁଇ ଜଣ ଏବଂ ଝିଅ ନମିତା-ମମିତା, ବଡ଼ ଜ୍ୱାଇଁ ରମେଶ ଥିଲେ । ଦିନ ପ୍ରାୟ ସାଢ଼େ ଆଠଟା ବେଳକୁ ଘରୁ ବାହାରିଲୁ । ଡଲି (ବିଶୁବାବୁଙ୍କର ପତ୍ନୀ) ଗଲାନାହିଁ । କାରଣ ତା'ର ସ୍କୁଲରେ କମ୍ପ୍ୟୁଟର ପରୀକ୍ଷା ପାଇଁ ପ୍ରଶ୍ନପତ୍ର କରିବାକୁ ପଡ଼ିବ । ସେ ଆମମାନଙ୍କୁ ଦାଣ୍ଡ ପର୍ଯ୍ୟନ୍ତ ଆସି ବିଦାୟ ଦେଲା ।

ଆଗପଛ ହୋଇ ଗାଡ଼ି ଦୁଇଟି ଆଗକୁ ଆଗକୁ ଦୌଡ଼ିଲା ଦୁଇପଟର ଜଙ୍ଗଲ ଏବଂ ପର୍ବତ, ପାହାଡ଼ ଘେର ଦେଇ ଅଙ୍କାବଙ୍କା ରାସ୍ତାରେ । ଦୁଇପଟର ପ୍ରାକୃତିକ ଦୃଶ୍ୟ ମନକୁ ଆନନ୍ଦ ଦେଇଥିଲା ।

ପଚାଶ କି.ମି. ଗଲାପରେ କାର୍ ଅଟକିଲା । ଏଇଟି ହେଉଛି ଜଳପ୍ରପାତ । ଉଚ୍ଚ ପର୍ବତମାଳାରୁ ଏହି ଜଳପ୍ରପାତ ବହିଆସି ହଜାର ଫୁଟ୍ ତଳେ ପାଣିର ତରଙ୍ଗ ଖେଳୁଛି ଏବଂ ନଦୀରେ ପରଣତ ହୋଇଛି । ଏହି ପାଣିରେ ପ୍ରକାଣ୍ଡ ବ୍ରିଜ୍ ତିଆରି

ହୋଇଛି ଏବଂ ତଳକୁ ତଳକୁ ଯିବାକୁ ପାହାଚମାନ ମଧ୍ୟ ନିର୍ମିତ ହୋଇଛି କଂକ୍ରିଟ୍‌ର । ବହୁତ ଯାତ୍ରୀ ସେଠାରେ ରୁଣ୍ଡ ହୋଇଛନ୍ତି ଉପରିସ୍ଥ ବ୍ରିଜ୍ ଉପରେ । ବହୁତ ପର୍ଯ୍ୟଟକ ମଧ୍ୟ ପାହାଡ଼ର ତଳଦେଶକୁ ଯିବାକୁ ପାହାଚର ଆଶ୍ରୟ ନେଉଛନ୍ତି । ଏହି ପାହାଚ ପ୍ରାୟ ଦୁଇ ଶହ ପାଖାପାଖି ହେବ । ତଳକୁ ଯାଇ ଜଳପ୍ରପାତର ଫଟୋ ଉଠାଇଲୁ । ଆମମାନଙ୍କର ବିଭିନ୍ନ ଭଙ୍ଗୀର ଜଳପ୍ରପାତକୁ ଏବଂ ରାସ୍ତାକଡ଼େ ଥିବା ବୃକ୍ଷମାନଙ୍କ ସହିତ ସୁନ୍ଦର ଫଟୋ ଉଠାଇଲୁ । ଫଟୋ ଉଠାଇବାରେ ହିମାଂଶୁ ଏବଂ ମୋର ବଡ଼ ଝିଅ ନମିତା ଆଗୁଆ ଥିଲେ । ସମସ୍ତେ ମଧ୍ୟ ପାଳିକରି ଫଟୋ ଉଠାଉଥିଲେ । ଏହିସ୍ଥାନରେ ଆମେ ପ୍ରାୟ ପଇଁଚାଳିଶି ମିନିଟ୍ ରହିଥିଲୁ । ନୈସର୍ଗିକ ରୂପସଜ୍ଜାରେ ଭରପୂର ଏହି ଜଳପ୍ରପାତ । ଉପରକୁ ଉଠିଆସିଲୁ । ରାସ୍ତାର ଅପରପାର୍ଶ୍ୱରେ ଥିବା ଚା' ଦୋକାନରୁ ଚା' ପିଇଲୁ । କ୍ଳାନ୍ତ ଦେହକୁ ଚା'ଟା ଖୁବ୍ ଭଲ ଲାଗିଥିଲା ।

ଏହାପରେ ଗାଡ଼ି ଦୁଇଟି ଆଗକୁ ଛୁଟି ଚାଲିଲା । ଗୁଡ଼ିଏ ଛୋଟ ଗ୍ରାମ ଏବଂ ଛୋଟ ସହର ରାସ୍ତାରେ ପଡ଼ିଥିଲା । ଗାଡ଼ି ଅଟକିଲାନି ସେଠାକାର କାଠ ଜିନିଷ କିଣିବାକୁ । ଟ୍ୟାକ୍ସି ଚାଳକ ରବି ସିଂ କହୁଥିଲା ଶୀଘ୍ର ନ ଗଲେ ଦୁଇଟି ବାଧା ଆସିପାରେ । ଗୋଟିଏ ହେଲା ଭାସମାନ ମେଘମାଳାରେ ରାସ୍ତା ଆଉ ଆଗକୁ ଦିଶିବନି । ଫଳରେ ଗାଡ଼ି ଅଟକାଇବାକୁ ହେବ । ଏହି ମେଘମାଳା ଆସି ତୁମ ଦେହରେ ବାଜିବ; ଅବଶ୍ୟ ମଜା ଲାଗିବ । ଅନ୍ୟଟି ହେଉଛି ଭୀଷଣ ବର୍ଷା ସହିତ ପବନ ବହିପାରେ । ବହୁତ ସମୟରେ ପର୍ଯ୍ୟଟକମାନେ ଚେରାପୁଞ୍ଜି ଏହି ଦୁଇଟି କାରଣରୁ ଦେଖି ନପାରି ସମୟେ ସମୟେ ଫେରିବାକୁ ବାଧ୍ୟ ହୋଇଥା'ନ୍ତି । ଆଜିର ପାଗ ଖୁବ୍ ଭଲ ଅଛି । ସୂର୍ଯ୍ୟକିରଣ ପଡ଼ିଛି । ମେଘମାଳାର ଚିହ୍ନବର୍ଣ୍ଣ ଏ ପର୍ଯ୍ୟନ୍ତ ଦେଖିବାକୁ ମିଳିନାହିଁ । ତା' କଥାକୁ ସତ ବୋଲି ଭାବି କୌଣସି ସ୍ଥାନରେ ଗାଡ଼ିକୁ ନ ଅଟକେଇ ଆଗକୁ ଚାଲିଲୁ । ପ୍ରାୟ ଦିନ ବାରଟା ବେଳକୁ ପ୍ରାୟ ୧୨୦ କି.ମି. ଅତିକ୍ରମ କରିଆସିଲୁ । ଗୋଟିଏ ଗାଁରେ ଶିରିଡ଼ି ସାଇ ମନ୍ଦିର, ସ୍କୁଲ ଏବଂ କଲେଜ ଅତିକ୍ରମ କଲୁ । ସେଇ ଗାଁଟି ଦେଖିବାକୁ ଭଲ ଲାଗୁଥିଲା । ରହିବାକୁ ଇଚ୍ଛା ଥିଲେ ମଧ୍ୟ ରହିପାରିଲୁନି ବର୍ଷାର ଆଶଙ୍କାରେ ।

ଭଲ ରାସ୍ତା ସରି ସରି ଆସୁଥିଲା । ଗୋଟିଏ ଛକରେ ଟ୍ୟାକ୍ସି ଡ୍ରାଇଭର ରବି ସିଂ ବାଟ ଭୁଲି ଅନ୍ୟ ଗୋଟିଏ ରାସ୍ତାରେ ଚାଲିବାକୁ ଲାଗିଲା । ଲେଖା ହୋଇଛି ବାଙ୍ଗାଲାଦେଶ ବର୍ଡର୍ । ପକ୍କା ରାସ୍ତା ପଡ଼ିଛି । ପ୍ରାୟ୍ ଗୋଟିଏ କି.ମି. ଯିବା ପରେ ନିଜର ଭ୍ରମ ବୁଝିପାରି ଗାଡ଼ି ପଛକୁ ଫେରାଇଲା । ବିଶୁବାବୁ ମଧ୍ୟ ଆମର ପିଛା କରିଥିଲେ । ମାତ୍ର ପାଞ୍ଚ କି.ମି. ଦୂରରେ ବାଙ୍ଗାଲାଦେଶ । ଦୂରରୁ ସେହି ଦେଶର ଜମିବାଡ଼ି ଏବଂ ଜଙ୍ଗଲ, ନଦୀ-ନାଳ ଦେଖିଲୁ । ମନରେ କିଛି ଶଙ୍କା, ଆନନ୍ଦ ପ୍ରବେଶ କରିଥିଲା । ଯାହା ଜଣାପଡୁଥିଲା, ବିଶେଷ ସିକ୍ୟୁରିଟିର ବ୍ୟବସ୍ଥା ନାହିଁ । ଏହି ବାଟ ଦେଇ ବାଙ୍ଗାଲାଦେଶୀମାନେ ସହଜରେ ଭାରତ ଭିତରକୁ ପ୍ରବେଶ କରିପାରିବେ ସ୍ଥଳ ପଥରେ । ଏହି ବାଟେ ସନ୍ତ୍ରାସବାଦୀମାନେ ପରଦେଶରୁ ଆମ ଦେଶକୁ ଅସ୍ତ୍ରଶସ୍ତ୍ର ଧରି ଆସିଯାଆନ୍ତି । ପରେ ଭାରତ ସରକାର, ତାରବାଡ଼ ଘେରାଇବାକୁ ମନସ୍ଥ କରି କାର୍ଯ୍ୟ ଆରମ୍ଭ କରିଛନ୍ତି ବାଙ୍ଗଲାଦେଶୀଙ୍କୁ ଅଟକାଇବାକୁ । ଏହି ବାଡ଼ ଦେଇ ଅନୁପ୍ରବେଶକାରୀ ବାଙ୍ଗଲାଦେଶୀମାନେ, ବିହାର, ଆସାମ, କଲିକତା, ଓଡ଼ିଶା ଏବଂ ମୁମ୍ବାଇ ପ୍ରଭୃତି ସ୍ଥାନକୁ ପଶିଆସୁଛନ୍ତି । ଫଳରେ ଦେଶର ନିରାପତ୍ତା ବିପନ୍ନ ହେବାରେ ଲାଗିଛି । ଏହି ଜାତୀୟ ସମସ୍ୟାକୁ ବିଚାର କରି ଭାରତ ସରକାର ଏବଂ ପ୍ରଦେଶ ସରକାର କଠୋର କାର୍ଯ୍ୟାନୁଷ୍ଠାନ କରୁଛନ୍ତି ଅନୁପ୍ରବେଶକାରୀଙ୍କ ଉପରେ ।

ଆମର ଗାଡ଼ି ଦୁଇଟି ବାଙ୍ଗଲାଦେଶ ସୀମାରୁ ପଛକୁ ଫେରି ପୁନଶ୍ଚ ଚେରାପୁଞ୍ଜି ରାସ୍ତାରେ ଗଡ଼ିବାକୁ ଲାଗିଲା । ପିଚୁ ରାସ୍ତା ପ୍ରାୟ୍ ସରି ଆସିଲା । ଏହାପରେ ମାଟି ରାସ୍ତା ଦେଇ ପ୍ରାୟ୍ ଦୁଇ କି.ମି.ଗଲୁ । ରାସ୍ତା ତିଆରି ହେଉଥଲା । ମେଟାଲ୍ ଉପରେ ଗାଡ଼ି ଚାଲୁଥିଲା ସେଇ ଅଣଓସାରିଆ ରାସ୍ତା ଗୋଟିଏ କଡ଼ରେ ।

ଆଉ ମାତ୍ର ଦଶ କିଲୋମିଟର ଅଛି । ଆକାଶରେ ମେଘମାଳା ଦେଖାଗଲା । କ୍ରମଶଃ ମେଘମାନେ ତଳକୁ ଓହ୍ଲାଇ ଆସି ଆମ ଗାଡ଼ି ଦୁଇଟିକୁ ତାଙ୍କର କବ୍‌ଜାରେ ରଖିଲେ । ଫାଙ୍କ ଦେଇ ଉଡ଼ା ମେଘ ଗାଡ଼ି ଭିତରେ ପଶିଲା । ଚାରିଆଡ଼େ ମେଘମାଳା ଘେରି ଆଉ ଆମକୁ ରାସ୍ତା ଦିଶିଲା ନାହିଁ । ବିଶୁବାବୁ ଏବଂ ଟ୍ୟାକ୍ସି ଡ୍ରାଇଭରର ହଂସା ଉଡ଼ିଲା । ମେଘମାଳା ଆସି ଦେହରେ ପିଟି ହେଉଛନ୍ତି । ଆଗକୁ ଯିବାର

ସମ୍ଭାବନା କ୍ଷୀଣ। ସୂର୍ଯ୍ୟ କେଉଁଆଡ଼େ ଲୁଚିଗଲେ। ଆମର ଏ ଗୋଟିଏ ନୂଆ ଅନୁଭୂତି ହେଲା, କୁହୁଡ଼ି ଘେରରେ ଗାଡ଼ି ପଡ଼ିଲେ ଆଗକୁ କିଛି ଦିଶେନାହିଁ। ନିଜର ଅନ୍ଦାଜ ଏବଂ ଅନୁଭୂତିରେ ଗାଡ଼ି ଚଳାଇବାକୁ ହୁଏ। ଏଠି ଏସବୁ ଅସମ୍ଭବ। ପାହାଡ଼ିଆ ରାସ୍ତା ଅଙ୍କାବଙ୍କା ହୋଇଛି ପ୍ରତ୍ୟେକ ଶହେ କିମ୍ବା ଦୁଇଶହ ମିଟରରେ। ତଳକୁ ହଜାର ହଜାର ଫୁଟ ଖାଲ। ଟିକିଏ ଅସାବଧାନ ହେଲେ ଗାଡ଼ି ଦୁର୍ଘଟଣାଗ୍ରସ୍ତ ହୋଇପାରେ। ଜୀବନ ପ୍ରତି ବିପଦ ଅଛି। ଅଗତ୍ୟା ଦୁଇଗାଡ଼ି ରାସ୍ତା ଉପରେ ବତୀ ଜଳାଇ ପ୍ରାୟ ଏକଘଣ୍ଟା ରହିଲା। ଏହି ସମୟରେ ଦେଖୁଥିଲୁ ସେହି ଉଚ୍ଚ ଉଚ୍ଚ ପର୍ବତ ଏବଂ ହଜାର ଫୁଟ ଗହ୍ୱରରେ ମେଘମାଳା ପୂର୍ଣ୍ଣ ହୋଇ ସମସ୍ତଙ୍କୁ ଏକାକାର କରିଦେଉଛି। ବିଚିତ୍ର ଦୃଶ୍ୟ। ପର୍ବତ, ଖାଲ, ରାସ୍ତା ଏବଂ ଗାଡ଼ି ଦୁଇଟି ମଧ୍ୟ ମେଘମାଳାରେ ଏକାଠି ହୋଇଯାଇଛନ୍ତି। କେବଳ ଗାଡ଼ିଦୁଇଟିର ଆଗପଛ ଆଲୁଅ କିଛିଟା ମେଘକୁ ଭେଦକରି ଉଜ୍ଜ୍ୱଳ ଦେଖାଯାଉଛି।

ଏହାପରେ ଭୀଷଣ ବର୍ଷା ଆରମ୍ଭ ହୋଇଗଲା। ମେଘମାଳା ଅଦୃଶ୍ୟ ହୋଇ ବର୍ଷାପାଣିରେ ପରିଣତ ହେଲା। ପ୍ରାୟ ଅଧଘଣ୍ଟାକ ପରେ ବର୍ଷା ଥମିଗଲା। ସାଧାରଣ ଝିପିଝିପି। ଡ୍ରାଇଭର ସାହସ କରି ଆଗକୁ ଚଳାଇଲା। କହିଲା— ଆଜି ଆପଣମାନେ ଚେରାପୁଞ୍ଜିର ଅସଲ ରୂପ ଦେଖିପାରିବେନି। ତଥାପି ସେଇ ଯାଗାକୁ ଯିବାକୁ ଆମର ପ୍ରବଳ ଆଗ୍ରହ ଦେଖି ଗାଡ଼ିକୁ ବଡ଼ ସନ୍ତର୍ପଣରେ ଆଗକୁ ଚଳାଇଲା। ଆମ ଭାଗ୍ୟକୁ ବର୍ଷା ପୂରା ଛାଡ଼ିଗଲା ଏବଂ ସୂର୍ଯ୍ୟ ମଧ୍ୟ ତାଙ୍କର ମୁହଁ ଦେଖାଇଲେ। ସେହି କଚ୍ଚା ରାସ୍ତାଟି ସମ୍ପୂର୍ଣ୍ଣ ଧ୍ୱସ୍ତବିଧ୍ୱସ୍ତ ଥିଲା। ଗାଡ଼ି ଧୀରେ ଧୀରେ ଚାଲିଲା; କିନ୍ତୁ ସେ ପର୍ଯ୍ୟନ୍ତ ପାହାଡ଼, ପର୍ବତ ଏବଂ ଖାଲିସ୍ଥାନରେ ମେଘମାଳାମାନେ ଭର୍ତ୍ତି ଥିଲେ। ତେଣୁ ସେମାନଙ୍କର ରୂପ, ବର୍ଣ୍ଣ ଦେଖିବା ଅସମ୍ଭବ ଥିଲା। ରାସ୍ତା ଚିହ୍ନି ଡ୍ରାଇଭର ଗାଡ଼ିକୁ ନେଇ ଆଗକୁ ଯାଉଥାଏ। ଆମେମାନେ ମନରେ ଠିକ୍ କଲୁ ଆଉ ପାଞ୍ଚ କି.ମି. ନ ଯାଇ ଫେରିଯିବା ଭଲ। ଏପରି ବିପଦବହୁଳ ଅଞ୍ଚଳକୁ ଆସିବାରେ ଜୀବନ ପ୍ରତି ବିପଦ ଅଛି। ମୋର ଝିଅ ଏବଂ ନାତିନାତୁଣୀମାନେ ଜଗନ୍ନାଥ, ମଙ୍ଗଳାଙ୍କର ଭଜନ ଗାଉଥା'ନ୍ତି। ଆମର ଗାଡ଼ି ଦୁଇଟି ବହୁତ କଷ୍ଟେମଷ୍ଟେ ଆଗେଇ ଚାଲିଲେ। ଆଗରେ ସାଇନ୍‌ବୋର୍ଡ଼ ପଡ଼ିଲା। ଚେରାପୁଞ୍ଜି ମାତ୍ର ଏକ କି.ମି.।

ମନର ଆଶଙ୍କା ଦୂର ହେଲା । ଗାଡ଼ି ଦୁଇଟି ପାହାଡ଼ ଉପର ଦେଇ ଚଢୁଥିଲେ । ଟ୍ୟାକ୍ସି ଡ୍ରାଇଭରକୁ କହିଲୁ– ଯେଉଁଠି ବର୍ଷଯାକରେ ଅତ୍ୟଧିକ ବର୍ଷା ହୁଏ, ସେହି ସ୍ଥାନକୁ ନେଇଚାଲ । ସେ କହିଲା– ଚାଲନ୍ତୁ ଆଜ୍ଞା, ଦେଖିବା ସେ ସ୍ଥାନ ମେଘମାଳାରେ ଭର୍ତ୍ତି ହୋଇଛି କି ନାହିଁ, ତାହା ଦୂରରୁ ଦେଖିହେବ ।

ଗୋଟିଏ କି.ମି. ରାସ୍ତା ବହୁତ ରାସ୍ତାପରି ଲାଗିଲା ମନର ଆଗ୍ରହ ସମୟରେ । ପରିଶେଷରେ ଗାଡ଼ି ଦୁଇଟି ସେହି ସ୍ୱତନ୍ତ୍ର ସ୍ଥାନରେ ପହଞ୍ଚିଲା । ମେଘ ଜମାଟ୍ ନ ଥିଲା । ମେଘମାଳା ମଧ୍ୟ ସେହି ସ୍ଥାନରେ ନ ଥିଲା । ବିଶ୍ୱର ସର୍ବାଧିକ ବର୍ଷାର ଯାଗା ଚେରାପୁଞ୍ଜିରେ ପାଦ ରଖିଲୁ । ସେଠି ଫଟୋ ଉତ୍ତୋଳନ କଲୁ; କିନ୍ତୁ ସେଠାରେ ସାତୋଟି ଜଳପ୍ରପାତର ମନୋହର ଦୃଶ୍ୟ ଦେଖିବାକୁ ଅକ୍ଷମ ହେଲୁ । ଯେଉଁ ସ୍ଥାନକୁ ପୃଥିବୀର ସର୍ବାଧିକ ବର୍ଷା ସ୍ଥାନ (ଚେରାପୁଞ୍ଜି) କୁହାଯାଇଥିଲା, ସେହି ସ୍ଥାନରେ ଲୁହାର ବାଡ଼, କଂକ୍ରିଟ୍ ବାଡ଼ ତିଆରି ହୋଇଛି । ମାତ୍ର ୫୦୦ ମିଟର ଲମ୍ବ ପ୍ରସ୍ଥ । ତା'ରି ଆଗରେ ବିରାଟ ବିରାଟ ସାତୋଟି ପର୍ବତ ପ୍ରାୟ ଏକ କି.ମି.ର ଦୂରରେ ଥିଲେ । ତଳକୁ ଚାହିଁଲେ ପ୍ରାୟ ୩୦୦୦ ହଜାର ଫୁଟ ଗହ୍ୱର ଭାଲିରେ ପାଣିପୂର୍ଣ୍ଣ; କିନ୍ତୁ ଆମେମାନେ ଏସବୁ ଦେଖିବାରୁ ବଞ୍ଚିତ ହେଲୁ । ମେଘମାଳାମାନେ ପର୍ବତ ଉପରୁ ତଳୁ ଭାଲିର ଶେଷପର୍ଯ୍ୟନ୍ତ ପୂରି ରହିଛନ୍ତି । ପର୍ବତ ଏବଂ ଭାଲି (ଖାଲୁଯାଗା) ଏକତ୍ର ହୋଇଯାଇଛନ୍ତି ମେଘମାଳାରେ । ସେଇ ସାତଟି ବିଶାଳକାୟ ଜଳପ୍ରପାତ ଦେଖିପାରିଲୁ ନାହିଁ । ଟ୍ୟାକ୍ସି ଡ୍ରାଇଭର କହିଲା– ଏହି ମେଘମାଳା ଛାଡ଼ିବାକୁ ଚାରିପାଞ୍ଚ ଘଣ୍ଟା ଲାଗିପାରେ; ନଚେତ୍ ବଡ଼ି ବଡ଼ି ସାରା ଚେରାପୁଞ୍ଜି ଅଞ୍ଚଳକୁ (ସହରକୁ) ଜନସମାଜ ଠାରୁ ଦୂରେଇ ରଖିପାରିବ ।

ଆମେ ଫେରିଆସିଲୁ । ଚେରାପୁଞ୍ଜି ଗୋଟିଏ ଛୋଟ ସହର । ବ୍ୟବସାୟୀ ସ୍ଥଳ । ହାଇସ୍କୁଲ ପର୍ଯ୍ୟନ୍ତ ପାଠପଢ଼ାର ସୁବିଧା ଅଛି । ଜନସାଧାରଣ ବ୍ୟବସାୟ ଓ ଛୋଟ ଚାଷବାସ କରନ୍ତି । ସେହି ଚେରାପୁଞ୍ଜି ସହରର କିଛି ବାଟ ପରେ ଗୋଟିଏ ବଡ଼ ଗୁମ୍ଫା ଦେଖିଲୁ । ପାଣିରେ କିଛି ଅଂଶ ରହିଛି । ଅଧା ଦେଖି ଚାଲିଆସିଲୁ ଦିନ ୨.୩୦ ମିନିଟ୍‌ରେ । ଏଥର ମନ ଖୁସି ହୋଇଯାଇଥିଲା । ବର୍ଷା ସେପରି ଝିପିଝିପି ଲାଗିଥାଏ । ଫେରିବା ମୁହାଁ ହୋଇଗଲୁ; କିନ୍ତୁ ଟ୍ୟାକ୍ସି ଡ୍ରାଇଭର

ପ୍ରାୟ ଅଶୀ କି.ମି. ପରେ ଗୋଟିଏ ଗାର୍ଡେନ୍ ଭିତରକୁ ଗାଡ଼ି ନେଇଗଲା । ସିକ୍ୟୁରିଟି ଚେକ୍ ପରେ ଆମେମାନେ ଚାଲି ଚାଲି ଭିତରକୁ ଗଲୁ । ଗାଡ଼ି ଦୁଇଟି ଗେଟ୍ ବାହାରେ ରହିଲା । ଟ୍ୟାକ୍ସି ଡ୍ରାଇଭର ରବି ସିଂ ଆଗେ ଆଗେ ଚାଲିଥାଏ । କହିଲା, "ଆପଣମାନେ ସେହି ବିରାଟକାୟ ସାତୋଟି ଜଳପ୍ରପାତ ଦେଖିପାରିଲେନି; କିନ୍ତୁ ଏହି ସ୍ଥାନରୁ ମାତ୍ର ଦୁଇଗୋଟି ଦେଖିପାରିବେ ।" ଉତ୍କଣ୍ଠାର ସହ ଆଗେଇଲୁ । ଶୈଳବାଳା ମୋ' ସାଥିରେ ଯାଉଥିଲେ । ସେ କ୍ରମଶଃ ହାଲିଆ ଜଣାପଡୁଥିଲେ । ନାତିନାତୁଣୀମାନେ ମୋତେ ଡାକିଲେ ସେମାନଙ୍କ ସାଥିରେ ଯିବାକୁ । ସେମାନେ ପ୍ରାୟ ଦୌଡ଼ି ଦୌଡ଼ି ଯାଉଥା'ନ୍ତି । ମୁଁ ସ୍ତ୍ରୀଙ୍କୁ ଝିଅମାନଙ୍କ ଗହଣରେ ଆରାମରେ ଆସିବାକୁ ଦେଇ ନାତିମାନଙ୍କ ସହ ସେହି ପାହାଡ଼ ଉପରକୁ ଉଠିଯାଉଥିଲି । ସୁରକ୍ଷା କର୍ମୀ କହିଲା, "ସେଠାକୁ ନ ଯାଇ ତିଆରି ହୋଇଥିବା କଂକ୍ରିଟ୍ ପୋଲ ଦେଇ ଆଗରେ ଲୁହା ବାଡ଼ ପାଖରେ ଠିଆହେଲେ ଜଳପ୍ରପାତ ଦିଶିବ ।" ସେଇକଥା କଲୁ । ବିରାଟ ଜଳପ୍ରପାତ ସେହି ପର୍ବତରୁ ଡେଇଁପଡୁଛି ହଜାର ହଜାର ଫୁଟ୍ ତଳକୁ । ପାଣିର ଲହଡ଼ି ମାଡୁଛି ଜଳଭାଗରେ । ଏହି ଯାଗାରେ ମେଘମାଳା କିମ୍ବା ମେଘ ନ ଥିଲା ।

ଅପରାହ୍ଣ ସୂର୍ଯ୍ୟର କିରଣ ସମୁଦାୟ ଅଞ୍ଚଳରେ ପଡ଼ିଥିଲା । ଜଳପ୍ରପାତର ଅପୂର୍ବ ଦୃଶ୍ୟ ମନକୁ ଆନନ୍ଦ ବିଭୋର କଲା । ଆମେମାନେ ସେଠାରେ ପ୍ରାୟ ଦୁଇଘଣ୍ଟା ଧରି ରହିଗଲୁ । ପ୍ରକାଣ୍ଡ ସ୍ଥାନକୁ ଘେରିରଖି ବନ୍ଧ ପ୍ରସ୍ତୁତ କରାଯାଇଛି । ଫୁଲଗଛ ଏବଂ ଛୋଟ ଗଛମାନ ଭର୍ତ୍ତି ହୋଇଛି । ନଦୀରେ ବନ୍ଧ ପକାଇ ଦିଆଯାଇଛି । ବିଚିତ୍ର ପ୍ରକାର ସ୍ଥାନର ଚେହେରା କରି ମଝି ଅଞ୍ଚଳରେ ଗୋଟିଏ ସିମେଣ୍ଟ ଗୋଲାକାର ମନ୍ଦିର ସଦୃଶ କରାଯାଇଛି । ସେଥିରେ ଗୋଲ ସ୍ତମ୍ଭ ଦିଆଯାଇଛି ।

ଦିନ ସେତେବେଳକୁ ପ୍ରାୟ ୩.୩୦ ମିନିଟ୍ ହେବ । ଘରୁ ନେଇଥିବା ଖେଚୁଡ଼ି, ତରକାରି, ଖଟା ଖୋଲିଲୁ । ଗୋଟିଏ ଗୋଟିଏ ଖଲି ପକାଇ ଖାଦ୍ୟପଦାର୍ଥ ବଢ଼ାଗଲା । ନମିତା ଏବଂ ମମିତା ଖାଦ୍ୟ ପରିବେଷଣ କଲେ । ଆମ ସାଥିରେ ଟ୍ୟାକ୍ସିର ଡ୍ରାଇଭର ରବି ସିଂ ମଧ୍ୟ ବସିଲା । ସମସ୍ତେ ପେଟ ପୂରାଇ ଖେଚୁଡ଼ି

ଖାଇଲୁ । ବହୁତ ତୃପ୍ତି ଲାଗିଲା । ଏଥିପାଇଁ ଡଲିକୁ ମନେ ମନେ ଧନ୍ୟବାଦ ଦେଉଥିଲୁ । ସମସ୍ତଙ୍କର ମୁହଁରେ ହସର କ୍ଷୀଣ ଛଟା ବାହାରି ଆସୁଥିଲା ।

ପିଲାମାନଙ୍କୁ ଧରି ସେଠାରେ ନିର୍ମିତ ହୋଇଥିବା ପାର୍କକୁ ଗଲି । ପିଲାଙ୍କ ପାଇଁ ଖେଳିବାପାଇଁ ଝୁଲା ଦୋଳି ଓ ଢେଙ୍କି ଥିଲା । ନାତିନାତୁଣୀମାନେ ପ୍ରାୟ ଅଧଘଣ୍ଟା ଧରି ଆନନ୍ଦରେ ଖେଳିଲେ । ସନ୍ଧ୍ୟା ହେବାକୁ ଆଉ ମାତ୍ର କିଛି ସମୟ ବାକି ଥିଲା । ପ୍ରାୟ ପାଞ୍ଚଟା ବେଳକୁ ଗାଡ଼ି ଦୁଇଟା ଘରମୁହାଁ ହେଲେ । ଆମେମାନେ ମଧ୍ୟ କ୍ଳାନ୍ତ ହୋଇପଡ଼ିଲୁ । ଟ୍ୟାକ୍ସି ଡ୍ରାଇଭର କହିଲା, "ସନ୍ଧ୍ୟା ୬.୩୦ ମିନିଟ୍ ସୁଦ୍ଧା ଆଉ ଦୁଇଟି ଜଳପ୍ରପାତ ବାଟରେ ପଡ଼ିବ ଦେଖିବା ।" ତା'ର ଉତ୍ସାହ ଆମେ କାଟି ପାରିଲୁନି । ନିଜର ଲୋକପରି ସବୁ ଦର୍ଶନୀୟ ସ୍ଥାନ ଦେଖାଇ ଦେବାକୁ ଚାହୁଁଛି । ଗାଡ଼ିର ଗତି ସେ ବଢ଼ାଇଦେଲା । ସେଠାରୁ ମାତ୍ର ଦଶ କିଲୋମିଟର ବାଟ । ପର୍ବତ କଟା ହୋଇ ରାସ୍ତା ହୋଇଛି । ଦଶ କି.ମି. ରାସ୍ତାକୁ ପ୍ରାୟ ଅଧଘଣ୍ଟାଏ ଲାଗିବ । ପାଞ୍ଚଟା କୋଡ଼ିଏ ମିନିଟ୍ । ଗାଡ଼ି ଦୁଇଟି ସେହି ଉଚ୍ଚ ପର୍ବତ ଦେଇ ଖାଲ, ଢିପ, ମାଟି ରାସ୍ତାରେ ଚାଲିଲା । ଅତି ଉଚ୍ଚ ପର୍ବତମାନ ଦେଖି ମନରେ ବିସ୍ମୟ ଏବଂ ଭୟ ମଧ୍ୟ ସଞ୍ଚାରିତ ହେଉଥିଲା । ଆମେ ପ୍ରାୟ ୬ଟା ବେଳକୁ ସେହି ସ୍ଥାନରେ ପହଞ୍ଚିଗଲୁ । ଟିକେଟ୍ କିଣି ଭିତରେ ପଶିଲୁ । ସୂର୍ଯ୍ୟ ପ୍ରାୟ ଅସ୍ତ ଯିବା ଉପରେ । ସେହି ଅସ୍ତଗାମୀ ସୂର୍ଯ୍ୟର ସୁନେଲି କିରଣ ଆସି ପଡ଼ିଛି ସେହି ବିରାଟକାୟ ଜଳପ୍ରପାତରେ । ପାଖାପାଖି ଦୁଇଟି ଜଳପ୍ରପାତ । ହଜାର ବର୍ଷ ଧରି ପାଣି ତଳକୁ ଫୋପାଡ଼ି ଚାଲିଛନ୍ତି ଦିନରାତି ଧରି । କ୍ଳାନ୍ତ ଲାଗୁନି ସେମାନଙ୍କୁ । ତା'ର ଭୀଷଣ ଗର୍ଜନ ଏବେ ମଧ୍ୟ କାନରେ ଗୁଞ୍ଜରଣ କରୁଛି । ମନୋରମ ଫଟୋମାନ ଉଠାଗଲା । କିଛି ଜଳଖିଆ ସେହି ପାଖ କ୍ୟାଣ୍ଟିନ୍‌ରେ ଖାଇନେଲୁ । ପିଲାମାନେ କୁରୁକୁରି, ଫ୍ରାଏ ଇତ୍ୟାଦି ଖାଇଲେ । ହୃଦୟଗ୍ରାହୀ ବିରାଟ ଜଳପ୍ରପାତ ଦେଖି ଆନନ୍ଦ ପାଇଲୁ । ଏହି ଜଳପ୍ରପାତରୁ ଅସରନ୍ତି ପାଣି ତଳକୁ ପଡ଼ି ବିରାଟ ନଈରେ ପରିଣତ ହୋଇଛି ।

ଗାଡ଼ି ଦୁଇଟି ଗୃହାଭିମୁଖୀ ହେଲା । ସନ୍ଧ୍ୟା ହୋଇଯାଇଥିଲା । ଘରେ ପହଞ୍ଚିଲା ବେଳକୁ ରାତି ଆଠଟା ବାଜି ଯାଇଥିଲା । ଡଲି ଆମର ଫେରିବା ବାଟକୁ

ଚାହିଁଥିଲା । ଶୀଘ୍ର ଶୀଘ୍ର ରାତ୍ରିଭୋଜନ ସାରି ଆମେମାନେ ନିଦ୍ରାଦେବୀଙ୍କ କୋଳରେ ଆଶ୍ରୟ ନେଲୁ ।

## ଶିଲଂ ପରିଦର୍ଶନ

ତା'ପରଦିନ ଶିଲଂ ସହର ଦେଖିବା ଯୋଜନା ରହିଲା । ଆମେ ସେଦିନ ସକାଳେ ଖୁବ୍ ଶୀଘ୍ର ଉଠିପଡ଼ିଲୁ ; କିନ୍ତୁ ପିଲାମାନେ ଉଠିପାରିଲେନି । ତେଣୁ ଠିକ୍ ହେଲା , ପୁଣି ସେହି ଟ୍ୟାକ୍ସିବାଲା ଆସିବ । ଦିନ ୩ଟାବେଳେ ଶିଲଂ ସହର ବୁଲାଇବ ଏବଂ ଦୋକାନରୁ କିଛି ପୋଷାକପତ୍ର ଏବଂ ଶିଲଂ ପ୍ରସ୍ତୁତ ଜିନିଷ କିଣାଯିବ । ସକାଳୁ ଜଳଖିଆ ସରିଲା ପରେ ବିଶୁବାବୁଙ୍କର ଗାଡ଼ିରେ ପିଲାମାନଙ୍କ ସହ ତାଙ୍କର ବିଶ୍ୱବିଦ୍ୟାଳୟ ପରିସର ଭିତରକୁ ବୁଲିବାକୁ ଗଲୁ । ବିଶ୍ୱମୋହନ ମିଶ୍ର (ଅର୍ଥନୀତିର ପ୍ରଫେସର) ଥିବାରୁ ପ୍ରଥମେ ତାଙ୍କର କାର୍ଯ୍ୟାଳୟ ଭିତରକୁ ଗଲୁ । ବହୁତ ପରିଷ୍କାର ପରିଚ୍ଛନ୍ନ ବିରାଟ ହଲ୍‌ରେ ରୁମ୍‌ମାନ ହୋଇଛି । ତା' ଭିତରେ ଉପଯୁକ୍ତ ବହିପତ୍ର ଏବଂ କମ୍ପ୍ୟୁଟର ଅଛି । ମୁଖ୍ୟ ପ୍ରଫେସରଙ୍କର ଦାମିକା ଟେବୁଲ୍ ଏବଂ ଚୌକି ପଡ଼ିଛି । ଅତିଥିମାନଙ୍କ ପାଇଁ ସୋଫାସେଟ୍ ପଡ଼ିଛି । ମିଟିଂ ହଲ୍ ଦେଖିଲୁ । ସୁନ୍ଦର ସାଜସଜା ଏବଂ ବଡ଼ ହଲ୍‌ରେ ଏକାଥରକେ ଦେଢ଼ଶହ ବ୍ୟକ୍ତିଙ୍କର ବସିବା ବ୍ୟବସ୍ଥା ହୋଇଛି ।

ବିଶ୍ୱବିଦ୍ୟାଳୟ ପରିସରରେ ଥିବା ବିଜ୍ଞାନ ମିଉଜିୟମ୍ ଦେଖିଲୁ । ସବୁ ଜିନିଷ ବିଜ୍ଞାନ ସହିତ ଯୋଡ଼ି ହୋଇଥିଲା । ପାର୍କରେ ଥିବା ଭିନ୍ନ ଭିନ୍ନ ଖେଳିବା ଏବଂ ଦେଖିବାର ବସ୍ତୁମାନ ବିଜ୍ଞାନଭିତ୍ତିକ ଥିଲା । ଛୋଟ ସାଇଜର୍ ପ୍ଲାନଟୋରିୟମ୍ କନାରେ ତିଆରି ହେବାର ଗୃହ ମଧ୍ୟ ଦେଖିଲୁ । ଆମେମାନେ ଗୁରୁଣ୍ଡି ଗୁରୁଣ୍ଡି ସେଇ କଳା କନାର ଆବରଣଯୁକ୍ତ ଅସ୍ଥାୟୀ ଭାବେ ତିଆରି ହୋଇଥିବା ତମ୍ବୁ ତଳକୁ ଗଲୁ । ଗୋଟିଏ ଆଷ୍ଟ୍ରୋନୋମର୍ ମେସିନ୍ କମ୍ ଉଚ୍ଚର ପାଞ୍ଚଫୁଟ୍ ଉଚ୍ଚତାରେ ଥିଲା । ପମ୍ପ୍ ସାହାଯ୍ୟରେ ସେହି ମୋଟା କଳା କନାକୁ ବାୟୁ ଭର୍ତ୍ତି କରିବାରେ ଏହା ଗୋଟିଏ ଅନ୍ଧକାର ଆକାଶର ଛାତ ପରି ପ୍ରତୀୟମାନ ଥିଲା । ଏହାର ଉଚ୍ଚତା ମାତ୍ର ନଅ ଫୁଟରୁ ଦଶ ଫୁଟ ହୋଇଥିଲା । ଆମମାନଙ୍କୁ ଧୀରସ୍ଥିର ହୋଇ ବସି ଆକାଶ ପରି ସ୍ଥାନକୁ ଚାହିଁବାକୁ ସେହି ଇନ୍‌ଷ୍ଟ୍ରକ୍‌ଟର୍ ନିର୍ଦ୍ଦେଶ ଦେଲେ । କିନ୍ତୁ

ସମୟ ପରେ ଅନ୍ଧକାରକୁ ଭେଦକରି ଅସଂଖ୍ୟ ତାରାପୁଞ୍ଜ ଦେଖାଦେଲେ ସେଇ କଳାକନାର ନୀଳ ଆକାଶରେ । ଇନ୍‌ଷ୍ଟ୍ରକ୍‌ଟର ଇଂରାଜୀରେ ବୁଝାଉଥିଲେ ନକ୍ଷତ୍ର, ଚନ୍ଦ୍ର, ସୂର୍ଯ୍ୟଙ୍କର ଚଳପ୍ରଚଳନ ଏବଂ ଆକାଶରେ ଗ୍ରେଟ୍‌ବିଅର୍ (ଧ୍ରୁବତାରା-ମଣ୍ଡଳୀ) ଏବଂ ପୋଲଷ୍ଟାର (ଧ୍ରୁବତାରା)ର ଅବସ୍ଥିତି । ଭଲ ଲାଗିଲା ପ୍ରାୟ ଅଧଘଣ୍ଟାର କାର୍ଯ୍ୟକ୍ରମ । ଆଲୁଅ ହୋଇଗଲା । ଆମେ ସେହି ରୁମ୍‌ରୁ ବାହାରି ଆସିଲୁ । ଆମ ପରେ ପରେ ସେଇ କଳା ପରଦାଟି ମାତ୍ର ପାଞ୍ଚଫୁଟ ଉଚ୍ଚରେ ଥିବା ଯନ୍ତ୍ର ଉପରେ ଅଷ୍ଟବକ୍ର ଗୋଲାକାର ହୋଇ ପଡ଼ିରହିଲା । ଇନ୍‌ଷ୍ଟ୍ରକ୍‌ଟରଙ୍କୁ ଧନ୍ୟବାଦ ଦେଇ ଆମେମାନେ ନିଷ୍କ୍ରାନ୍ତ ହେଲୁ ।

ତଳ ରୁମ୍‌କୁ ଆସି ଓଜନ ମେସିନ୍ ଉପରେ ଠିଆ ହେଲୁ । ବିଚିତ୍ର ଆଧୁନିକ ମେସିନ୍ । ଆମ ଶରୀରର ଓଜନ ନିଖୁଣ ଭାବରେ କମ୍ପ୍ୟୁଟରରେ ବାହାରିଲା । ଏଥିସହିତ ଆମ ଦେହର ମାଂସ ହାଡ଼ ଭାଗ ସହିତ ଦେହରେ ଥିବା ପାଣି ଅଂଶ ବାହାରିଥିଲା । ଜୀବନରେ ପ୍ରଥମ ଥର ପାଇଁ ଏପରି ଓଜନ ମେସିନର ସଠିକ୍ ମାପ ଦେଖି ଆଶ୍ଚର୍ଯ୍ୟ ହେଲି । ଆମେ ସମସ୍ତେ ଓଜନ ହେଲୁ ଏବଂ ଦେହର ହାଡ଼, ମାଂସ ଓ ପାଦ ଭାଗ ଜାଣିପାରିଲୁ । ମନୁଷ୍ୟ ଦେହରେ ପାଣିର ଭାଗ ପଚାଶ ଭାଗକୁ ସତୁରି ଭାଗ ମଧ୍ୟରେ ରହିବା ଦରକାର । ବାହାରକୁ ଆସିଲୁ । ରମେଶ ମଧ୍ୟ ଆମ ସାଙ୍ଗରେ ଥିଲେ । ପିଲାମାନଙ୍କୁ ପ୍ରାଞ୍ଜଳ ଭାବେ ବୁଝାଉଥିଲେ ।

ବାରଟା ବାଜିଯାଇଥିଲା । କ୍ୱାର୍ଟରକୁ ଫେରିଆସିଲୁ । ସମସ୍ତେ ସାଥିହୋଇ ମଧ୍ୟାହ୍ନ ଭୋଜନ ଶେଷକରି ସାମାନ୍ୟ ବିଶ୍ରାମ କଲୁ ।

ଟ୍ୟାକ୍ସି ଆସିଯାଇଥିଲା । ଠିକ୍ ଦିନ ତିନିଟାରେ ଆମ୍ଭେମାନେ ଦୁଇଟି ଗାଡ଼ିରେ ବିଭକ୍ତ ହୋଇ ଆଗପଛ ଚାଲିରୁ ଶିଲଂ ସହର ଦେଖିବା ଉଦ୍ଦେଶ୍ୟରେ । ଆମେମାନେ ବିଶ୍ୱବିଦ୍ୟାଳୟ ପରିସର ମଧ୍ୟ ଶିଲଂ ସହର ଭିତର ଏକ ପାଖରେ ଦେଖିଲୁ । ଆମେମାନେ ମୁଖ୍ୟ ରାସ୍ତାରେ ଗଲୁ । ଭାରତ ସରକାରଙ୍କର ସ୍ଥଳ ସେନାର ଯବାନ୍‌ମାନଙ୍କର ବାଟାଲିଆନ୍ ରହୁଥିବା ସ୍ଥାନ ଦେଖିଲୁ । ସାରା ସହର ସ୍ଥଳସେନାମାନଙ୍କର କଡ଼ା ନଜରରେ ଥିଲାପରି ଜଣାପଡ଼ିଲା । ଏମାନେ ବୋଡ଼ମାନଙ୍କର ସନ୍ତ୍ରାସମୂଳକ କାର୍ଯ୍ୟକଳାପ ଏବଂ ବିଦେଶୀ ସନ୍ତ୍ରାସବାଦ ଉପରେ

ତୀକ୍ଷ୍ଣ ଦୃଷ୍ଟି ଦେଇ ପ୍ରତିହତ କରିଥା'ନ୍ତି । ଭାରତର ସୀମାନ୍ତ ଅଞ୍ଚଳ ହେଉଛି ମେଘାଳୟ । ବଙ୍ଗଳାଦେଶକୁ ଲାଗିଛି । ତେଣୁ ବାହ୍ୟ ଆକ୍ରମଣକୁ ଆଖି ଆଗରେ ରଖି ସୈନ୍ୟବାହିନୀ ମୁତୟନ ହୋଇଛନ୍ତି । ଚାଇନା, ବଙ୍ଗଳାଦେଶର ଅନୁପ୍ରବେଶ-କାରୀଙ୍କ ସହ ଏବଂ ସନ୍ତ୍ରାସବାଦୀଙ୍କ ସହ ଘନ ଘନ ଲଢ଼େଇ ଚାଲିବାରେ ବର୍ତ୍ତମାନ ଏହି ରାଜଧାନୀ ଶିଲଂ କିଛିଟା ଶାନ୍ତିରେ ଆଗେଇଛି । ଆମେମାନେ ଅଙ୍କାବଙ୍କା ଏବଂ ଉଚ୍ଚ-ନୀଚ ରାସ୍ତା ଦେଇ ସହରର ମୁଖ୍ୟ ବଜାରରେ ପହଞ୍ଚିଲୁ । ଶିଲଂ ହେଉଛି ପାର୍ବତ୍ୟସ୍ଥଳ । ତେଣୁ ବହୁତ ସ୍ଥାନକୁ କଟାକଟି କରି ସମତଳ କରିବାକୁ ଚେଷ୍ଟା କରାଯାଉଛି । ପାହାଡ଼ କଟାଯାଇ ସ୍ତର ସ୍ତର କରି କୋଠାଘର, ଅଫିସ୍ ଏବଂ ସ୍କୁଲ, କଲେଜ ତିଆରି ହୋଇଛି । ଏହାର ସେକ୍ରେଟେରିଏଟ୍ - ଆସେମ୍ବ୍ଲି ହଲ୍ ଏବଂ ମନ୍ତ୍ରୀମାନଙ୍କର ବାସଭବନ ଦେଖିଲୁ । ବିସ୍ତୃତ ଅଞ୍ଚଳରେ ଏହା ତିଆରି ହୋଇଛି । ନାନାପ୍ରକାର ଫୁଲ, ଫଳଗଛମାନ କ୍ୱାର୍ଟରମାନଙ୍କରେ ରୋପଣ କରାଯାଇ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ବୃଦ୍ଧି କରାଯାଇଛି । ପରିଷ୍କାର ପରିଚ୍ଛନ୍ନ ସହର । ଗଳିଗୁଡ଼ିକ ବହୁତ ଯାଗାରେ ଅଣଓସାରିଆ ଅଛି । ଗଳି ଦେଇ ମାତ୍ର ଦୁଇଟି କାର୍ କଷ୍ଟରେ ଯାଇପାରିବ । ଏହି ସହରର ଗଠନ ଉଚ୍ଚ ଏବଂ ନୀଚ ଯାଗା ହୋଇଥିବାରୁ କେବଳ କାର୍ ହିଁ ଏକମାତ୍ର ବ୍ୟବସ୍ଥା । ଅଟୋରିକ୍ସା ବେଶୀ ପ୍ରଚଳନ ହୋଇଛି । ସାଇକେଲ୍ କିଛିଟା ଦେଖାଯାଏ; କିନ୍ତୁ ବେଶୀ ମଟରସାଇକେଲ୍ ଦେଖିବାକୁ ମିଳେ । ଗମନାଗମନ ଟିକିଏ ଅସୁବିଧା ଲାଗେ ।

ସହରବୁଲା ଚାଲିଲା ସନ୍ଧ୍ୟା ୬ଟା ପର୍ଯ୍ୟନ୍ତ । ଛୋଟ ସହର । ବୁଲା ସରିଲା ପରେ ଗୋଟିଏ ଲୁଗାଦୋକାନ ଗଲୁ ସମସ୍ତେ । ବିଶୁବାବୁଙ୍କର ସ୍ତ୍ରୀ ଡଲି ପିଲାମାନଙ୍କ ପାଇଁ କିଛି ଡ୍ରେସ୍ କିଣିଲା, ଅନ୍ୟମାନଙ୍କ ପାଇଁ ମଧ୍ୟ । ମୋ'ପାଇଁ ସାର୍ଟ ଏବଂ ମୋର ସ୍ତ୍ରୀଙ୍କ ପାଇଁ ଶାଢ଼ୀ କିଣିଲା । ଏଥି ଭିତରେ ଗୋଟିଏ ଘଣ୍ଟା କଟିଗଲା । ପରେ ଅନ୍ୟ ଦୋକାନକୁ ଗଲୁ । ଗାଡ଼ି ପାର୍କିଂ ପାଇଁ ବିଶେଷ ଅସୁବିଧା ହେଲାନି । ପାହାଡ଼ କଟା ହୋଇ ଦୁଇ ମହଲାର ଗାଡ଼ି ପାର୍କିଂ ତିଆରି ହୋଇଛି । ସେଠି ଗାଡ଼ି ପିଛା ତିରିଶି ଟଙ୍କା ଦେଇ ଗାଡ଼ି ରଖିଲୁ । ସହରର ମୁଖ୍ୟ ରାସ୍ତାରେ ଥିବା ସମସ୍ତ ଦୋକାନ ଦେଖିବାର ସୁଯୋଗ ପାଇଲୁ । ନିଜର ମନମୁତାବକ ଶିଲଂ ତିଆରି ଜିନିଷମାନ କ୍ରୟ କଲୁ । ପରିବା ଏବଂ ମାଛ, ମାଂସ ବଜାରକୁ ଗଲୁ । ପରିବା

ଭିତରେ ଏଠାକାର କଞ୍ଚା କଦଳୀ, ବାଇଗଣ, ଶିମ୍ବ ପ୍ରସିଦ୍ଧ। ଆଳୁ, ପିଆଜ, ପୋଟଳ ପ୍ରଚୁର ପରିମାଣରେ ବାହାରୁ ଆମଦାନୀ ହୁଏ। କାକୁଡ଼ି, ବିଲାତି ବାଇଗଣ ପାଖାପାଖି ଅଞ୍ଚଳରେ ପ୍ରଚୁର ହୁଏ। କଖାରୁ ଜାତୀୟ ଜିନିଷ କମ୍ ମିଳେ। ପରିବା କିଣିସାରିବା ପରେ ମାଛ, ମାଂସ ବଜାରକୁ ଗଲୁ। ଗୋଟିଏ ପ୍ରକାଣ୍ଡ କୋଠାରେ ବିଭିନ୍ନ ବିଭାଗ ରହିଛି। ମାଛ ଧାଡ଼ି ପ୍ରାୟ ଚାରୋଟି ଅଛି। ଶତାଧିକ ଲୋକ ବିଭିନ୍ନ ପ୍ରକାର ମାଛ - ରୋହି, ଭାକୁର, ଚିଙ୍ଗୁଡ଼ି, ଛୋଟ ମାଛ ଇତ୍ୟାଦି ଥିଲା। ସ୍ତ୍ରୀଲୋକମାନେ ବେଶୀ ସଂଖ୍ୟାରେ ମାଛ ବିକୁଥା'ନ୍ତି। ମୂଲେଇ ରେଟ୍ ମଧ୍ୟ ପ୍ରଚଳନ ଅଛି।

ଏହାପରେ ଛେଳି ମାଂସ ପ୍ରାୟ ଦୁଇଟି ଧାଡ଼ିରେ ଅଛି। ଶହେ ହେବ ବିକାଳି ଅଛନ୍ତି। ହିନ୍ଦୁଲୋକ ବହୁତ କମ୍। ଖ୍ରୀଷ୍ଟିଆନ୍‌ମାନଙ୍କ ଅଧିକା ସଂଖ୍ୟା।

ଏହାପରେ ଗାଇଗୋରୁଙ୍କ ମାଂସର ପ୍ରାୟ ଦୁଇଧାଡ଼ି ଅଛି। ପ୍ରାୟେ ଶହେ ବିକାଳି ଅଛନ୍ତି। ଗାଈ-ଗୋରୁଙ୍କର ମାଂସକୁ ଛୋଟ ଖଣ୍ଡରେ ଓହଳା ଯାଇଥାଏ। ଖ୍ରୀଷ୍ଟିଆନ୍ ଏବଂ ମୁସଲମାନ ସଂପ୍ରଦାୟର ଲୋକ ଆନନ୍ଦରେ ମାଂସ କିଣି ନେଉଥା'ନ୍ତି। ଏହାପରେ କିଛି ଦୂରରେ ଅନ୍ୟ ଏକ କୋଠାରେ କୁକୁଡ଼ା ମାଂସ ବିକା ହେଉଛି। ଏଠି ହିନ୍ଦୁ, ଖ୍ରୀଷ୍ଟିଆନ୍ ଏବଂ ମୁସଲମାନମାନେ ଏକତ୍ର ହୋଇଥା'ନ୍ତି। କାହା ମନରେ କାହାପାଇଁ ଦ୍ୱିଧା ନାହିଁ, ଘୃଣା ନାହିଁ। ଏକାଠି ରହିବାର ଆନନ୍ଦ ଆଣନ୍ତି ସେମାନେ। ସମସ୍ତଙ୍କର ମଧ୍ୟରେ ଖ୍ରୀଷ୍ଟିଆନ୍ ସଂପ୍ରଦାୟର ବେଶଭୂଷା, ଚାଲିଚଳନ ଅନ୍ୟମାନଙ୍କଠାରୁ ପୂରା ଅଲଗା ଜଣାପଡ଼େ। ଅଧିକ ପରିଷ୍କାର ଏବଂ ରୁଚିସଂପନ୍ନ ବେଶଭୂଷା ହୋଇଥା'ନ୍ତି। ସେମାନେ ଫ୍ରକ୍ ଭଳି ପୋଷାକ ପସନ୍ଦ କରିଥା'ନ୍ତି। ସ୍ଥାନୀୟ ଆଦିମ ଅଧିବାସୀମାନେ ହିନ୍ଦୁ, ଶବର, କନ୍ଧ ଧର୍ମ ପରିବର୍ତ୍ତନ କରି ଖ୍ରୀଷ୍ଟିଆନ୍ ହୋଇଛନ୍ତି ପାଦ୍ରୀମାନଙ୍କର ପ୍ରରୋଚନାରେ। ସ୍ୱାଧୀନତା ପୂର୍ବରୁ ମେଘାଳୟରାଜ୍ୟରେ ଏବେ ମଧ୍ୟ ଧର୍ମାନ୍ତକରଣ ଚାଲିଛି ବିନା ଦ୍ୱିଧାରେ।

ଏହି ସହରର ବିଶେଷତଃ ହେଲା— କେଉଁ ରାସ୍ତାକଡ଼ରେ ଉଠାଦୋକାନୀ ନାହାନ୍ତି। ସମସ୍ତେ ପ୍ରାୟ ସରକାରୀ ନିର୍ଦ୍ଧାରିତ ସ୍ଥାନରେ ରହି ବ୍ୟବସାୟ କରନ୍ତି। ଏଠାରେ ସମସ୍ତେ କିଛି ନା କିଛି କାର୍ଯ୍ୟକରି ଜୀବିକା ଅର୍ଜନ କରିଥା'ନ୍ତି। ଜଙ୍ଗଲଜାତ

ସାମଗ୍ରୀରେ ସୁନ୍ଦର ବ୍ୟବସାୟ କରନ୍ତି ସେମାନେ । କେନ୍ଦ୍ର ସରକାରଙ୍କର ଅଧିକ ଗ୍ରାଣ୍ଟ୍ ଏହି ସୀମାନ୍ତ ରାଜ୍ୟକୁ ମିଳେ । ରାସ୍ତାଘାଟ, କୋଠାଘର ଇତ୍ୟାଦି ସୁନ୍ଦର ଭାବେ ତିଆରି ହୋଇଛି । ଶିକ୍ଷାର ମାନ ଉନ୍ନତି କରିବାକୁ ସରକାର ଦୃଢ଼ ପଦକ୍ଷେପ ନେଉଛନ୍ତି । ଶିଲଂ ହେଉଛି ଥଣ୍ଡା ସ୍ଥାନ । ତେଣୁ ପ୍ରତିଦିନ ଶହ ଶହ ପର୍ଯ୍ୟଟକ ଶିଲଂ ଏବଂ ଚେରାପୁଞ୍ଜିର ଜଳପ୍ରପାତଗୁଡ଼ିକ ଦେଖିବାପାଇଁ ଆସନ୍ତି ।

ସହରର ଆୟତନ ପରିସୀମା ହିସାବରେ ଜନଗହଳି ବହୁତ କମ୍ । କ୍ରମଶଃ ସହର ଉନ୍ନତିମୂଳକ କାର୍ଯ୍ୟରେ ଭରପୂର ହେଉଛି । ପ୍ରାକୃତିକ ଦୃଶ୍ୟରେ ଏହି ସହର ସୀମା ଆବଦ୍ଧ ।

ଏହାପରେ ଆମେମାନେ ସହରଠାରୁ ମାତ୍ର ଦଶ କି.ମି.ସ୍ଥାନ ଗଲୁ । ଉଚ୍ଚ ପର୍ବତ ଉପରେ ଏହି ସ୍ଥାନ ଅବସ୍ଥିତ । ଏଠାରୁ ଶିଲଂ ସହରର ସନ୍ଧ୍ୟାକାଳୀନ ମନୋରମ ଦୃଶ୍ୟ ଦେଖାଯାଏ । ସାରା ଶିଲଂ ସହରର ଚମତ୍କାର ଦୃଶ୍ୟ ଦେଖିବାକୁ ମିଳିଲା । ଆଲୋକଶୋଭିତ ସହରର ଅବସ୍ଥିତି ଜଣାପଡୁଥିଲା । ଉଚ୍ଚତମ ପ୍ରାସାଦଗୁଡ଼ିକ କ୍ଷୁଦ୍ର ଜଣାପଡୁଥିଲା । ବିଦ୍ୟୁତ୍ ଲାଇଟ୍‌ଗୁଡ଼ିକ ଛୋଟ ଲଣ୍ଠନ ପରି ଜଣାପଡୁଥିଲା । ଏହି ଉଚ୍ଚ ସ୍ଥାନରେ ପାଣିର ଟାଙ୍କି (ବଡ଼ ବଡ଼) ମାନ ନିର୍ମିତ ହୋଇ ସହରକୁ ଜଳଯୋଗାଣ କରାଯାଉଥିଲା ।

ଏହାପରେ ସହରର ନିମ୍ନ ଦେଶରେ ନିର୍ମିତ ପାର୍କ ଦେଖିଲୁ । ରାତି ଆଠଟା ବାଜି ଯାଇଥିଲା । ବାଧ୍ୟହୋଇ ସମସ୍ତେ ଘରକୁ ଫେରିଲୁ । କାଲି ସକାଳୁ ଆଠଟା ଭିତରେ ଶିଲଂ ଛାଡ଼ି ଗୌହାଟୀକୁ ଯାଇ କାମାକ୍ଷା ଦେବୀଙ୍କୁ ଦର୍ଶନ କରିବାର ଯୋଜନା ହୋଇଥିଲା ।

## ଗୌହାଟୀ ପରିଦର୍ଶନ

ଶିଲଂରେ ଆମର ରହଣି ଶେଷ ହୋଇଗଲା । ରାତିରେ ଜିନିଷପତ୍ର ବନ୍ଧାବନ୍ଧି କଲୁ ରାତ୍ରି ଭୋଜନ ପରେ । ଡଲିର ମନରେ କିଛିଟା ଭାବନା ଥିଲା । ଭାଇନା (ବୁନୁ) ଆଉ ଭାଉଜ (ମମିତା) ଏବଂ ପିଲାମାନେ ଆଉ କିଛି ଦିନ ରହିଥା'ନ୍ତେ । ବାହାଘରର ଦଶବର୍ଷ ପରେ ପ୍ରଥମ କରି ଆସିଛନ୍ତି । ହିମାଂଶୁ (ବୁନୁ)ଙ୍କ ପକ୍ଷେ

ଅଧିକ ରହିବା ସମ୍ଭବ ନ ଥିଲା । ଓଡ଼ିଶା ସରକାରଙ୍କର ଆସିଷ୍ଟାଣ୍ଟ୍ ଇଞ୍ଜିନିୟରର କାମ ଦାୟିତ୍ୱ ବେଶୀ । ବହୁତ କହିଲା ପରେ ଏହି ଦଶଦିନ ଛୁଟି ମିଳିଛି । ବଦଳି ସମୟ । ରମେଶଙ୍କର ମଧ୍ୟ ସେହି ଅବସ୍ଥା । ଗ୍ରୀଡ୍‌କୋର ଫାଇନାନ୍ସ ବିଭାଗର ଜେନେରାଲ୍ ମ୍ୟାନେଜର । ଗୋଟିଏ ଦିନ ଅନୁପସ୍ଥିତ ସରକାର ସହିପାରେନା । ଦଶଦିନ ଛୁଟି ବହୁତ କଷ୍ଟରେ ମିଳିଛି । ପିଲାମାନେ ମଧ୍ୟ ଗ୍ରୀଷ୍ମଛୁଟିରେ ପାଠ ପଢ଼ିବାକୁ ହେବ । ଡଲିର କଥା ରହିଲାନି । ପୁନଶ୍ଚ କଲିକତାରୁ ଭୁବନେଶ୍ୱର ଏବଂ ଗୌହାଟୀରୁ କଲିକତା ପ୍ଲେନ୍‌ରେ ଫେରସ୍ତ ଟିକେଟ୍ ସମସ୍ତଙ୍କ ପାଇଁ ଆଗରୁ ହୋଇଯାଇଛି । ଅସୁବିଧାରେ ପଡ଼ିବାକୁ କେହି ଚାହିଁଲେନି । ଅନ୍ୟ କାରଣ ହେଲା— ବିଶୁବାବୁଙ୍କର ପୁଅ ରିକୋର ପ୍ଲସ୍ ଟୁ'ର ଶେଷବର୍ଷ । ଛଅ ଦିନ ହୋଇଗଲାଣି । ପାଠପଢ଼ାରେ ବ୍ୟାଘାତ ଘଟିପାରେ । ସମସ୍ତେ କଥାଟିକୁ ହୃଦୟଙ୍ଗମ କରୁଥିଲେ । ତେଣୁ ଆସନ୍ତାକାଲି ଗୌହାଟୀ ଫେରିଯିବାର ଆଉ କୌଣସି ବାଧା ରହିଲା ନାହିଁ ।

ବଡ଼ି ସକାଳୁ ଉଠି ସମସ୍ତେ ନିତ୍ୟକ୍ରମ ସାରି କିଛି ଜଳଖିଆ ଖାଇନେଲୁ । ସକାଳ ଆଠଟା ହୋଇଗଲା । ଦୁଇଟି ଟ୍ୟାକ୍ସି ଆସି ଦୁଆରେ ଠିଆହେଲା । ଘର କାମ କରୁଥିବା ଝିଅଟି କାନ୍ଦ କାନ୍ଦ ହୋଇ ପଚାରିଲା— ଆଉ କେବେ ଆସିବେ ? ଏହି ଝିଅଟି ଅବିବାହିତ ଏବଂ ପୂରା ସମୟ ଧରି ବିଶୁବାବୁଙ୍କ ଘରେ କାମ କରି ରହୁଛି । ନିଜର ଘର ପରି ପରିଷ୍କାର ପରିଚ୍ଛନ୍ନ ରଖେ । ରୋଷେଇ କରେ । ବିଶୁବାବୁ ଏବଂ ଡଲି ଦୁହେଁ ଚାକିରିଆ । ପୁଅ ଇକୋ ପାଠ ପଢ଼ିବାକୁ ସକାଳୁ ଯାଇ ସନ୍ଧ୍ୟାକୁ ଘରକୁ ଫେରେ । ପ୍ରଥମ ଦିନରୁ ଆମର ଗହଳି ଏବଂ ତା' ଉପରେ କାମର ଚାପ ଯୋଗୁଁ ଅତିଷ୍ଠ ହୋଇପଡ଼ିଲା । ପାଞ୍ଚଦିନ ଧରି ତା'ର ଅସହଯୋଗ ଭାବ ଆମମାନଙ୍କୁ ଏବଂ ଡଲିକୁ ବିବ୍ରତ କରିଥିଲା । ମମିତା-ନମିତା ଡଲି ସାଥିରେ ମିଶି ସବୁ କାମ କରିବାରୁ ସୁବିଧା ହେଲା ।

ମନେପଡୁଛି ପ୍ରଥମ ଦିନ ପହଞ୍ଚିଲୁ ସେଠାରେ ସନ୍ଧ୍ୟାରେ । ଖାଇବାପିଇବା କରୁ କରୁ ରାତି ଏଗାରଟା ହେଲା । ଝିଅଟିର ସବୁଦିନ ଖାଇବା ସମୟ ରାତି ୮.୩୦ରୁ ୯ଟା ମଧ୍ୟରେ । ତା'ପରେ ବାସନକୁସନ ଧୋଇ ଶୋଇବାକୁ ଯାଏ ତଳ ମହଲାକୁ । ଆଜି ତା'ର ଖାଇବା ଏବଂ ଶୋଇବାରେ ବ୍ୟାଘାତ ହେବାରୁ

ତା'ର ମନରେ ପ୍ରତିକ୍ରିୟା ଦେଖାଦେଲା । ରୁଷିକରି ଖାଇଲାନି । ସମସ୍ତେ ସେହି ଝିଅଟିର (ଏଲିସା)ର ବ୍ୟବହାରରେ କ୍ଷୁବ୍ଧ ହେଲେ ମଧ୍ୟ କିଛି କହିପାରିଲେନି । ତା'ପରଦିନ ଠାରୁ ଆମେମାନେ ତା'ର ଖାଇବା କଥା ୮.୩୦ ମିନିଟ୍ ସୁଦ୍ଧା ବୁଝିବାକୁ ଡଲି, ମମିକୁ କହିଲୁ । ତା'ର ତଳ ଘର ଶୋଇବାରେ କିଛିଟା ଅସୁବିଧା ହେଲା । ଆମେମାନେ ପ୍ରାୟ ସମସ୍ତେ ତଳ ଘର ଅନ୍ୟ ଦୁଇଟି ରୁମ୍‌ରେ ଶୋଉଥିଲୁ । ସେ ଆମମାନଙ୍କ ସହ ହସଖୁସିରେ ଜମାରୁ ସମୟ କାଟିଲାନି । ତା'ର ମନର ଭାବନାକୁ ବୁଝିଗଲୁ । ତେଣୁ ଆସିଲାବେଳେ ମୋର ସ୍ତ୍ରୀ ଏବଂ ଦୁଇଝିଅ କିଛି ଟଙ୍କା ଦେଲାବେଳେ ବୋଧହୁଏ ଝିଅଟି ଅନୁତପ୍ତ ହୋଇଛି ତା'ର ବ୍ୟବହାରରେ ବୋଲି ଭାବିଲି । ତା'ର ଛଳ ଛଳ ଆଖି ସେଇ କଥା କହୁଥିଲା — ମୋର ଦୋଷ କ୍ଷମା କରିବେ । ଶାନ୍ତଶିଷ୍ଟ ଝିଅଟା । ଆମ ସହିତ କିଛିଟା ଖାପ୍‌ଖୁଆଇ ଚଳିଥିଲା ୬ ଦିନ ପର୍ଯ୍ୟନ୍ତ । ଆମେ ଚାଲିଆସିଲା ପରେ ସେ ବିବ୍ରତ, ଅନୁତପ୍ତ ହୋଇପଡ଼ିଥିଲା ବିଚ୍ଛେଦରେ ।

ଦୁଇଟି ଟ୍ୟାକ୍ସିରେ ଭାଗ ବଣ୍ଟା ହୋଇ ବସିଲୁ । ସମସ୍ତଙ୍କ ଠାରୁ ଏକାଠି ବିଦାୟ ନେଇ ଆମେମାନେ ଗୌହାଟୀ ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲୁ । ଡଲି ଓ ବିଶୁବାବୁ ଦୁଆର ମୁହଁରେ ଛଳ ଛଳ ଆଖିରେ ଆମକୁ ବିଦାୟ ଦେଲେ । ଟ୍ୟାକ୍ସି ଦୁଇଟି ସେହି ପାହାଡ଼ିଆ ରାସ୍ତାରେ ଅଙ୍କାବଙ୍କା ହୋଇ ତଳକୁ ଗଡ଼ି ଚାଲିଲା । ଆମେ ଶିଲଂର ଚାରି ହଜାର ଫୁଟରୁ କ୍ରମଶଃ ତଳର ସମତଳ କ୍ଷେତ୍ରକୁ ଯିବାକୁ ଲାଗିଲୁ । ଉପର ଓ ତଳକୁ ଚାହିଁଲେ ମୁଣ୍ଡ ବୁଲାଇ ହୋଇଗଲା ପରି ଲାଗେ । ମନେହେଉଥାଏ ଟିକିଏ ଅସାବଧାନ ହେଲେ ପାହାଡ଼ର ଅତଳ ଗହ୍ୱରରେ ଟ୍ୟାକ୍ସି ସହିତ ଆମେ ଖସିପଡ଼ିବୁ; କିନ୍ତୁ ସାବଧାନତା ସହ ସେମାନଙ୍କର ଅଭ୍ୟାସଗତ ଡ୍ରାଇଭିଂ ଆମ ମନରେ ଦୃଢ଼ତା ଆଣି ଦେଉଥିଲା । ଜାତୀୟ ରାଜପଥ ଉପରେ ପେଟ୍ରୋଲ୍ ଟ୍ୟାଙ୍କ୍ ଏବଂ ମାଲବାହୀ ଟ୍ରକ୍‌ମାନ ଯିବାଆସିବା କରୁଥିଲା । ଦ୍ରୁତଗତିରେ ମୋଟର ସାଇକେଲ ଯାଉଥିଲା । ମନୁଷ୍ୟ କୌଣସି ପଥକୁ ଡରେନାହିଁ ବୋଲି ଜଣାପଡୁଥିଲା; କିନ୍ତୁ ଆମମାନଙ୍କର ଶଙ୍କା କ୍ରମଶଃ ଦୂର ହେବାକୁ ଲାଗିଲା । ପ୍ରାକୃତିକ ଦୃଶ୍ୟରେ ଭରପୂର ଉଚ୍ଚ ପର୍ବତମାଳା ଏବଂ ଗଭୀରତମ ଖାଲି ଅସଂଖ୍ୟ ସବୁଜ ବୃକ୍ଷର ସମାହାର ମନରେ ପ୍ରଫୁଲ୍ଲତା ଭରି ଦେଉଥିଲା । ପାହାଡ଼, ପର୍ବତ,

ନଦୀ, ନାଳ, ଘଞ୍ଚ ଜଙ୍ଗଲ ଆମମାନଙ୍କୁ ହସ ହସ ମୁହଁରେ ବିଦାୟ ଦେଉଥିଲେ। ପୁଣି ଆଉ କେବେ ଆସିବ ବୋଲି ପ୍ରାକୃତିକ ସୌନ୍ଦର୍ଯ୍ୟର ଆଭାସ ଦେଇ କହୁଥିଲେ, "ବନ୍ଧୁଗଣ! ଆମକୁ ଭୁଲିବ ନାହିଁ। କାଳ କାଳ ଧରି ଆମେମାନେ ଆମରି ସ୍ଥାନରେ ରହିଛୁ, ତୁମପରି ମନୁଷ୍ୟମାନଙ୍କ ହୃଦୟରେ ପ୍ରଫୁଲ୍ଲତା ଭରିଦେବାକୁ।

ଆଦିମ ଅଧିବାସୀମାନେ କ୍ରମଶଃ ଆଧୁନିକ ମଣିଷରେ ପରିଣତ ହୋଇଗଲେଣି। କିଛି ଅଧିବାସୀ ଆମର ଜଙ୍ଗଲ ଛାଡ଼ି ତୁମର ସେଇ ଚାକଚକ୍ୟ ସହରରେ ରହିଯାଉଛନ୍ତି। ସେମାନ ଜଙ୍ଗଲ ସଭ୍ୟତା ଭୁଲିଯାଉଛନ୍ତି। ତୁମର ଏହି ମନୁଷ୍ୟମାନେ କେତେବେଳେ ଲୁଚିଛପି ଜଙ୍ଗଲ ଅମୂଲ୍ୟ କାଷ୍ଠକୁ ଚୋରିକରି କାଟି ପକାଇ ଦୂର ଦେଶକୁ ରପ୍ତାନି କରନ୍ତି ପଇସା ଲୋଭରେ। କ୍ରୁର ମନୁଷ୍ୟର ଏହିଭଳି ଆମମାନଙ୍କୁ ବ୍ୟଥିତ କରେ। ଆମ ଜଙ୍ଗଲରୁ ବୃକ୍ଷରାଜି କ୍ରମଶଃ ସରିଆସେ। ପାହାଡ଼ପର୍ବତ ବୃକ୍ଷ ଶୂନ୍ୟ ହେବାକୁ ଲାଗେ। ପରିବେଶ ବିଗିଡ଼ିଯାଏ। ଘନ ଅଞ୍ଚଳରେ ଥିବା ଜଙ୍ଗଲି ଜନ୍ତୁମାନେ ଅକାଳରେ ମୃତ୍ୟୁବରଣ କରନ୍ତି। ସରକାରଙ୍କ ନିୟମ ଅଛି-- ବୃକ୍ଷ କାଟିବ ନାହିଁ; କିନ୍ତୁ ଚୋରାବେପାରୀମାନେ କିଛି ଅସାଧୁ ସରକାରୀ କର୍ମଚାରୀଙ୍କୁ ହାତକରି ଜଙ୍ଗଲରୁ ଗଛ କାଟିବା, ହରିଣ, ବରାହ, ହାତୀ ଏବଂ ବାଘ ଶିକାର କରିବାରେ ଲାଗିଥା'ନ୍ତି। ପ୍ରକୃତିକୁ ସନ୍ତୁଳନରୁ ବିଭ୍ରାନ୍ତ କରନ୍ତି ଏହି ମନୁଷ୍ୟମାନେ। ତୁମେମାନେ ଆସାମ, ମେଘାଳୟ ବୁଲିଲ, ଭଲ ହେଲା; କିନ୍ତୁ ଅମାନୁଷିକ କାର୍ଯ୍ୟର କିଛି ପ୍ରତିକାର କରିପାରିବ କି ? ମନୁଷ୍ୟ ସମାଜରେ ସଚେତନତା ସୃଷ୍ଟି ହେବ କି ?"

ଆମେମାନେ ଗୌହାଟି ସହର ପାଖାପାଖି ହୋଇଗଲୁ। ସହରକୁ କ୍ରମଶଃ ପ୍ରବେଶ କରିବାକୁ ଲାଗିଲୁ। ଶିଲଂ ସହରର ଶୀତଳତା ଦୂରେଇଯାଇ ଉଷ୍ଣତା ଅନୁଭବ କଲୁ। ଜାତୀୟ ରାଜପଥ ଉପରେ ସହରର ଉପକଣ୍ଠରେ ଗୋଟିଏ ବଡ଼ ଫ୍ଲାଇଓଭର ନିର୍ମାଣାଧୀନ। ତେଣୁ ବାମପାଖ ଅଣଓସାରିଆ ରାସ୍ତାରେ ଆସ୍ତେ ଆସ୍ତେ ଆସିବାକୁ ପଡ଼ିଲା। ସହରର ଭିତର ମୁଖ୍ୟ ରାସ୍ତା ଦେଇ ଅତିକ୍ରମ କଲୁ। ବାଟରେ ବ୍ରହ୍ମପୁତ୍ର ନଦୀର କୂଳରେ ମଧ୍ୟ ଗଲୁ। ବିରାଟ କଳେବରଧାରୀ ବ୍ରହ୍ମପୁତ୍ର ନଦୀର ପାଖେ ପାଖେ ଗଲାବେଳେ ଅପୂର୍ବ ଶିହରଣ ହୃଦୟରେ ଅନୁଭବ କଲୁ। ସାଢ଼େ

ଏଗାରଟା ହେଲା । ଶୀଘ୍ର ହୋଟେଲକୁ ଯାଇ ଆମର ରହିବାର ସମସ୍ତ ଯୋଗାଡ଼ କରିନେଲୁ । ରମେଶ ଏହି ଗେଷ୍ଟ ହାଉସ୍ (ଗ୍ରୀଡ୍‌କୋର) ବୁଝିଥିଲେ । ଦୁଇଟି ପ୍ରଶସ୍ତ ରୁମ୍ । ଗାଧୁଆ ଘର ଅଛି । ଆଗରେ ଡ୍ରଇଂ ଏବଂ ଡାଇନିଂ ଅଛି । ସୁବିଧା ହେଲା । ଗୋଡ଼ହାତ ଧୂଆଧୋଇ କରିନେଲୁ । ରାତ୍ରିରେ ଖାଇବା ପାଇଁ ଅର୍ଡର ଦେଲେ ରମେଶବାବୁ । ସାଧାରେ ଭାତ, ଡାଲି ଏବଂ ଗୋଟିଏ ଭଜା ଏବଂ ମାଛ, ଚିକେନ୍ ଇତ୍ୟାଦି ପାଇଁ । ଆମେମାନେ କାମାକ୍ଷା ଠାକୁରାଣୀଙ୍କୁ ଦର୍ଶନ କରିବାକୁ ମନସ୍ଥ କରିଥିଲୁ । ତେଣୁ ଶୀଘ୍ର ବାହାରିପଡ଼ିଲୁ । ଏହି ସ୍ଥାନରୁ ପ୍ରାୟ ଦଶ କି.ମି. ହେବ । ସମସ୍ତଙ୍କର ମନ ସତେଜ ଏବଂ ଆନନ୍ଦ । କାମାକ୍ଷା ଠାକୁରାଣୀ ହେଉଛନ୍ତି ଆସାମର ପ୍ରତ୍ୟକ୍ଷ ଠାକୁରାଣୀ । ସାରା ଭାରତ ଏବଂ ଭାରତ ବାହାରୁ ହିନ୍ଦୁମାନେ ଠାକୁରାଣୀଙ୍କର ଦର୍ଶନ ପାଇଁ ହଜାର ହଜାର ସଂଖ୍ୟାରେ ଆସନ୍ତି ।

ପିଲାଦିନେ କାହାଣୀ ଶୁଣିଥିଲି । ଏହି ଠାକୁରାଣୀଙ୍କର ପାଖରେ ଅଧିଆ ପଡ଼ି ଭକ୍ତମାନେ ମନ୍ତ୍ରତନ୍ତ୍ର ସାଧନା କରନ୍ତି । ଗୁଣିଗାରେଡ଼ିର ଦେଶ ବୋଲି ଆସାମକୁ କହନ୍ତି । କାମାକ୍ଷା ଠାକୁରାଣୀଙ୍କର ଦୟାରେ ସବୁକିଛି ଚାଲେ ବୋଲି ଭକ୍ତମାନେ ତନ୍ତ୍ର ସାଧନା କଲାବେଳେ ଭାବନ୍ତି । ଗୁଣିଗାରେଡ଼ି କରି ଭୂତ-ପ୍ରେତକୁ ମନୁଷ୍ୟ ଦେହରୁ ନିକାଲି ଦେବାରେ ଏମାନଙ୍କର ତନ୍ତ୍ର ଥାଏ । ମହାଭାରତରେ କାମାକ୍ଷା ଦେବୀଙ୍କର ଦୟାରେ ଅର୍ଜୁନ ଏହି ସ୍ଥାନକୁ ଆସି ନାଗକନ୍ୟା ସୁଲୁପୀକୁ ବାହା ହୋଇଥିଲେ । ତାଙ୍କର ପୁତ୍ର ବବ୍ରୁବାହନଙ୍କ ହସ୍ତରେ ପରବର୍ତ୍ତୀ କାଳରେ ପରାସ୍ତ ହୋଇଥିଲେ । ଅର୍ଜୁନ ନିଜର ପତ୍ନୀ ସୁଲୁପୀଙ୍କୁ ପୁନଶ୍ଚ ଗ୍ରହଣ କରିଥିଲେ । କାମାକ୍ଷାଦେବୀଙ୍କର ମହିମା ବହୁତ ବ୍ୟାପ୍ତ । ମନ୍ତ୍ରତନ୍ତ୍ରର ଅଧିକାରିଣୀ ଠାକୁରାଣୀଙ୍କର ପ୍ରଭାବ ବେଶୀ ବୋଲି ଏଠାକାର ଜନସାଧାରଣଙ୍କ ଠାରୁ ଜାଣିବାକୁ ପଡ଼େ । କାମାକ୍ଷାଦେବୀଙ୍କ ତନ୍ତ୍ରର ପ୍ରଭାବ ପୁରୀ ଜଗନ୍ନାଥ ମନ୍ଦିରର ବିମଳା ଠାକୁରାଣୀଙ୍କ ଠାରେ ଦେଖିବାକୁ ମିଳେ । ତାମସିକ, ରାଜସିକ ଭକ୍ତମାନେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପୂର୍ବରୁ ବିମଳା ଠାକୁରାଣୀଙ୍କୁ ଦର୍ଶନ କରିଥା'ନ୍ତି । ଯାହାହେଉ, ବିମଳା ମନ୍ଦିର ସମ୍ମୁଖରେ ଗୋଟିଏ ହାତୀ ବୃଷଭକୁ ମାଡ଼ି ବସିଛି । ଏଥିରୁ ତାମସିକ ଏବଂ ରାଜସିକ ମଧ୍ୟରେ ଅପୂର୍ବ ସାମଞ୍ଜସ୍ୟ ଦେଖାଯାଏ ।

ଜଗନ୍ନାଥ ମନ୍ଦିରରେ ବିମଳା ଠାକୁରାଣୀଙ୍କୁ କାମାକ୍ଷା ଠାକୁରାଣୀଙ୍କର ପ୍ରତ୍ୟକ୍ଷ ରୂପେ ବିଚାର କରାଯାଇ ଦଶହରା ତିନିଦିନ ବିମଳାଙ୍କ ପାଖରେ ପଛ ପାଚେରି ଡିଆଁଇ ବୋଦା ବଳି ପଡ଼ିବାକୁ ଆସେ। ଜଗନ୍ନାଥ ମନ୍ଦିର ନିରାମିଷର ଭଣ୍ଡାର ; କିନ୍ତୁ ଜଗନ୍ନାଥ ସ୍ୱାମୀ ମନ୍ତ୍ରତନ୍ତ୍ରରେ ବିଶେଷ ଆଧାର। ନିରାମିଶ ଓ ଆମିଷ ଭକ୍ତ ତାଙ୍କୁ ଦର୍ଶନ କରିପାରିବେ। କାମାକ୍ଷାଦେବୀ ହେଉଛନ୍ତି ଜଗତର ଠାକୁରାଣୀ। ତନ୍ତ୍ର ସାଧକମାନେ ଏଠାରେ ଦେବୀଙ୍କର ତନ୍ତ୍ର ସାଧନାରେ ବିଶ୍ୱାସ କରିଥା'ନ୍ତି।

ଆମେ ଟ୍ୟାକ୍ସି ଧରି ମନ୍ଦିର ପାଖରେ ଥିବା ବସ୍ ଷ୍ଟାଣ୍ଡରେ ଓହ୍ଲାଇଲୁ। ସେତେବେଳକୁ ପ୍ରାୟ ଦିନ ସାଢ଼େ ଗୋଟାଏ ହୋଇଥିଲା। ଶୁଣିଲୁ ଠାକୁରାଣୀଙ୍କର ପହଡ଼ ପଡ଼ିଗଲାଣି। ପୁଣି ଅପରାହ୍ନ ଚାରିଟାବେଳକୁ ଠାକୁରାଣୀଙ୍କର ଦର୍ଶନ ମିଳିବ।

ସେହି ବସ୍‌ଷ୍ଟାଣ୍ଡର ଗୋଟିଏ ଛୋଟ ଧରଣର ଡାବାପରି ହୋଟେଲକୁ ଗଲୁ। ବହୁତ ବଙ୍ଗାଳି ଲୋକ ସମାବେଶ ହୋଇଛନ୍ତି ଖାଇବାକୁ। ଛୋଟ ଡାବାଟିଏ, ତା'ର ମାଲିକାଣୀ ଜଣେ ସ୍ତ୍ରୀ ଲୋକ। ସେ କହିଲା, "ଅରୁଆ ଭାତ, ଡାଲି ଏବଂ ଅଳ୍ପ କିଛି ଭଜାକୁ ପ୍ଲେଟ୍ ପ୍ରତି ୨୫ ଟଙ୍କା ପଡ଼ିବ।" ଆଖପାଖରେ ଆଉ ହୋଟେଲ ନାହିଁ। ବାଧ୍ୟ ହୋଇ ରାଜି ହେଲୁ। ପ୍ରାୟ ଅଧଘଣ୍ଟାକ ପରେ ଖାଇବାର ରନ୍ଧାରନ୍ଧି ସରିଗଲା। ଆମେମାନେ ଗରମ ଭାତ, ଡାଲି ଏବଂ ଭଜା ପାଇଲୁ। ସେତେବେଳକୁ ପ୍ରାୟ ଦିନ ତିନିଟା ହେବ। କିଛିସମୟ ସେଠାରେ ବସି ରହିଲୁ। ତା'ପରେ ଚାଲି ଚାଲି କାମାକ୍ଷା ମନ୍ଦିର ପାଖକୁ ଗଲୁ। ସେଠାରେ ଆଗରୁ କୁହାଯାଇଥିବା ମନ୍ଦିରର ପଣ୍ଡା ଆସି ପହଞ୍ଚିଗଲେ। ଆମମାନଙ୍କୁ ତାଙ୍କ ପଛେ ପଛେ ଅନୁସରଣ କରିବାକୁ କହିଲେ। ମନ୍ଦିର ପରିସରରେ ପହଞ୍ଚିଲୁ। ମନ୍ଦିରଟି ଦେଖିବାକୁ ଅତି ସୁନ୍ଦର ଦିଶୁଥିଲା। ବେଶୀ ଉଚ୍ଚର ମନ୍ଦିର ନୁହେଁ। ତଥାପି ପ୍ରାୟ ୬୦/୭୦ ଫୁଟ ଉଚ୍ଚତା ହେବ ବୋଲି ଅନୁମାନ କଲୁ। ମନ୍ଦିରର ପ୍ରବେଶ ପଥଦେଇ ଗୋଟିଏ ବଡ଼ ପୁଷ୍କରିଣୀ ପାଖକୁ ଗଲୁ। ଗୋଡ଼ହାତ ଧୋଇଲୁ। ମନ୍ଦିର ପୂଜକ ଆସି ଆମମାନଙ୍କୁ ତାଙ୍କର ଚିରାଚରିତ କିଛି ସଂକଳ୍ପ ପାଠ କରାଇ ଦେଇଥିଲେ। କାମାକ୍ଷା ଦିଅଁଙ୍କ ପୂଜାପାଇଁ କିଛି ଭୋଗ, ନଡ଼ିଆ, ଫୁଲ ଦୀପ ନେଲୁ। ପରେ ଆମକୁ ପ୍ରତୀକ୍ଷାଳୟରେ ଲାଇନ୍

ଦେଇ ଅପେକ୍ଷା କରିବାକୁ ପଡ଼ିଲା । ଏଥିପାଇଁ ମନ୍ଦିର ପ୍ରଶାସନ ପକ୍ଷରୁ ପ୍ରବେଶିକା ଅର୍ଥ ପ୍ରାୟ ଜଣକେ କିଛି ଟଙ୍କା ନିଆହୋଇ ରସିଦ୍ ଦିଆଯାଇଥିଲା । ଏହି ରସିଦ୍‌କୁ ସେଠାକାର ସୁରକ୍ଷାବାଲା ଦେଖି ଆମକୁ ଦିଅଁଙ୍କ ମନ୍ଦିର ଭିତରକୁ ଛାଡ଼ିଲେ । ଏହାପରେ ଅଧିକା ପ୍ରାୟ ପଚାଶ କିମ୍ବା ୧୦୦ ଟଙ୍କା ଦେଉଥିବା ଲୋକଙ୍କ ପାଇଁ ଭି.ଆଇ.ପି. ଲାଇନ୍ ଥିଲା । ଏହି ଭି.ଆଇ.ପି. ଲାଇନ୍‌ରେ ସ୍ଥଳବାହିନୀର ଲୋକମାନଙ୍କୁ ବିନା ରସିଦ୍‌ରେ ଛଡ଼ାଯାଉଥିଲା ।

ପ୍ରାୟ ପନ୍ଦର ମିନିଟ୍ ପରେ ଆମେମାନେ ମୁଖ୍ୟ ମନ୍ଦିରର ପ୍ରବେଶ ପଥ ଦେଇ କାମାକ୍ଷ ଠାକୁରାଣୀଙ୍କ ପାଖକୁ ଗଲୁ । ବହୁତ ଭକ୍ତ ଥିଲେ । ସ୍ତ୍ରୀଲୋକ ମଧ୍ୟ ଥିଲେ । ଠାକୁରାଣୀଙ୍କ ପାଖରେ ଆମେମାନେ ପାହାଚ ତଳକୁ ତଳକୁ ଯାଇ ପହଞ୍ଚିଗଲୁ । ଅଣଓସାରିଆ ସ୍ଥାନ । କାମାକ୍ଷା ଠାକୁରାଣୀଙ୍କୁ ଦେଖି ଦେହ-ମନ ଆନନ୍ଦିତ ହେଲା । ବହୁଦିନର ଆଶା ଥିଲା କାମାକ୍ଷା ଠାକୁରାଣୀ ଦେଖିବାପାଇଁ । ସେହି ଅମୃତବେଳା ଆମମାନଙ୍କ ଭାଗ୍ୟରେ ଜୁଟିଲା । ଶୁଦ୍ଧପୂତ ହୃଦୟରେ ଦେବୀଙ୍କୁ ଦର୍ଶନ କଲୁ । ଦେବୀଙ୍କୁ ଭୋଗ, ଫୁଲ,ଦୀପ ଅର୍ପଣ କଲୁ । ପୂଜକ ପୂଜା କରି ଆମକୁ ସିନ୍ଦୂର ଏବଂ ଭୋଗ ଦେଲେ । କାମାକ୍ଷା ଠାକୁରାଣୀ ଦୟାପୂର୍ଣ୍ଣ ନୟନରେ ଆମକୁ ଆଶୀର୍ବାଦ କରୁଥିବା ମନେହେଲା । ଆମେମାନେ ଦେବୀଙ୍କର ଚରଣ ତଳେ ଆମର ମନର ଭାବନା ଜଣାଇଲୁ । ମା' ଭଗବତୀ ଆମକୁ ସକଳ ବାଧାବିଘ୍ନରୁ ଉଦ୍ଧାର କରି ସତ୍ୟ, ନ୍ୟାୟ ପଥରେ ଯିବାପାଇଁ ପ୍ରାଣପୂର୍ବକ ଭକ୍ତିରେ ମୁଣ୍ଡିଆ ମାରିଲୁ । ବାହାରକୁ ଆସିଗଲୁ । ବହୁତ ଗହଳି ବଢ଼ିଯାଇଥିଲା । ଆମେମାନେ ମନ୍ଦିରର ବେଢ଼ା ଭିତରେ ବୁଲିଲୁ । ଗଣେଶ ମନ୍ଦିରରେ ମୁଣ୍ଡିଆ ମାରିଲୁ, ଭକ୍ତିରେ ଆମର ମନ କଥା କହିଲୁ । ବିଘ୍ନବିନାଶକାରୀ ଗଣେଶଙ୍କୁ ମନଧ୍ୟାନ ଦେଇ ଦର୍ଶନ କଲୁ । କେହି ଏହି ମନ୍ଦିରରେ ପଇସା ଛାଡୁଥା'ନ୍ତି ନିଜର ମନସ୍କାମନା ଧରି ।

ଏହି ମନ୍ଦିରଟି ବହୁତ ପୁରୁଣା, ପ୍ରାୟ ଆଠଶହ ବର୍ଷ ପୂର୍ବର ବୋଲି ମନେହେଲା । ଏହାର କାରୁକାର୍ଯ୍ୟ ଅତୀବ ସୁନ୍ଦର । ମନ୍ଦିର ବେଢ଼ାରେ ଅସଂଖ୍ୟ ପାରା ରହିଛନ୍ତି । ମନ୍ଦିରର ପରିସରକୁ ସଦାବେଳେ ପାରାଙ୍କ ମଳରୁ ରକ୍ଷା କରିବାପାଇଁ ଅହରହ ଜଗୁଆଳିମାନେ ନିଯୁକ୍ତ ହୋଇ କାର୍ଯ୍ୟ କରୁଛନ୍ତି । ମନ୍ଦିର

ପରିସରରେ ଗୁଡ଼ିଏ ଛୋଟବଡ଼ ମନ୍ଦିର ଏବଂ ଧର୍ମଶାଳା ଅଛି । ସେଠି ଦୂରଦୂରାନ୍ତରୁ ଆସିଥିବା ସାଧୁ ସନ୍ନ୍ୟାସୀମାନେ ବିଶ୍ରାମ ନିଅନ୍ତି । ରାତ୍ରିରେ ସେଠାରେ ରହନ୍ତି ମଧ୍ୟ ।

ଏହାପରେ ପୂଜକ ଆଣି ଦିଅଁ ପୂଜା ହୋଇଥିବା ଖେଚୁଡ଼ି ଆମମାନଙ୍କୁ ପ୍ରସାଦ ରୂପେ ବାଣ୍ଟିଲେ । ଆମେମାନେ ଆନନ୍ଦରେ ପ୍ରସାଦ ସେବନ କଲୁ । କାମାକ୍ଷା ଠାକୁରାଣୀଙ୍କର ପ୍ରସାଦ ସେବନ କରି ମନ-ହୃଦୟକୁ ପାପ ସାଗରରୁ ଉଦ୍ଧାର କଲୁ । ମନରେ ଭଗବତ୍ ପ୍ରେମ ଆସୁଥିଲା । ଜଗତମୟୀ ଠାକୁରାଣୀଙ୍କୁ ଅନ୍ତର ଦେଇ ନମସ୍କାର କଲୁ ।

ମୋର ବଡ଼ ଝିଅ ଫଟୋ ଉଠାଇଲା ସମସ୍ତଙ୍କର । ମଝିଆ ଝିଅ ମଧ୍ୟ । ଗୁଡ଼ଲି, ପପୁଲୁ, ବୁବୁଲୁ ବହୁତ କିସମର ଫଟୋ ଦେଉଳର ଉଠାଇଥିଲେ । ପାଞ୍ଚଟା ବାଜିଗଲା । ଆମେମାନେ ମନ୍ଦିରରୁ ବାହାରକୁ ଆସିଲୁ ବ୍ରହ୍ମପୁତ୍ର ନଦୀ ଏବଂ ଗୌହାଟି ସହରର କିଛି ପ୍ରଧାନ ସ୍ଥାନ ଦେଖିବାପାଇଁ । କାମାକ୍ଷା ଠାକୁରାଣୀଙ୍କୁ ପୁନଶ୍ଚ ନମସ୍କାର କରି ମନ୍ଦିର ବାହାରକୁ ଆସିଲୁ ।

ହଠାତ୍ ଭୀଷଣ ବର୍ଷା ଆସିଗଲା । ଆମେମାନେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ନିକଟସ୍ଥ ଦୋକାନମାନଙ୍କରେ ଆଶ୍ରୟ ନେଲୁ । ବର୍ଷା ପ୍ରାୟ ଏକ ଘଣ୍ଟା ଧରି ହେଲା । କିଛି ଉପାୟ ନାହିଁ । ଏହା ବୋଧହୁଏ କାମାକ୍ଷା ଠାକୁରାଣୀଙ୍କର ବିଧାନ ଥିଲା ।

ଯାହା ଘଟିଛି ଭଲ, ଯାହା ଘଟୁଛି ଭଲ ଏବଂ ଭବିଷ୍ୟତରେ ଯାହା ଘଟିବ, ତାହା ମଧ୍ୟ ଭଲ । ସବୁକିଛି ଦେବୀଙ୍କର ନିର୍ଦ୍ଦେଶରେ ଘଟୁଛି ପ୍ରାଣୀର ମଙ୍ଗଳ ପାଇଁ । ଆମର ଠାକୁରାଣୀ ଦର୍ଶନ ହୋଇଗଲା । ଆଉ ଅଧିକ କ'ଣ ଦରକାର ? କାଲି ସକାଳେ ଗୌହାଟି ଛାଡ଼ିବୁ । ଟ୍ୟାକ୍ସି ଡ୍ରାଇଭର ଅପେକ୍ଷା କରି ବ୍ୟସ୍ତ ହେଲେଣି । ତେଣୁ ପୂରା ଗୌହାଟି ସହରକୁ ବୁଲିବା ଆମ ପକ୍ଷରେ ଅସମ୍ଭବ ହୋଇପଡ଼ିଲା । କାରଣ ବର୍ଷା ପୂରାପୂରି ଛାଡ଼ିଲା ନାହିଁ । ପରିଶେଷରେ ଟ୍ୟାକ୍ସି ଡ୍ରାଇଭରକୁ କହିଲୁ ଅନ୍ତତଃ ବ୍ରହ୍ମପୁତ୍ର ନଦୀର କୌଣସି ଘାଟରେ କିଛି ସମୟ ରଖିଦେଲେ ଆମେମାନେ ବ୍ରହ୍ମପୁତ୍ରର ମନୋହର, ଭୟଙ୍କର କଳେବର ଦେଖିପାରିବୁ ।

ତାହାହିଁ ହେଲା । ବର୍ଷା ରାତ୍ରିରେ ଆମେମାନେ ଗୋଟିଏ ମୁକ୍ତ ଘାଟରେ ବ୍ରହ୍ମପୁତ୍ର ନଦୀ କୂଳକୁ ଗଲୁ । ଦୂରରୁ ନଦୀକୁ ଦର୍ଶନ କରି ଆପ୍ୟାୟିତ ହେଲୁ । ଏହି ନଦୀ ଆସାମର ମେରୁଦଣ୍ଡ । ଏଥିରେ ବାଣିଜ୍ୟ କାରବାର ଏବଂ ଚାଷକାର୍ଯ୍ୟ ପାଇଁ ଜଳ ବ୍ୟବହାର କରାଯାଇଥାଏ । ବିଶାଳ ନଦୀବକ୍ଷରେ ଅସଂଖ୍ୟ ବୋଟ୍ ରହିଛି । ପାଖରେ ବୋଟ୍ ଘରମାନ ହୋଇଛି ନଦୀକୁ ଦର୍ଶନ କରିବାପାଇଁ । ଆମେମାନେ ନିଜକୁ ଭୁଲିଗଲୁ । ନଦୀର ବହୁତ ଦୂର ଯାଗାରେ ଟାପୁ ଉପରେ ଗାଁ'ମାନ ଅଛି । ସେଠାରୁ ଆଲୁଅ ଜଳି ସ୍ଥାନର ଅବସ୍ଥିତି କହୁଛି । ଏହି ସ୍ଥାନ-ଗୁଡ଼ିକରେ ଗାଁ'ର ଲୋକମାନେ ବାସ କରନ୍ତି । ନଦୀରୁ ମାଛ ମାରନ୍ତି ଏବଂ ବିଭିନ୍ନ ବ୍ୟବସାୟ ଏହି ଆସାମର ଗୌହାଟୀ ସହରରେ କରନ୍ତି ।

ବର୍ଷାଦିନେ ବ୍ରହ୍ମପୁତ୍ରର କରାଳ ରୂପ ଦେଖିବାକୁ ମିଳେ । କୂଳକୁ ଲଂଘନ କରି ଗୌହାଟି ସହରର ତଳିଆ ଅଂଶକୁ ବୁଡ଼ାଇଦିଏ । ନଦୀର ତଳଭାଗ ଗାଁ-ଗହଳିରେ ବନ୍ୟାର ପ୍ରକୋପ ଅଧିକ ଉପଲବ୍ଧ ହୁଏ । ତଥାପି ବ୍ରହ୍ମପୁତ୍ର, ଆମ ଭାରତ ସଂସ୍କୃତିର ଏକ ଅଂଶ । ଆମେମାନେ ବ୍ରହ୍ମପୁତ୍ରକୁ ଭଲପାଉ ପିଲାଦିନରୁ । ଗଙ୍ଗା, ବ୍ରହ୍ମପୁତ୍ର ଏବଂ ସିନ୍ଧୁ ତିନୋଟି ବଡ଼ ନଦୀ ହିମାଳୟରୁ ବାହାରି ଆସି ଭାରତର ସଂସ୍କୃତିରେ ଭାଗ ନେଇଛନ୍ତି । ଦେଶକୁ ସଭ୍ୟ ଜଗତର ମାନ୍ୟତା ଦେଇଛନ୍ତି ଏବଂ ଉନ୍ନତ ଦେଶରେ ଭାରତର ମହାତ୍ମ୍ୟ ବଢ଼ାଇ ଅଛନ୍ତି । ବ୍ରହ୍ମପୁତ୍ର ସବୁଠାରୁ ଦୀର୍ଘତମ ନଦୀ । ମନରେ ଆନନ୍ଦ ପାଇଲୁ ରାତ୍ରିକାଳୀନ ବ୍ରହ୍ମପୁତ୍ରର ସୌନ୍ଦର୍ଯ୍ୟରେ । ଗେଷ୍ଟ୍‌ହାଉସକୁ ଫେରିଆସିଲୁ ରାତ୍ର ୯ଟା ବେଳକୁ; ତଥାପି ବର୍ଷା ଛାଡ଼ି ନ ଥାଏ ।

## କଲିକତା ପ୍ରତ୍ୟାବର୍ତ୍ତନ

ଗୌହାଟିରେ ଗୋଟିଏ ଦିନ ରହିଲେ ମଧ୍ୟ, ମନ ପୂରାଇ ସାରା ସହରଟି ଭ୍ରମଣ କରିପାରିଲୁନି ଭୀଷଣ ବର୍ଷା ଯୋଗୁଁ । ବଡ଼ି ସକାଳୁ ଉଠି ନିଜର ନିତ୍ୟକ୍ରମ ସାରି କିଛି ଜଳଖିଆ ଖାଇନେଇ ବିମାନ ବନ୍ଦରକୁ ଯିବାକୁ ବାହାରିଲୁ । ଆମର ରହୁଥିବା ଗେଷ୍ଟ୍ ହାଉସ୍‌ରୁ ବିମାନବନ୍ଦର ହେଉଛି ପ୍ରାୟ ପନ୍ଦର କି.ମି. ବାଟ । ପ୍ଲେନ୍ ଆସିବ ୧୦.୩୦ ମିନିଟ୍‌ରେ । ତେଣୁ ୯ଟା ସୁଦ୍ଧା ସେଠି ପହଞ୍ଚିବା ଦରକାର;

କିନ୍ତୁ ଖବର ନେଲାରୁ ଜଣାପଡ଼ିଲା ବିମାନଟି (କିଙ୍ଗ୍‌ଫିସର୍) ସେଦିନ ବର୍ଷାଯୋଗୁ ଦୁଇଘଣ୍ଟା ବିଳମ୍ବରେ ଆସିବ।

ଏହାପୂର୍ବରୁ ସକାଳ ୭.୩୦ ମିନିଟ୍‌ରେ ଆମ୍ଭେମାନେ ସମସ୍ତେ ନିକଟସ୍ଥ ବିନାୟକ ମନ୍ଦିରକୁ ଦର୍ଶନ କରିବାକୁ ଗଲୁ। ମନ୍ଦିରଟି ଦୁଇ ମହଲା ବିଶିଷ୍ଟ। ତଳ ମହଲାରେ ଗଣେଶ ସ୍ଥାପିତ ହୋଇଛନ୍ତି। ବିରାଟକାୟ ବିନାୟକ ମୂର୍ତ୍ତି। ବ୍ରାହ୍ମଣମାନେ ବସିଛନ୍ତି ଦିଅଁଙ୍କୁ ଘେରାଇ ହୋଇ। ସଂସ୍କୃତରେ ଭଜନ ଚାଲିଛି। ଫୁଲ, ଘିଅ, ଭୋଗ ନେଇ ସ୍ଥାନୀୟ ଲୋକମାନଙ୍କ ସହ ଆମେମାନେ ଭୋଗ ଚଢ଼ାଇଲୁ। ଉପର ମହଲାକୁ ଯାଇ ସ୍ଥାପିତ ନବଗ୍ରହମାନଙ୍କୁ ଦୀପ ଦେଇ ଭକ୍ତିପୂତ ନମସ୍କାର ଜଣାଇଲୁ। ଘରକୁ ଶୀଘ୍ର ଫେରିଲୁ। ଦୋକାନ ବଜାର କ୍ରମଶଃ ଖୋଲୁଥାଏ। ସୌଖିନିଆ ଜିନିଷ କିଛି ଘର ସଜାଇବା ପାଇଁ କିଣିଲୁ। ଗେଷ୍ଟ ହାଉସକୁ ଫେରିଆସିଲୁ। ଶୀଘ୍ର ଖାଇସାରି ବିମାନ ବନ୍ଦର ଅଭିମୁଖେ ଗୋଟିଏ ବଡ଼ ଭ୍ୟାନ୍‌ରେ ସମସ୍ତେ ଗଲୁ। ଗୌହାଟି ସହର ମେଘାଳୟର ଶିଲଂ ସହରଠାରୁ ସମ୍ପୂର୍ଣ୍ଣ ଭିନ୍ନ। ଶିଲଂ ଅପେକ୍ଷାକୃତ ପରିଷ୍କାର ପରିଚ୍ଛନ୍ନ ଥିଲା; କିନ୍ତୁ ଗୌହାଟି ସହରର ସୌନ୍ଦର୍ଯ୍ୟ ବଢ଼ି ଚାଲିଛି ବ୍ରହ୍ମପୁତ୍ର ନଦୀ ଯୋଗୁଁ। ଏହା ପୁରୁଣା ସହର। ନୂଆ-ପୁରୁଣାର ସମଷ୍ଟିରେ ଏହାର ସଭ୍ୟତା ଅଧିକ। ଆସାମର ରାଜଧାନୀ କାମାକ୍ଷାମନ୍ଦିର ଏବଂ ଉତ୍ତର-ପୂର୍ବାଞ୍ଚଳର ମୁଖ୍ୟ ବାଣିଜ୍ୟ କେନ୍ଦ୍ର। ଏହି ସ୍ଥାନରେ ସାରା ଭାରତର ଅଧିବାସୀମାନଙ୍କୁ ଦେଖାଯାଏ।

ବିମାନ ବନ୍ଦରରେ ପହଞ୍ଚିଗଲୁ। ଗୌହାଟି ବିମାନବନ୍ଦର ହେଉଛି ଆନ୍ତର୍ଜାତିକ ବିମାନ ବନ୍ଦର। ପ୍ରତି ଅଧଘଣ୍ଟାରେ ଗୋଟିଏ ବିମାନ ଏଠାରେ ଅବତରଣ କରେ। ଉଗ୍ରବାଦୀଙ୍କ ଆକ୍ରମଣ ଭୟରୁ ବିମାନ ବନ୍ଦରକୁ କଡ଼ା ସୁରକ୍ଷା ଭିତରେ ରଖାଯାଇଛି।

କିଙ୍ଗ୍‌ଫିସର୍‌ର ବିମାନରେ ଆରୋହଣ କଲୁ। ଗୌହାଟି ବିମାନବନ୍ଦରରୁ ବିମାନଟି ଆକାଶରେ ଚକ୍କର ମାରି ଉଠିଲା। ଦୂରରୁ ଆକାଶରୁ ଗୌହାଟି ସହର କାମାକ୍ଷା ମା'ଙ୍କୁ ନମସ୍କାର କଲି। ଭାଗ୍ୟରେ ଥିଲା ତାଙ୍କୁ ଦର୍ଶନ କଲି। ଭବିଷ୍ୟତ କଥା କହିହେବନି। କିଛି ଅଭୁଲା ସ୍ମୃତି ନେଇ ଚାଲିଲି। ବହୁତ ଖୁସି ହୋଇଥିଲି ବ୍ରହ୍ମପୁତ୍ର ନଦୀକୁ ଆକାଶମାର୍ଗରୁ ଦେଖି। ବିଦାୟ ମାଗିଲି, "ବ୍ରହ୍ମପୁତ୍ର ନଦୀ! ତୁମେ

ଏହି ପାର୍ବତ୍ୟ ଅଞ୍ଚଳର ସୁଖ ଆଉ ଦୁଃଖଦାତା । ସୁଖ ବେଶୀ ଦେଉଛ ଏଠାକାର ଅଧିବାସୀମାନଙ୍କୁ । ଭାରତର ଉଚ୍ଚ ପରମ୍ପରା ତୁମ ଦ୍ୱାରା ସୃଷ୍ଟି ଏବଂ ପ୍ରତିପାଳିତ ହୋଇଛି । ଭାରତର ଉନ୍ନତ ସଂସ୍କୃତି ପାଇଁ ତୁମର ଅବଦାନ ବେଶୀ । ତୁମେ ମୋର ନମସ୍ୟ ।" ଆକାଶରୁ ବିମାନ ଭିତରୁ ନମସ୍କାର କଲି । ମେଘମାଳା ଆସି ବିମାନରେ ପିଟି ହେଉଥା'ନ୍ତି । ଏଥର ଗଲାବେଳେ ଅଂଶୁମାନ (ନାତି) ଝରକା କଡ଼ରେ, ସ୍ତ୍ରୀ ମଝିରେ ଏବଂ ଭିତର ପଟରେ ବସିଥିଲି । ମେଘମାଳାର ଉପରେ ବିମାନ ଗଲା ଆଉ ତଳର କିଛି ମାତ୍ରା ଦୃଶ୍ୟ ହେଲାନି ।

ଚାହୁଁ ଚାହୁଁ ମାତ୍ର ଅଧଘଣ୍ଟାକ ମଧ୍ୟରେ କିଙ୍ଗଫିସର୍‌ର ଚାଳକ ଘୋଷଣା କଲେ— ଅଣ୍ଟାରେ ବେଲ୍ଟ ବାନ୍ଧ । ଦମ୍‌ଦମ୍ ବିମାନଘାଟି ଆସିଗଲା । ଆମେ ଆସାମ ପରିତ୍ୟାଗ କରି ବଙ୍ଗଳାଦେଶ ଉପରେ ଉଡ଼ି ପଶ୍ଚିମବଙ୍ଗରେ ଆସି ପହଞ୍ଚିଯାଇଥିଲୁ । କ୍ରମଶଃ ବିମାନଟି ମେଘକୁ କଟାଇ ତଳମୁହାଁ ହୋଇ ବିମାନ ବନ୍ଦର ଆଡ଼େ ଅଗ୍ରସର ହେଲା । ଦୃଷ୍ଟିରେ ପଡ଼ିଲା କଲିକତା ସହରର ବିରାଟ ବିରାଟ ଅଟ୍ଟାଳିକା; ମାତ୍ର ଛ'ଇଞ୍ଚ ଉଚ୍ଚର ଦିଶୁଛି । ଗଙ୍ଗାନଦୀ (ହୁଗୁଳି ନଦୀ) ଉପର ଦେଇ ସହରର କିଛି ଉପରେ ବିମାନ ଚକ୍କର ଲଗାଇଲା ପ୍ରାୟ ଦଶମିନିଟ୍ ଧରି । କଲିକତା ବିମାନ ବନ୍ଦରରେ ସକାଳୁ ବିମାନରେ ଭର୍ତ୍ତି; ମାତ୍ର କିଛି ସମୟ ଆକାଶରେ ସ୍ଥିର ଏବଂ କମ୍ ଗତିରେ ବିମାନଟି ଚକ୍କର କାଟି ଅବଶେଷରେ ଦମ୍‌ଦମ୍ ବିମାନ ବନ୍ଦରରେ ଅବତରଣ କଲା । ବିମାନରେ ଅବତରଣ କରିବା ଏବଂ ଉଠିବା ଦୁଇଟି କାର୍ଯ୍ୟ ମୁଖ୍ୟ । ସାମାନ୍ୟ ସଚେତନଶୀଳ ହେଲେ ମଧ୍ୟ ବହୁତ ଆରାମଦାୟକ ।

ସେତେବେଳକୁ ଦିନ ପ୍ରାୟ ୧.୩୦ ମିନିଟ୍ । ସେତେବେଳେ ଅପ୍ରତ୍ୟାଶିତ ଭାବରେ ଭାରତର ପୂର୍ବତନ କ୍ରିକେଟ୍ କ୍ୟାପଟେନ୍ ସୌରଭ ଗାଙ୍ଗୁଲିଙ୍କୁ ମୋର ନାତୁଣୀ-ନାତିମାନେ ଦେଖି ପକାଇଲେ । ପିଲାମାନେ ପାଖକୁ ଯାଇ ତାଙ୍କର ଦସ୍ତଖତ୍ ନେବାକୁ ଚାହିଁଥିଲେ । ହଠାତ୍ ସେ ଚାଲିଯିବାରୁ ପିଲାଙ୍କ ମନ କିଛିଟା ଖରାପ ଥିଲା । ତାଙ୍କୁ ବୁଝାଇଦେଲି— ପପୁଲୁ, ତୁମେ ମଧ୍ୟ ଦେଶପାଇଁ କିଛି ଭଲ କାମ କରିବାକୁ ଚେଷ୍ଟାକଲେ ଭବିଷ୍ୟତରେ ପିଲାମାନେ ତୁମର ଦସ୍ତଖତ୍ ପାଇଁ ଧାଡ଼ି ଲଗାଇବେ ।

ବିମାନବନ୍ଦର ବାହାରକୁ ଆସିଗଲୁ । ରମେଶଙ୍କର ସାଙ୍ଗଙ୍କର ଦାଦା ଗୋଟିଏ ଗାଡ଼ି ପଠାଇଥିଲେ । ଆଉ ଗୋଟିଏ ଟ୍ୟାକ୍ସି ହିଂମାଶୁ କଲେ । ଆମେମାନେ ଗାଡ଼ିରେ ବସିଲୁ । ରମେଶ ଗୋଟିଏ ବଡ଼ ହୋଟେଲରେ ଦୁଇଟି ରୁମ୍ ଯୋଗାଡ଼ କରିଥିଲେ ଆଗରୁ । ଗାଧୁଆ ଘର ଗୁଡ଼ିକ ସଂଲଗ୍ନ ଏବଂ ଆଧୁନିକ ସରଞ୍ଜାମରେ ଭର୍ତ୍ତି । ମୋର ବଡ଼ ଝିଅର ମନରେ ହଠାତ୍ ଭାବନା ସୃଷ୍ଟି ହେଲା ଅନ୍ୟପ୍ରକାର । ଆମେ ଦୁହେଁ (ବୁଢ଼ାବୁଢ଼ୀ) ଆସିବା ଜାଣିଥିଲେ ଆଉ ଗୋଟିଏ ରୁମ୍ ବୁକ୍ କରାଯାଇଥା'ନ୍ତା । ସତ କଥା ତା'ର ପାଟିରୁ ବାହାରିଗଲା । ଆମେ ବୁଢ଼ାବୁଢ଼ୀ ପ୍ରକୃତରେ ସବୁ କାର୍ଯ୍ୟରେ ଭାଗ ବସାଉଥିଲୁ । ଯାହାହେଉ, କିଂକଷପତ୍ର ସେହି ଦୁଇଟି ବୃହତ୍‌କାୟ ରୁମ୍‌ରେ ଭାଗ ବାଣ୍ଟି ରଖିଦେଲୁ । ସେତେବେଳକୁ ସନ୍ଧ୍ୟା ହେବାକୁ ପ୍ରାୟ ଏକଘଣ୍ଟା ବାକି ଥିଲା । ରମେଶଙ୍କର ଦାଦା ବାବୁ (ବଙ୍ଗାଳି ସାଙ୍ଗ) ଫୋନ୍‌ରେ ଆମମାନଙ୍କୁ ତାଙ୍କ ଘରକୁ ଯବାକୁ ନିମନ୍ତ୍ରଣ କଲେ ସେହି ରାତିରେ । ରାତ୍ରିଭୋଜନ ସେଠି ହେବ ବୋଲି କହିଦେଲେ । ଆମର କାର୍ଯ୍ୟକ୍ରମ ଥିଲା ସେହି ରାତ୍ରିରେ କଲିକତା ସହରର ବହୁତ କିଛି ପ୍ରସିଦ୍ଧ ସ୍ଥାନ ବୁଲିଯାଇଥା'ନ୍ତୁ ।

ଆମେମାନେ ଦୁଇଟି ଗାଡ଼ିରେ ତାଙ୍କ ଘରକୁ ଗଲୁ । ହୋଟେଲ୍ ଠାରୁ ପ୍ରାୟ ପନ୍ଦର କି.ମି. ବାଟ ହେବ । ସେହି ରାସ୍ତାରେ ଯାହାକିଛି ପ୍ରସିଦ୍ଧ ସ୍ଥାନମାନ— ଭିକ୍ଟୋରିଆ, ମେ ହଲ, ଚିଡ଼ିଆଖାନା ଇତ୍ୟାଦି ଦେଇଗଲୁ । ଗାଡ଼ି ଭିତରେ ଥାଇ ରାତ୍ରିକାଳୀନ କଲିକତା ସହରର ରୋମାଞ୍ଚକର ଏବଂ ଆକର୍ଷଣୀୟ ଦୋକାନ ବଜାର ଏବଂ ଟ୍ରାଫିକ୍ ଗହଳି ଦେଖି ଅଭିଭୂତ ହେଲୁ । ଟ୍ରାଫିକରେ ସାଇକେଲ, ହାତଟଣା ରିକ୍ସା, ଘୋଡ଼ାଟଣା ଗାଡ଼ି, ମଟର ସାଇକେଲ, କାର୍, ଟ୍ରକ୍, ବସ୍, ଟ୍ରାମର ସମଷ୍ଟି । ନାଲିବତୀ ପଡ଼ିଗଲେ ଆଗକୁ ଯିବାକୁ ମନା । ପୁଣି ଦଶମିନିଟ୍ ଲାଗିଯାଏ ନେଳିବତୀର ଆଗମନରେ । ଟ୍ରାଫିକ୍ ପୂରାପୂରି ଶାନ୍ତିଶୃଙ୍ଖଳା ସହ ଆଗକୁ ଚାଲିଥା'ନ୍ତି । କାର୍ ଇତ୍ୟାଦି ପାର୍କ କରିବା ପାଇଁ ସ୍ଥାନ ଖୋଜି ପାଇବା କଷ୍ଟ ।

ତାଙ୍କ ଘରେ ରାତି ପ୍ରାୟ ଆଠଟା ବେଳକୁ ପହଞ୍ଚିଲୁ । ସେ ଦାଦା ଏବଂ ଦିଦି ଦୁହେଁ ଖୁସି ହୋଇଗଲେ । କାରଣ ତାଙ୍କ ଘରକୁ ଆସିବାକୁ ସେ ବାରମ୍ବାର ଫୋନ୍ କରି ତାଙ୍କ ଘରର ରାସ୍ତା କହୁଥିଲେ । ସେଠି ହସଖୁସିର ଝରଣା ଖୋଲିଲା ।

ମୋର ବଡ଼ ଝିଅ ନମିତା ତାଙ୍କ ସହିତ ଅଧା ଓଡ଼ିଆ ଅଧା ବଙ୍ଗାଳୀ କହି ଭଲଭାବରେ ମିଶିଯାଇଥିଲା । ରମେଶ ନିର୍ଭୁଲ ବଙ୍ଗାଳୀ କହିପାରନ୍ତି । କଲିକତାରେ ଏମାନଙ୍କ ସହ ମିଶି ଚାଟାର୍ଡ ଆକାଉଣ୍ଟାଣ୍ଟ୍ ପାଠ ପଢ଼ି ଶେଷ କରିଥିଲେ । ଏମାନଙ୍କର ବାପା-ମା-ରମେଶ ଏବଂ ନମିକୁ ତାଙ୍କ ପୁଅ ଏବଂ ବୋହୂର ମର୍ଯ୍ୟାଦା ଦିଅନ୍ତି । ଭୁବନେଶ୍ୱର ଗଲେ ଦାଦା-ଦିଦି ଏବଂ ତାଙ୍କର ବାପା-ମା' ଖୁସିରେ ନମି ଘରେ କିଛିଦିନ କଟାନ୍ତି । ଏମାନଙ୍କର ବନ୍ଧୁତ୍ୱ ଦିନକୁ ଦିନ ବଢ଼ିବାରେ ଲାଗିଛି । ଆମେମାନେ ତାଙ୍କର ଅତିଥି ହେଲୁ । ଖାଇବାର ଆୟୋଜନ କରିଥିଲେ । ଆମମାନଙ୍କୁ ଛାଡ଼ିବାକୁ ସେମାନେ ପ୍ରସ୍ତୁତ ନ ଥିଲେ । ଛୋଟ ଦୁଇଟା ରୁମ୍ । ଆମର ହୋଟେଲରେ ରହିବାର ଠିକ୍ ହୋଇଛି ଶୁଣି କେବଳ ରମେଶ ନମି ଏବଂ ନାତୁଣୀ ଇପ୍‌ସିତା ତାଙ୍କ ଘରେ ରହିବେ ବୋଲି ଠିକ୍ ହେଲା । ବହୁତ ପ୍ରକାର କଥାବାର୍ତ୍ତା ପରେ ରାତ୍ରି ପ୍ରାୟ ଦଶଟାବେଳକୁ ରାତ୍ରି ଭୋଜନରେ ଆପ୍ୟାୟିତ କଲେ ।

ଏହାପରେ ସେହି ରାତ୍ରିରେ ତାଙ୍କର ଅନ୍ୟ ଜଣେ ଭଉଣୀଙ୍କ ଘରକୁ ଗଲୁ ବାଧ୍ୟବାଧକତାରେ । ସେହି ଦାଦା ଆମକୁ ବାଟ କଢ଼ାଇ ନେଇଗଲେ । ତାଙ୍କର ତିନୋଟି ଭାଇ ଏବଂ ତିନୋଟି ଭଉଣୀଙ୍କୁ ମନୁଷ୍ୟ କରିବାରେ ଚାକିରି କରି ସମୟ ଦେଇଛନ୍ତି । ସବୁ ଭାଇଭଉଣୀ ବାହା ହୋଇଛନ୍ତି । ଭାଇଭଉଣୀଙ୍କର ଦାୟିତ୍ୱ ବୁଝୁବୁଝୁ ତାଙ୍କର ବିବାହିତ ସମୟ ଗଡ଼ିଯାଇଛି । ଅବିବାହିତା ସ୍ତ୍ରୀ, ଏକା ନ ରହି ଗୋଟିଏ ଭଉଣୀକୁ ପାଖରେ ରହୁଛନ୍ତି । ହାଇସ୍କୁଲରେ ଶିକ୍ଷୟିତ୍ରୀ ଅଛନ୍ତି ସେ । ସଚ୍ଚୋଟ, ସରଳ ହୃଦୟର ସ୍ତ୍ରୀଲୋକ । ପାଖାପାଖି ପଞ୍ଚାବନରୁ ଊର୍ଦ୍ଧ୍ୱ ହେବ ଦେଖି ମନରେ ଅଭୂତପୂର୍ବ ଆନନ୍ଦର ଶିହରଣ ଆସିଲା । ବାପା-ମା'ଙ୍କ ବିୟୋଗ ପରେ ଭାଇଭଉଣୀମାନଙ୍କୁ ମନୁଷ୍ୟ କରି ଗଢ଼ିବାରେ କି ଅଦ୍ଭୁତ ଚେଷ୍ଟା କରିଛନ୍ତି ! ତାଙ୍କଠାରୁ ବିସ୍ମିତ ନୟନରେ ବିଦାୟ ନେଲୁ । ସେତେବେଳକୁ ରାତ୍ରି ପ୍ରାୟ ଏଗାରଟା ବାଜିଲାଣି । କଲିକତାର ରାସ୍ତାଘାଟ କ୍ରମଶଃ ଶୂନ୍‌ଶାନ୍ ହେବାରେ ଲାଗିଲା । ତା'ପରଦିନ ଆମମାନଙ୍କର ବେଲୋର ମଠ, ଦକ୍ଷିଣ କାଳୀ ଦର୍ଶନ କରିବାର ଥିବାରୁ ଏହି ଉତ୍ତରପଟ କଲିକତା ରାତ୍ରିରେ ପରିଦର୍ଶନ କଲୁ ଉଣାଅଧିକେ ।

ଫେରିଲାବେଳକୁ ରାସ୍ତାକଡ଼ରେ ଥିବା ବଜାରରୁ ପିଲାମାନଙ୍କ ପାଇଁ କିଛି

ପାର୍ଟପ୍ୟାଣ୍ଟ୍ କିଣିଥିଲୁ । ଆମେ ଆସି ସେହି ହୋଟେଲ୍‌ରେ ପହଞ୍ଚିଲୁ । ନିଦ୍ରାଦେବୀଙ୍କ କୋଳରେ ନିଶ୍ଚିନ୍ତରେ ଆଶ୍ରୟ ନେଲୁ ।

ସକାଳୁ ଗାଡ଼ି ଦୁଇଟି ଆସି ପହଞ୍ଚିଗଲେ । ଆମେମାନେ ପ୍ରଥମେ ଦକ୍ଷିଣକାଳୀଙ୍କୁ ଦର୍ଶନ କରିବାକୁ ମନସ୍ଥ କରି ଆଠଟା ସୁଦ୍ଧା ବାହାରିଗଲୁ । ହୋଟେଲ୍‌ଠାରୁ ପ୍ରାୟ ଚାଳିଶି କି.ମି. ବାଟ ହେବ । ବାଟରେ କଲିକତାର ଗୁଡ଼ିଏ ସୌଖୀନ ବଜାର ଥାଁଇ ଦର୍ଶନୀୟ ସ୍ଥାନ ଦେଖିଲୁ; କିନ୍ତୁ କୌଣସିଠାରେ ଗାଡ଼ି ଅଟକି ନ ଥିଲା । ରାସ୍ତାର ଭୀଷଣ ଗହଳି ଏଡ଼ାଇ ଏଡ଼ାଇ ଆମେ ଗଙ୍ଗାନଦୀର ଉପର ଦେଇ ଦକ୍ଷିଣକାଳୀଙ୍କ ପାଖରେ ପହଞ୍ଚିଲା ବେଳକୁ ପ୍ରାୟ ଦିନ ବାରଟା ବାଜିବାକୁ ମାତ୍ର ପନ୍ଦର ମିନିଟ୍ ଅଛି । କାଳୀଙ୍କର ସକାଳ ବେଳାର ଦର୍ଶନ ଠିକ୍ ୧୨ଟା ବେଳକୁ ବନ୍ଦ ହୋଇଯାଏ । ଶୀଘ୍ର ଗାଡ଼ିଗୁଡ଼ିକ ଷ୍ଟାଣ୍ଡ୍‌ରେ ରଖିଦେଇ କିଛି ଫୁଲମାଳ ଏବଂ ଭୋଗ, ଦୀପ କିଣିବା ପାଇଁ ରମେଶ ଗଲେ ।

ଆମେମାନେ ତରତର ହୋଇ ଗଙ୍ଗାନଦୀରେ ଗୋଡ଼ହାତ ଧୋଇ ଦେହରେ ପାଣି ଛିଞ୍ଚି ହୋଇ ମନ୍ଦିର ଭିତରକୁ ଏକରକମ ଦୌଡ଼ି ଦୌଡ଼ି ଗଲୁ । ସେତେବେଳକୁ ମାତ୍ର ପାଞ୍ଚମିନିଟ୍ ଅଛି । କାଳୀଙ୍କ ଦୟାରେ ସେହି ଅପେକ୍ଷାରତ ଚଳନ୍ତି ଧାଡ଼ିରେ ଠିଆ ହୋଇଗଲୁ । ରମେଶ ମଧ୍ୟ ଭୋଗ ନଡ଼ିଆ, କଦଳୀ, କନା ଇତ୍ୟାଦି ଧରି ଆସି ଧାଡ଼ିରେ ଯୋଗଦେଲେ । ସେଦିନ ଦିଅଁଙ୍କର ଦର୍ଶନ ଠିକ୍ ସମୟଠାରୁ ଦଶମିନିଟ୍ ମଧ୍ୟ ଡେରି ହେଲା । କାଳୀଙ୍କର ଆଶୀର୍ବାଦ ଥିଲା । ଆମେମାନେ ମନ ପୂରାଇ ଜଗତ୍‌ଜନନୀ ଶ୍ରୀ କାଳୀଙ୍କର ଅବର୍ଣ୍ଣନୀୟ ଶରୀରର କମନୀୟତା ଏବଂ କୋମଳତାକୁ ଦର୍ଶନ କଲୁ । ସମସ୍ତଙ୍କ ଆଖିରେ ଭକ୍ତିପୂତ ଭାବନା ଏବ କାଳୀଙ୍କ ଅପାର କରୁଣା ପାଇବା ପାଇଁ ମନ ମଧ୍ୟରେ ପ୍ରାର୍ଥନା କରୁଥିଲେ । ବୋଧହୁଏ ଆମେମାନେ ଶେଷ ଦର୍ଶନାର୍ଥୀ ଥିଲୁ । ଠିକ୍ ଆମେ ଦର୍ଶନ କରି ପୂଜା କରିବା ପରେ ଦେଉଳର ଦ୍ୱାର ମଧ୍ୟାହ୍ନ ଭୋଗ ପାଇଁ ବନ୍ଦ ହେଲା ।

ସେତିକିବେଳକୁ କାହୁଁ ଏକ ବର୍ଷା ଆସିଲା । ଆମେମାନେ ବେଢ଼ାରେ ଥିବା ମହାଦେବମାନଙ୍କୁ ସଂପୂର୍ଣ୍ଣ ଭାବରେ ଦର୍ଶନ କରିପାରିଲୁନି; କିନ୍ତୁ ରାଧାକୃଷ୍ଣଙ୍କର ଆଳତି ଦେଖିପାରିଲୁ । ମନ ଆନନ୍ଦ ହୋଇଗଲା ।

ସେତେବେଳକୁ ଖରା ମଧ୍ୟ ଜୋର୍‌ରେ ଆସିଗଲା । ସେହି ଖରାରେ ବେଢ଼ା ପରିକ୍ରମା କଲୁ । ପାଖାପାଖି ଗୋଟିଏ ଘଣ୍ଟା ଦର୍ଶନରେ ଚାଲିଗଲା । ଏହା ଭିତରେ ହିଂମାଂଶୁ ଏବଂ ରମେଶ ଯାଇ ଦେବୀଙ୍କର ପ୍ରସାଦ ସେବନ କରିବାପାଇଁ ଟିକେଟ୍ କିଣି ଆସିଲେ । ଆମେମାନେ ଆନନ୍ଦିତ ହେଲୁ । ଯାହାହେଉ, ମା' କାଳୀଙ୍କର ଅନ୍ନପ୍ରସାଦ ସେବନ କରିବାକୁ ସୁଯୋଗ ଆସିଲା । ଦେବୀଙ୍କର ଇଛାରେ ସବୁ ସମ୍ଭବ ହେଲା । ଆମେମାନେ ପ୍ରତୀକ୍ଷାଳୟରେ ଅପେକ୍ଷା କଲୁ । ପ୍ରଥମ ବ୍ୟାଚ୍ ବସିଯାଇଛନ୍ତି । ଅଧଘଣ୍ଟାରୁ ପଇଁଚାଳିଶ୍ ମିନିଟ୍ ଖାଇବାକୁ ଲାଗେ । ଗୋଟିଏ ଦଳରେ ସର୍ବୋଚ୍ଚ ଦୁଇଶହ ଜଣ ବସିପାରିବେ । ପ୍ରାୟ ଅଧଘଣ୍ଟା ପରେ ଖାଇବା ସ୍ଥାନକୁ ଗଲୁ । ଟିକେଟ୍ ଦେଖାଇ କ୍ରମିକ ନମ୍ବର ଅନୁସାରେ ତଳେ ପଡ଼ିଥିବା ଆସନରେ ବସିଲୁ । ସମସ୍ତେ ବସିସାରିଲା ପରେ ଖଲିପତ୍ର ପାଣି ଦିଆଗଲା । ଏହାପରେ ଅରୁଆ ଅନ୍ନ, ଡାଲି, ତରକାରି ପରିବେଷଣ କରାଗଲା । ପେଟ ପୂରିବା ପର୍ଯ୍ୟନ୍ତ ଅନ୍ନ, ଡାଲି, ତରକାରି ଦେଉଥିଲେ । ସବାଶେଷରେ ଅଳ୍ପ କିଛି ଖିରି ପରଶିଲେ । ଆତ୍ମା ତୃପ୍ତ ହେଲା କାଳୀଙ୍କ ପ୍ରସାଦ ପାଇ ।

ଆମେମାନେ କାଳୀ ମନ୍ଦିରରୁ ପ୍ରାୟ ଚାରିଟାବେଳକୁ ଆସି ଗାଡ଼ିରେ ବସି ବେଲୋର ମଠ ଦିଗରେ ଅଗ୍ରସର ହେଲୁ; କିନ୍ତୁ ଭିତରକୁ ଯାଇପାରିଲୁନି । ଖୋଲିବାକୁ ପ୍ରାୟ ଏକଘଣ୍ଟା ଅପେକ୍ଷା କରିବାକୁ ପଡ଼ିଥା'ନ୍ତା । ଆମ ଭିତରୁ କେବଳ ପିଲାମାନଙ୍କୁ ଛାଡ଼ିଦେଲେ ଅନ୍ୟମାନେ ଆଗରୁ ବେଲୋର ମଠ ଦେଖିଥିଲେ । ରାତି ୧୦ଟା ଟ୍ରେନ୍ ହାଓ୍ୱଡ଼ାରୁ ଭୁବନେଶ୍ୱର ଥିବାରୁ ଶୀଘ୍ର ହୋଟେଲକୁ ଫେରିଆସିବା ପାଇଁ ମନସ୍ଥ କଲୁ । ବାଟରେ ଭିକ୍ଟୋରିଆ ମେମୋରିଆଲ୍ ହଲ୍ ଦେଖିବାକୁ ପିଲାମାନେ କହିଲେ । ସ୍ୱଳ୍ପ ସମୟ ପାଇଁ ରାଜିହୋଇ ଟିକେଟ୍ କିଣା ହେଲା । ଭିତରେ ସମସ୍ତେ ପଶିଲେ । ଶୀଘ୍ର ଶୀଘ୍ର ଦେଖି ଫେରି ଆସୁ ଆସୁ ସନ୍ଧ୍ୟା ହୋଇଯାଇଥିଲା । ଭିକ୍ଟୋରିଆ ମେମୋରିଆଲ୍ ହଲ୍‌ର ଘାସ ଗାଲିଚାରେ କିଛିସମୟ ବସିଲୁ । ଏହାପରେ ଘୋଡ଼ାଟଣା ଗାଡ଼ିରେ ବସିବାକୁ ନାତିନାତୁଣୀ କହିଲେ । ଘୋଡ଼ାଟାଙ୍ଗା ଦୁଇଟା କରି ଆମେମାନେ ପ୍ରାୟ ତିନି କି.ମି. ବୁଲିଲୁ । ଟାଙ୍ଗା ପ୍ରତି ପ୍ରାୟ ୧୦୦ ଟଙ୍କା ଦେବାକୁ ପଡ଼ିଲା । ପିଲାମାନେ ଖୁସି ହେଲେ ।

ଏହାପରେ ନିକଟସ୍ଥ ବଜାରକୁ ଗଲୁ । ମନୋନୀତ ଜିନିଷମାନ କିଣିଲୁ । ଘର ପାଇଁ କିଛି କାଠ ସରଞ୍ଜାମ ଓ ଘରୋଇ ଜିନିଷ କିଣୁକିଣୁ ସନ୍ଧ୍ୟା ୭ଟା ବାଜିଲା ।

ହୋଟେଲ୍‌କୁ ଶୀଘ୍ର ଫେରିଆସିଲୁ । ହୋଟେଲ୍‌ରୁ ବିଦାୟ ନେଇ ଗାଡ଼ିରେ ଆସି ହାଓ୍ୱଡ଼ା ଷ୍ଟେସନ୍‌ରେ ପହଞ୍ଚିଲୁ ରାତି ନଅଟା ବେଳକୁ ।

ଷ୍ଟେସନ୍‌ରେ ଅପେକ୍ଷା କଲୁ । ହାଓ୍ୱଡ଼ା-ପୁରୀ ଏକସପ୍ରେସ୍‌ରେ ରାତି ୧୦ଟା ବେଳକୁ ବସିଲୁ । ଟ୍ରେନ୍ ଛାଡ଼ିଲା । ନିଜ ନିଜର ସିଟ୍‌କୁ ଯାଇ ଶୋଇବାର ବ୍ୟବସ୍ଥା କଲୁ । ହାଲିଆ ହୋଇଥିଲୁ, ସମସ୍ତେ ଆରାମରେ ନିଦ୍ରା ଗଲେ ।

ରାତି ପାହିଲାଲୁ ନିଦ ଭାଙ୍ଗିଗଲା । ଭୁବନେଶ୍ୱର ଷ୍ଟେସନ୍‌ରେ ସମସ୍ତେ ଓହ୍ଲାଇଲୁ । ହିଂମାଶୁ, ନମି, ପପୁଲ, ବବୁଲ ଗୋଟିଏ ଟ୍ୟାକ୍ସିରେ ତାଙ୍କର ଗନ୍ତବ୍ୟସ୍ଥଳ ଜୟଦେବ ବିହାର ଗଲେ । ଗଲାବେଳେ ଆମଠାରୁ ବିଦାୟ ନେଇ ହାତ ହଲାଇଲେ । ତାଙ୍କର ଟ୍ୟାକ୍ସି ଅଦୃଶ୍ୟ ହେଲା ପର୍ଯ୍ୟନ୍ତ । ନମି, ରମେଶ, ଗୁଡ୍‌ଲି ଗୋଟିଏ ଅଟୋରେ ଗଲେ ତାଙ୍କ ବମିଖାଲ ନିକଟସ୍ଥ ଘରକୁ । ସେମାନେ ମଧ୍ୟ ଆମ ଦୁହିଁଙ୍କୁ ହାତ ହଲାଇ ଚାଲିଗଲେ । ପୁଅ ଦେବାଶିଷ ଗାଡ଼ି ଧରି ଆସି ପହଞ୍ଚିଥିଲା । ତା' କାର୍‌ରେ ଆମେ ଦୁହେଁ କଟକ ରୋଡ୍‌ରେ ଥିବା ଜୟଦୁର୍ଗା ଅଭିମୁଖରେ ଚାଲିଲୁ । ଦେବାଶିଷ କାର୍ ବାଟରେ ଅଟକାଇଲା ବୁଢେଶ୍ୱରୀ ମନ୍ଦିର ନିକଟସ୍ଥ ପରିବା ଦୋକାନରେ । କିଛି ପରିବା ମଧ୍ୟ କିଣା ହେଲା । ସକାଳୁ ସକାଳୁ ଭୁବନେଶ୍ୱର ନିକଟବର୍ତ୍ତୀ ମଫସଲ ଅଞ୍ଚଳରୁ ଚାଷୀମାନେ ତାଙ୍କର ଫସଲ କରିଥିବା ବାଇଗଣ, ଭେଣ୍ଡି, ଜହ୍ନି, ବିଭିନ୍ନ ଶାଗ, କଖାରୁ, ସଜନା ଛୁଇଁ ଇତ୍ୟାଦି ପୂରା ତଟକା ଜିନିଷ ଆଣିଥା'ନ୍ତି । କାର୍ ଚାଲିଲା ପୁରୀ ଜାତୀୟ ରାଜପଥରେ ରସୁଲଗଡ଼ ଦିଗରେ । ଆମର ବାସସ୍ଥାନ ଜୟଦୁର୍ଗା ନଗର ପ୍ଲଟ୍ ନଂ. ୧୮୪(ଏଫ୍)ରେ କାର ଅଟକିଲା । ଆମେମାନେ ଘରକୁ ଗଲୁ । ନାତି ବିଭନ ବାଲ୍‌କୋନିରେ ଠିଆ ହୋଇ ଆନନ୍ଦରେ ନମସ୍କାର ଜଣାଉଥିଲା ଆମ ଦୁହିଁଙ୍କୁ ।



# ଭୁବନେଶ୍ୱରରୁ ଦିଲ୍ଲୀ ସହର
## (ଏମ୍ସ୍‌ରେ ସ୍ୱାସ୍ଥ୍ୟପରୀକ୍ଷା ଅଂଶୁମାନର)

ଏହି ୨୦୦୯ ମସିହାର ଖରାଦିନ ଅସହ୍ୟ ଥିଲା । ମେ' ମାସରେ ପ୍ରବଳ ଗରମ । ଦେହରୁ ଝାଳ ବୋହିଯାଉଥାଏ । ମଝିଆ ଝିଅ ମମିତା ଫୋନ୍ କଲା— "ନନା, ତୁମ ଦୁଇଜଣଙ୍କ ପାଇଁ ଶୀତତାପ ନିୟନ୍ତ୍ରିତ ବଗିରେ ନୀଳାଚଳ ଏକ୍ସପ୍ରେସ୍‌ରେ ଟିକେଟ୍ ହୋଇଯାଇଛି ଦିଲ୍ଲୀ ଯିବାକୁ । ଖରାଦିନ ହେଲେ କ'ଣ କରିବା, ଅଂଶୁମାନର ଦେହ ଏମ୍ସ୍ ଡାକ୍ତରଖାନାରେ ଆସନ୍ତା ୨ ବା ୩ ତାରିଖରେ ଚେକ୍ କରିବାକୁ ପଡ଼ିବ । ତୁମେ ଦୁହେଁ ଯିବାପାଇଁ ହିଂମାଂଶୁ ଟିକେଟ୍ ବୁକ୍ କରିଦେଇଛନ୍ତି ।" ଝିଅ କହୁଥିଲା ଓ ପାଖରେ ସ୍ତ୍ରୀ ବସିଥିଲେ । ସକାଳ ୮ଟା ସମୟ ହେବ । ତାଙ୍କ ମୁହଁକୁ ଚାହିଁଲି ଆଉ ଫୋନ୍‌ଟି ତାଙ୍କ ହସ୍ତକୁ ବଢ଼ାଇଦେଲି । ଦୁହେଁ କଥାବାର୍ତ୍ତା ହେଲେ । ମୁଁ କହିଲି, "ବହୁତ ଖରା, ଦିଲ୍ଲୀରେ ନିଶ୍ଚୟ ହେଉଥିବ । ଆମେ ଦୁହେଁ ନ ଗଲେ ଚଳନ୍ତା ନାହିଁ । ଖରାଟାରେ ଖାଲି ସିଝିଯିବୁ ।" ଝିଅ କହିଲା, "ନାଇଁ ଏମ୍ସରେ ମାତ୍ର ଗୋଟିଏ ଦିନ । କାମ ସରିଗଲେ ସଙ୍ଗେ ସଙ୍ଗେ ହରିଦ୍ୱାର ଚାଲିଯିବା । ସେଠାରେ ଦୁଇଦିନ, ରାମଦେବଙ୍କ ପାତଞ୍ଜଳି ଆଶ୍ରମରେ ଦୁଇଦିନ ରହିବା । ଫେରିକରି ସଙ୍ଗେ ସଙ୍ଗେ ରାତିରେ ଟ୍ରେନ୍ ଧରି ଓଡ଼ିଶା ଫେରିଆସିବା ।" କଥାଟା ମନକୁ ପାଇଲା । ତା'ପରେ ପପୁଲର ସ୍ୱାସ୍ଥ୍ୟ ପରୀକ୍ଷା ନିହାତି ଦରକାର । ହଁ କଲି । ସ୍ତ୍ରୀ ମୋ କଥାରେ ସମ୍ମତ ହେଲେ । ପରେ ସନ୍ଧ୍ୟାବେଳେ ହିଂମାଂଶୁ ସହିତ କଥାବାର୍ତ୍ତା ହେଲି । ସ୍ଥିର ହୋଇ ଟିକେଟ୍ କଟା ହେଲା ନୀଳାଚଳ ଏକ୍ସପ୍ରେସ୍‌ରେ ଥ୍ରୀ ଟାୟାର ଶୀତତାପ ନିୟନ୍ତ୍ରିତ ବଗିରେ । ଆମ ଆଠଜଣଙ୍କ ପାଇଁ ଟିକେଟ୍ ହେଲା ଯିବାଆସିବା ପାଇଁ । ଦିନ ବାରଟାବେଳେ ଟ୍ରେନ୍ ଭୁବନେଶ୍ୱର ଷ୍ଟେସନ୍‌ରୁ ଛାଡ଼ିବ । ଏହି ଟ୍ରେନ୍‌ଟି ପୁରୀ ଏବଂ ଦିଲ୍ଲୀ ଯିବାଆସିବା କରେ ।

ନିର୍ଦ୍ଦିଷ୍ଟ ଦିନ ଘରୁ ସମସ୍ତେ ଖାଇପିଇ ବାହାରିଲୁ ଷ୍ଟେସନକୁ। ପୁଅ ଦେବାଶିଷ ଆଣି ଆମକୁ ଷ୍ଟେସନରେ ଛାଡ଼ିଦେଲା। ହିଂମାଂଶୁ, ମମିତା, ଅଂଶୁମାନ ଏବଂ ଆହ୍ୱାନ ଗୋଟିଏ ଟ୍ୟାକ୍ସିରେ ଆସିଲେ ଜୟଦେବ ବିହାରଠାରୁ। ଜିନିଷମାନ ଗଣିନେଲୁ। ସାଙ୍ଗରେ ଯଥେଷ୍ଟ ପିଇବା ପାଣି ନେଲୁ। ଟ୍ରେନ୍ ସେଦିନ ଅଧଘଣ୍ଟାଏ ଡେରିରେ ଷ୍ଟେସନ୍‌ରେ ପହଞ୍ଚିଲା। ଆମେମାନେ ନିଜର ବଗିରେ ଚଢ଼ିଲୁ। ଜିନିଷପତ୍ର ନିଜର ସ୍ଥାନର ସୁରକ୍ଷିତ ଭାବରେ ରଖିଲୁ। ପପୁଲ ପାଇଁ ଯଥେଷ୍ଟ ପାଣି ଅଲଗା କରି ନିଆଗଲା।

ଟ୍ରେନ୍‌ଟି କଟକ, ଯାଜପୁର, ଭଦ୍ରକ, ବାଲେଶ୍ୱର ନିର୍ଦ୍ଧାରିତ ସମୟର ଅଧଘଣ୍ଟାକ ପରେ ଚାଲୁଥିଲା। ଆମେ ଖଡଗପୁରରେ ସନ୍ଧ୍ୟା ପୂର୍ବରୁ ପହଞ୍ଚିଗଲୁ। ଖଡ଼ଗପୁରଠାରୁ ଟାଟା ଲାଇନ୍‌ରେ ଟ୍ରେନ୍‌ଟି ମୁହାଁଇଲା ।

ପ୍ରାୟ ଦୁଇ ଘଣ୍ଟା ପରେ ଟାଟା ଷ୍ଟେସନ୍ ପାରହୋଇ ଦିଲ୍ଲୀ ମୁଖେ ଟ୍ରେନ୍ ଚାଲିଲା ଦ୍ରୁତଗତିରେ। ରାତି ହୋଇଯାଇଥିଲା। ରାତ୍ରିଭୋଜନ କଲୁ ଟ୍ରେନ୍‌ରେ। ସେତେଟା ରୁଚିକର ନ ଥିଲା ଟ୍ରେନ୍ ରନ୍ଧା ଖାଦ୍ୟ। ଅଳ୍ପ ଭାତ ସହିତ ଦୁଇଟା ରୁଟି ସାମାନ୍ୟ ସାଧା ତରକାରି ସହ ଖଟା ଖାଇବାକୁ ପସନ୍ଦ ହେଉ ନଥିଲା। ପ୍ରତି ପ୍ଲେଟ୍‌ର ଦାମ୍ ୩୫ ଟଙ୍କା ଦେବାକୁ ପଡ଼ିଥିଲା। ରାତ୍ରି କ୍ରମଶଃ ବଢ଼ିବାରେ ଲାଗିଲା। ଟ୍ରେନ୍‌ର ଗତି ବଢ଼ିଲା। ଏହ୍ଲାବାଦ ଷ୍ଟେସନକୁଂ ପ୍ରାୟ ରାତି ଦୁଇଟା ପାଖାପାଖି ଆମେମାନେ ପାର ହେଲୁ। ଆମର ବଗିଟି ଏ.ସି ହୋଇଥିବାରୁ ବନ୍ଦ କାଚ ଦେଇ ପ୍ଲାଟଫର୍ମକୁ ଦେଖିବାକୁ ପଡୁଥିଲା। ଏହାପରେ ସକାଳ ଆଠଟାବେଳକୁ ଉତ୍ତରପ୍ରଦେଶର ଶେଷ ସୀମା ଷ୍ଟେସନରେ ପହଞ୍ଚିଲୁ। ଗାଡ଼ିଟିକୁ ଏଠାରେ ପକାଇ ଦିଆଗଲା। ଲୋକାଲ୍ ଟ୍ରେନ୍‌ଗୁଡ଼ିକ ଆଗରେ ଯିବାକୁ ଦିଆଗଲା। ଆମର ଟ୍ରେନ୍‌ଟି ଦୀର୍ଘ ପ୍ରାୟ ଦେଢ଼ଘଣ୍ଟା ଏଠାରେ ପଡ଼ି ରହିବା ପରେ ଦିଲ୍ଲୀ ଅଭିମୁଖେ ଚାଲିଲା ମଧ୍ୟମ ଗତିରେ। ଦିଲ୍ଲୀ ଷ୍ଟେସନ୍‌ରେ ପହଞ୍ଚିଲାବେଳକୁ ଦିନ ୧୧ଟା ବାଜି ଯାଇଥିଲା। ମନଟା ମୋର ଖୁସି ହୋଇଗଲା। ଦିଲ୍ଲୀ ଆସିଥିଲି ପ୍ରାୟ ସାତବର୍ଷ ପୂର୍ବେ। ଏହି ସାତବର୍ଷ ଭିତରେ ଦିଲ୍ଲୀର ବହୁତ କିଛି ପରିବର୍ତ୍ତନ ହୋଇଥିବାର ଲକ୍ଷ୍ୟ କଲି।

କୁଲି ଡକାଇ ସମସ୍ତ ଜିନିଷପତ୍ର ନେଇଯିବାକୁ ଠିକ୍ କଲୁ। ଏହି ସମୟରେ

ହିମାଂଶୁର ସାନଭାଇ କୁନୁ ଆସି ପହଞ୍ଚିଗଲା ଷ୍ଟେସନରେ। ଆମେ ସମସ୍ତେ ଭାଗ ବାଣ୍ଟି ଜିନିଷପତ୍ର ନେଇ ଷ୍ଟେସନ୍ ବାହାରକୁ ଆସିଲୁ। ଦିଲ୍ଲୀର ଷ୍ଟେସନ୍‌ର ବହୁତ କିଛି ପରିବର୍ତ୍ତନ ହୋଇଛି। ସବୁ ପ୍ରାନ୍ତରୁ ଏକ୍ସପ୍ରେସ୍‌ମାନ ଆସି ଏଠାରେ ପହଞ୍ଚୁଛି। ବହୁତ ଗୁଡ଼ିଏ ପ୍ଲାଟ୍‌ଫର୍ମ ଗଠନ କରାଯାଇଛି ଆଧୁନିକ ଢାଞ୍ଚାରେ। ପ୍ଲାଟ୍‌ଫର୍ମଗୁଡ଼ିକରେ କଡ଼ା ସୁରକ୍ଷା ବ୍ୟବସ୍ଥା ହୋଇଛି। ସେସବୁ ଜାଗାରେ ଯଥାସାଧ୍ୟ ପରିଷ୍କାର ପରିଚ୍ଛନ୍ନ ଏବଂ ନିର୍ମଳ ପିଇବା ପାଣିର ବ୍ୟବସ୍ଥା ହୋଇଛି। ଆତଙ୍କବାଦର ଭୟ ଥିବାରୁ ସୁରକ୍ଷା ବାହିନୀ (ରେଲଓ୍ୱେର) ସଦାସର୍ବଦା ସଜାଗ ଅଛନ୍ତି। ଯାତ୍ରୀ ନିୟନ୍ତ୍ରଣ ଏବଂ ଯାତ୍ରୀଙ୍କର ଗମନାଗମନ ସୁବିଧାର ପର୍ଯ୍ୟାପ୍ତ ଧ୍ୟାନ ଦିଆଯାଉଛି। ପ୍ଲାଟ୍‌ଫର୍ମକୁ ଲାଗି ନୂତନ କୋଠାଘରମାନ ନିର୍ମାଣ କରାଯାଉଛି। ଲକ୍ଷ ଲକ୍ଷ ଯାତ୍ରୀଙ୍କର ସମାଗମ ହୋଇଥାଏ ଦିଲ୍ଲୀ ଷ୍ଟେସନ୍‌ରେ। କର୍ତ୍ତୃପକ୍ଷ ପୂରାପୂରି ସଜାଗ ରହନ୍ତି ଯାତ୍ରୀ ଏବଂ ରେଲଓ୍ୱେର ସୁରକ୍ଷା ପାଇଁ।

ଆମେମାନେ ଷ୍ଟେସନ୍ ବାହାରକୁ ଜିନିଷପତ୍ର ଧରି ବାହାରିଲୁ। କୁନୁ ଆଗେ ଆଗେ ଯାଇ ବୋଲେରୋ ଗାଡ଼ିରେ ଜିନିଷପତ୍ର ଭର୍ତ୍ତି କଲେ। ମୁଁ ଡ୍ରାଇଭର ପାଖ ସିଟ୍‌ରେ ବସିଲି। ଆଉ ସମସ୍ତେ ପଛ ସିଟ୍‌ରେ ବସିଲେ। ଗାଡ଼ି ଛୁଟିଲା କୁନୁର ବସାଘର ଆଡ଼କୁ। ଦିଲ୍ଲୀ ଷ୍ଟେସନ୍ ଠାରୁ ପ୍ରାୟ କୋଡ଼ିଏ କି.ମି. ଦୂରରେ ଥିବା ଦ୍ୱାରକା ଅଞ୍ଚଳରେ। କୁନୁ ଦିଲ୍ଲୀର ଏକ ସପ୍ଲାଇ ସଂସ୍ଥାରେ ମ୍ୟାନେଜର ଅଛନ୍ତି। ଗୋଟିଏ ଫ୍ଲାଟ୍ ଘର ଭଡ଼ାରେ ନେଇଛନ୍ତି। ଅଫିସକୁ ନିଜର କାର୍‌ରେ ସବୁଦିନ ଯିବାଆସିବା କରନ୍ତି। ଦିଲ୍ଲୀରେ ସ୍ତ୍ରୀ ସହ ରହନ୍ତି।

ଗାଡ଼ି ଆସି ତାଙ୍କର ଦ୍ୱାର ମୁହଁରେ ପହଞ୍ଚିଲା। ଗାଡ଼ିରୁ ଜିନିଷପତ୍ର ସମସ୍ତେ ବୋହିନେଲେ। ଦ୍ୱିତୀୟ ମହଲାରେ ତା'ର ଘର। ଏହି ଅଞ୍ଚଳରେ ଖାଲି ଫ୍ଲାଟ୍ ଭର୍ତ୍ତି ହୋଇଛି। ସାତ ଆଠ ମହଲା ବିଶିଷ୍ଟ। ଏହି ଯାଗାଟିର ଚାରିପଟେ ପାଚେରୀ ବୁଲିଛି। ମୁହଁରେ ତନଖି-ଫାଟକ ଅଛି। ସିକ୍ୟୁରିଟ୍ ଯଥା ପରିଚୟ ଏବଂ ଯାଞ୍ଚ କରି ଗାଡ଼ି ଭିତରକୁ ନେବାକୁ ଅନୁମତି ଦେଇଥାଏ। ଘର ଭିତରକୁ ଗଲୁ ସିଡ଼ି ଦେଇ। ଦୁଇ ବଖରା ଘର, ଗୋଟିଏ ବେଡ୍ ରୁମ୍, ଆଉ ଗୋଟିଏ ଛୋଟ ରୁମ୍ ଏବଂ ଡାଇଣ୍ଡ ଘରଟି ଅପେକ୍ଷାକୃତ ବଡ଼।

ତା' ସ୍ତ୍ରୀ ବହୁତ ଆନନ୍ଦିତ ହେଲା । ଆମମାନଙ୍କର ଆଶୀର୍ବାଦ ନେଲା । ପିଲାମାନଙ୍କୁ ସ୍ନେହ ଦେଲୁ ।

ସରଳା ଝିଅଟେ । ସଦାସର୍ବଦା ଦିଅଁ-ଦେବତାଙ୍କର କାର୍ଯ୍ୟରେ ମନୋନିବେଶ କରିଥାଏ । ଦେବୀ-ଦେବତାଙ୍କ ପାଖରେ ଶରଣ ପଶିଛି ଗୋଟିଏ ସନ୍ତାନ ପାଇଁ । ପ୍ରତ୍ୟେକ ସ୍ତ୍ରୀ ଚାହେଁ, ତା'ର ନିଜର ଗୋଟିଏ ସନ୍ତାନ ହେଉ । ଭଗବାନଙ୍କଠାରେ ସନ୍ତାନ ଭିକ୍ଷା କରେ ବଂଶର ସମ୍ମାନ ରକ୍ଷା ପାଇଁ । ଧନ୍ୟ କହିବା ଭାରତୀୟ ନାରୀଙ୍କୁ ।

କୁନୁର ସ୍ତ୍ରୀ ଚିକି ଆମମାନଙ୍କ ପାଇଁ ଦିନର ଭୋଜନ ବାଢ଼ିଦେଲା । ଆମେମାନେ ଗାଧୋଇ ପାଧୋଇ, ଲୁଗା ବଦଳାଇ ଆରାମରେ ଖାଇବା ଟେବୁଲ୍‌ରେ ବସିଲୁ । ସମସ୍ତଙ୍କୁ ହସ ହସ ମୁହଁରେ ଖାଦ୍ୟ ପରଶି ଦେଲା । ଆମେମାନେ ଖୁସି ହୋଇ ଖାଇଲୁ । ଭଲ ରାନ୍ଧିଥିଲା ।

ସେଦିନ ସନ୍ଧ୍ୟାରେ କୁନୁ ତା'ର କାର୍‌ରେ ଆମମାନଙ୍କୁ ନେଇ ଦ୍ୱାରକା ଅଞ୍ଚଳରେ ଥିବା ଦୋକାନ ବଜାର ବୁଲାଇଥିଲା । ଆମର ନିତ୍ୟ ବ୍ୟବହାର୍ଯ୍ୟ କିଛି ଜିନିଷ ମଧ୍ୟ କିଣିଥିଲୁ । ଦିଲ୍ଲୀର ଏହି ଅଞ୍ଚଳ କ୍ରମଶଃ ଉନ୍ନତ ହେବାକୁ ଯାଉଛି । ଅପେକ୍ଷାକୃତ କମ୍ ଜନଗହଳି ଏବଂ ଟ୍ରାଫିକ୍ ମଧ୍ୟ । ଆମମାନଙ୍କୁ ବହୁତ ଭଲ ଲାଗିଲା ଏହି ଅଞ୍ଚଳର ପ୍ରାକୃତିକ ଶୋଭା ଦେଖି । ଘରକୁ ଫେରୁ ଫେରୁ ରାତି ଦଶଟା ହୋଇଥିଲା । ଆମେମାନେ ହାତଗୋଡ଼ ଧୋଇ ରାତ୍ରିର ଭୋଜନ କଲୁ । ହିମାଂଶୁ, ପ୍ରଫୁଲ୍ଲ, ବବୁଲୁ ଏବଂ ମୁଁ ଶୋଇଗଲୁ ।

ଶୈଳବାଳା ଦାଣ୍ଡ ଘରେ ପଡ଼ିଥିବା ଗୋଟିଏ ଖଟରେ ଶୋଇପଡ଼ିଲେ । ମଶାଙ୍କର ତାଣ୍ଡବ ନୃତ୍ୟକୁ ଖାତିର ନ କରି ସମସ୍ତେ ଶୋଇପଡ଼ିଲେ; କିନ୍ତୁ ସେଇ ରାତିରେ କୁନୁର ସଢୁ ଦୁବାଇରୁ ଆସି ପହଞ୍ଚିଲେ । ତାଙ୍କର ସ୍ତ୍ରୀ ଏବଂ ଝିଅଟିଏ । ସେମାନେ ସମସ୍ତେ ଖାଲିଥିବା ଛୋଟ ଘରେ ପଙ୍ଖା ଲଗାଇ ଶୋଇଲେ । ସବୁସ୍ଥାନ ପରି ଭାରତର ରାଜଧାନୀ ଦିଲ୍ଲୀରେ ମଧ୍ୟ ମଶା ନିଜର ମଜଭୂତ ଆସନ ଜମାଇ ରହିଛନ୍ତି ।

ସକାଳ ପାହିଲା । ଆମେମାନେ ପ୍ରସ୍ତୁତ ହେଲୁ ପପୁଲକୁ ଏମ୍‌ସ୍ ନେଇ ଯିବୁ ଡାକ୍ତରଙ୍କୁ ଦେଖାଇବାକୁ । ବଡ଼ି ସକାଳୁ ମଧ୍ୟ ସେହି କୁନୁର ସତୁ ମହାଶୟ ତାଙ୍କର ଛୋଟ ପରିବାରକୁ ନିଜର କ୍ୱାର୍ଟର ପ୍ରାୟ ପନ୍ଦର କି.ମି. ନେବାକୁ ଟ୍ୟାକ୍ସି ଡକାଇଛନ୍ତି ।

ମୋର ସ୍ତ୍ରୀ ତାଙ୍କର ସେହି ଗୁଲୁଗୁଲିଆ ଝିଅଟି ହାତରେ ଶହେ ଟଙ୍କା ଦେଲେ । ସେମାନେ ଆମଠାରୁ ବିଦାୟ ନେଇଗଲେ । ତାଙ୍କୁ ବିଦାୟ ଦେବାକୁ କୁନୁ ଏବଂ ତା' ସ୍ତ୍ରୀ ଦାଣ୍ଡଦୁଆର ପର୍ଯ୍ୟନ୍ତ ଗଲେ । ଆମେମାନେ ମଧ୍ୟ ଯାଇଥିଲୁ । ଛୋଟ ଝିଅଟି କୁଲୁକୁଲୁ ଆଖିରେ ଆମକୁ ଚାହିଁଥାଏ । ଆମେମାନେ ଶୀଘ୍ର କୁନୁର କାର୍‌ରେ ଏମ୍‌ସ୍‌କୁ ବାହାରିଲୁ ପ୍ରାୟ ୭.୩୦ ମିନିଟ୍ ମଧ୍ୟରେ । କାର୍‌ର ଆଗରେ ହିମାଂଶୁ ଏବଂ କୁନୁ ବସିଲେ । ପଛରେ ମୁଁ ମମି, ପପୁଲ, ବବୁଲ ଏବଂ ମୋର ସ୍ତ୍ରୀ ଖୁନ୍ଦାଖୁନ୍ଦି ହୋଇ ବସିଥିଲେ ।

ଦିଲ୍ଲୀର ବିଭିନ୍ନ ମୁଖ୍ୟ ରାସ୍ତା, ଗଳି ରାସ୍ତା ଦେଇ ଆଗକୁ ବାହାରିଲୁ । ଦ୍ୱାରକାରୁ ମେଡ଼ିକାଲ୍ ହେଉଛି ପ୍ରାୟ ପନ୍ଦର କି.ମି. । ଟ୍ରାଫିକ୍ କ୍ରମଶଃ ଗହଳି ହେଉଥାଏ । ଆମେମାନେ କାର୍‌ରୁ ଓହ୍ଲାଇ ପ୍ରତୀକ୍ଷା କୋଠରିରେ ବସିଲୁ । ସେମାନେ ଅଂଶୁମାନର କାଗଜପତ୍ର ନେଇ ପୁନଶ୍ଚ ମଧ୍ୟସ୍ଥ କରିଆରେ ପ୍ରବେଶ ପତ୍ର ଟିକେଟ୍ କରି ଆଣିଲେ । ଅଂଶୁମାନର ଦେହ ଦେଖାହେବ । ଦୁଇ ଜଣ ଡାକ୍ତର । ଜଣେ ହେଲେ ମେଡିସିନ୍ ବିଶେଷଜ୍ଞ, ଅନ୍ୟଜଣକ ହେଲେ ଡାକ୍ତର ।

ଏହି ହସପିଟାଲ୍‌ରେ ଅଂଶୁମାନ ଫେବୃଆରୀ ମାସରେ ଜ୍ୱର ରୋଗରେ ଆକ୍ରାନ୍ତ ହୋଇ ଆଡ୍‌ମିଶନ୍ ନେଇଥିଲା । ଭୁବନେଶ୍ୱରରେ ହଠାତ୍ ବସନ୍ତ ପଞ୍ଚମୀ ଦିନ ଜ୍ୱର ଆସିଲା । ଯେତେ ଔଷଧ ଖାଇଲେ ମଧ୍ୟ ଜ୍ୱର ଛାଡ଼ିଲାନି । ଭୁବନେଶ୍ୱରରେ କର କ୍ଲିନିକ୍‌ରେ ଡକ୍ଟର ମିଶ୍ର ଦେଖିଥିଲେ । ଔଷଧ ନଦେଇ ଭିଟାମିନ୍ ପ୍ରିଭେଣ୍ଟିଭ୍ ଇଞ୍ଜେକ୍‌ସନ୍ ଦେଲେ । ସବୁପ୍ରକାର ରକ୍ତ, ଝାଡ଼ା, ପରିସ୍ରା ପରୀକ୍ଷା ହେଲା । ସବୁ ଭଲ । କଟକରେ ଡକ୍ଟର ସି.ଭି. ମୂର୍ତ୍ତି ଦେଖି କହିଲେ, "ଯଦି ଜ୍ୱର ୧୦୨° ରହିବ, ସଙ୍ଗେସଙ୍ଗେ ହସ୍‌ପିଟାଲରେ ଆଡ୍‌ମିଶନ୍ କରିଦେବ । ଜ୍ୱରକୁ ଶହେ ଦୁଇରୁ ବଢ଼ାଇବ ନହିଁ ।" କ୍ରମେ ତା'ର ଅଣ୍ଟା ଏବଂ ଚାଲିବାରେ କଷ୍ଟ

ଅନୁଭବ କଲା । ଚାଲିପାରିଲା ନାହିଁ । ଜ୍ୱର ଛାଡ଼ିବାକୁ ନାହିଁ । ପ୍ରାୟ ପନ୍ଦର ଦିନ ବିତିଗଲା । ଉପାୟ କିଛି ନ ଥିଲା । ତାଙ୍କର ସାନଭାଇ କୁନୁ ଫୋନ୍‌ରେ କହିଲେ, "ଦିଲ୍ଲୀ ଘେନିଆସ, ଏଠାରେ ଭଲ ଭଲ ହସପିଟାଲ୍ ଅଛି ଦେଖାଇବା ।" ଜ୍ୱାଇଁ ଏବଂ ଝିଅ ତତ୍‌କ୍ଷଣାତ୍ ନାତିଦୁଇଜଣଙ୍କୁ ଧରି ଦିଲ୍ଲୀ ଚାଲିଗଲେ ପ୍ଲେନ୍‌ରେ । ଆମେ ଯାଇଥିଲୁ ବିମାନ ବନ୍ଦରକୁ । ସେମାନଙ୍କୁ ସଦିଚ୍ଛା ଜଣାଇ ପପୁଲକୁ ସାହସ ଧରିବାକୁ କହିଥିଲୁ ।

ଏହି ଏ.ଏମ୍.ଏସ୍‌ରେ ପ୍ରାୟ ଏକ ମାସ ରହିଲା ପପୁଲୁ । ଡାକ୍ତରମାନେ ବହୁତ ପରୀକ୍ଷା ନିରୀକ୍ଷା କଲେ, ହେଲେ ଜ୍ୱର ହେବାର କୌଣସି କାରଣ ଜାଣିପାରିଲେନି; କିନ୍ତୁ ତା'ର ଗଣ୍ଡମାଳାରେ ବାହାରିଥିବା କେତୋଟି ନୂତନ ଘା' ସଦୃଶ ଯାଗାରୁ ଦୁଇଥର ପରୀକ୍ଷା ପାଇଁ ଦେଇଥିଲେ । ରିପୋର୍ଟରେ ରକ୍ତ ସଂକ୍ରମିତ ରିପୋର୍ଟ ଆସିଲା; କିନ୍ତୁ ସଂକ୍ରମଣ କିଛି ଅଧିକ ନ ଥିଲା । ଏହା ଆଫ୍ରିକାର ରୋଗ ବୋଲି ଚିହ୍ନଟ କଲେ । ଅନ୍ୟର ପାଣି ଅଇଁଠା କରି ପିଇବା, ଅନ୍ୟଠାରୁ ସଂକ୍ରମିତ ଏହି ରୋଗ ଆସିଥାଇପାରେ ବୋଲି ଅନୁମାନ କଲେ ।

କିନ୍ତୁ ସବୁକୁ ମିଥ୍ୟା ପ୍ରମାଣିତ କରି ଅଂଶୁମାନର ଜ୍ୱର ହଠାତ୍ କମିଗଲା ଏବଂ ଏକ ସପ୍ତାହ ମଧ୍ୟରେ ସଂପୂର୍ଣ୍ଣ ଆରୋଗ୍ୟ ହୋଇଗଲା । ଭଗବାନଙ୍କର ବିଚିତ୍ର ବିଚାର ଦେଖିବାକୁ ମିଳିଲା । ଏମ୍‌ସ୍‌ରେ ଭିଟାମିନ୍ ଛଡ଼ା ଅନ୍ୟ କୌଣସି ଔଷଧ ଦେଇ ନ ଥିଲେ । ଅଂଶୁମାନ କ୍ୟାବିନ୍‌ରେ ରହି ଚିକିତ୍ସା ହେଉଥିଲା । ପାଖରେ ମମି ଏବଂ ପାପା ରହୁଥିଲେ । ଜେଜେବାପା କୁନୁ ଘରୁ ଖାଦ୍ୟପଦାର୍ଥ ଧରି ପ୍ରତ୍ୟେକ ଦିନ ଟ୍ୟାକ୍‌ସିରେ ଆସୁଥିଲେ । ନାତି ତାଙ୍କର ଜୀବନ । ତା'ରି ପାଇଁ ବିଶେଷ ବ୍ୟାକୁଳ ହେଉଥିଲେ । ତାଙ୍କର ଅଡ଼ଷଠୀ ବୟସର ଚାପାକୁ ଭ୍ରୂକ୍ଷେପ ନ କରି ନାତିର ମଙ୍ଗଳ ପାଇଁ ଅହରହ ଭଗବାନଙ୍କ ଠାରେ ଗୁହାରି ପଡ଼ିଥିଲେ । ଅଂଶୁମାନକୁ ନିଜ ଆତ୍ମାର ଗୋଟିଏ ଅଂଶ ବୋଲି ଭାବି ତା'ର ଜ୍ୱର ସମୟରେ ଅହରହ ଆଖିରୁ ଲୁହ ଗଡ଼ାଇଥିଲେ । ଏହା ଲେଖିଲାବେଳକୁ ୨୭.୦୭.୦୯ । ମୁଁ ଥିଲି ସ୍ତ୍ରୀ ସହିତ ଗୋଆ ପାଖ କାରବାର ସହରରେ ମୋର ସାନ ଝିଅ ପାଖରେ । ଆଉ ଦୁଃଖପୂର୍ଣ୍ଣ ଖବର

ପାଇଲି ଯେ, ମୋର ସମୁଦି ଚନ୍ଦ୍ରଶେଖରଙ୍କର ମୂତ୍ରାଶୟରେ ସଂକ୍ରମିତ ରୋଗରେ ପୀଡ଼ିତ ହୋଇ ଦିଲ୍ଲୀ ଯିବେ ହସ୍‌ପିଟାଲକୁ ଚିକିତ୍ସା ପାଇଁ ପ୍ଲେନ୍‌ରେ । ସଙ୍ଗରେ ଜ୍ୱାଇଁ ହିମାଂଶୁ, ଆଉ ବିଷ୍ଣୁବାବୁ ଏବଂ ସମୁଦୁଣୀ ଯିବେ। କୁନୁ ଦିଲ୍ଲୀରେ ଡାକ୍ତର ଠିକ୍ କରିଛି।

କ୍ରମଶଃ ମୋର ନାତି ଅଂଶୁମାନ ଭଲ ହୋଇଗଲା । ଡାକ୍ତରଖାନାରୁ ଡିସ୍‌ଚାର୍ଯ୍ୟ ହେଲା । ଡାକ୍ତର ଲେଖିଥିଲେ ପୁନଶ୍ଚ ଏକ ମାସ ପରେ ଆସି ଏଠାରେ ଡାକ୍ତରୀ ପରୀକ୍ଷା କରାଇନେବାକୁ ।

ଯାହାହେଉ, ଅକ୍ଳାନ୍ତ ତିନି ଘଣ୍ଟାର ପରିଶ୍ରମ ପରେ ଦୁଇ ଜଣ ଡାକ୍ତର ପାଳିକରି ଜଣକ ପରେ ଜଣେ ତାଙ୍କର କ୍ୟାବିନ୍‌ରେ ପପୁଲକୁ ଆମୂଳଚୂଳ ପରୀକ୍ଷା କରି ରୋଗ ନ ଥିବାର ଦର୍ଶାଇଲେ ମନ ସନ୍ତୋଷରେ। ଡାକ୍ତର ପପୁଲ ସଙ୍ଗେ ହ୍ୟାଣ୍ଡସେକ୍ କଲେ । ଆମେମାନେ ଆଶ୍ୱସ୍ତ ହେଲୁ । ଡାକ୍ତର ଦୁଇଜଣଯାକ କହିଲେ, "ସଦାବେଳେ ପ୍ରୋଟିନ୍‌ଯୁକ୍ତ ଖାଦ୍ୟ ଏବଂ ଫଳ ପପୁଲକୁ ପ୍ରାୟ ଏକବର୍ଷ ଧରି ଖୁଆଇବାକୁ ପଡ଼ିବ ।" ଡାକ୍ତରମାନଙ୍କୁ ଧନ୍ୟବାଦ୍ ଦେଇ ଫେରିଲୁ ।

ଏହାପରେ କୁନୁର କାର୍‌ରେ ତା'ର ଘରକୁ ଫେରିଗଲୁ । ବାଟରେ ଜଗନ୍ନାଥ ମନ୍ଦିର ପଡ଼ିଥିଲା । ସେଠାରୁ ରାତ୍ରିର ଦର୍ଶନ ଏବଂ ପ୍ରସାଦ ସେବନ ପାଇଁ ଆବଶ୍ୟକ ଟିକେଟ୍ କୁନୁ କିଣିଆଣିଲେ। ଆମେ ବାହାରୁ ବନ୍ଦଥିବା ଜଗନ୍ନାଥ ମନ୍ଦିର ଏବଂ ପ୍ରଭୁଙ୍କୁ ନମସ୍କାର କରି ଫେରିଆସିଲୁ ।

କିଛି କିଛି ଦର୍ଶନୀୟ ସ୍ଥାନ, ପାର୍ଲାମେଣ୍ଟ ଭବନ, ରାଷ୍ଟ୍ରପତି ଭବନ, ଜବାହାରଲାଲ ନେହେରୁ ସଂଗ୍ରହାଳୟ, ଇନ୍ଦିରାଗାନ୍ଧୀ ହତ୍ୟା ସ୍ଥାନ, ମସଜିଦ୍ ଇତ୍ୟାଦି ଦେଖିଲୁ ।

ଘରକୁ ଫେରିଆସିଲୁ ପ୍ରାୟ ସାଢ଼େ ଦୁଇଟା ହେବ । ଦ୍ୱିପ୍ରହର ଭୋଜନରେ ନିରାମିଷ ଥିଲା । ସମସ୍ତେ ଖାଇପିଇ ସନ୍ଧ୍ୟା ପର୍ଯ୍ୟନ୍ତ ହାଲିଆ ମେଣ୍ଟାଇବା ପାଇଁ ଶଯ୍ୟାକୁ ଗଲୁ ।

ସନ୍ଧ୍ୟାବେଳ ହୋଇଗଲା । ଉଠିଲୁ । ନିତ୍ୟକ୍ରମ ସାରି ଗୋଟିଏ କପ୍ ଚା' ପିଇଲୁ । ଅନ୍ୟମାନେ ଚା' ସହିତ କିଛି ଜଳଖିଆ ଖାଇଲେ । ଆସନ୍ତାକାଲି ଆମେମାନେ ହରିଦ୍ୱାର ଯିବାପାଇଁ ଠିକ୍ କରିଥିଲୁ । ସେଥିପାଇଁ ଗାଡ଼ି ମଧ୍ୟ ଠିକ୍ ହୋଇଯାଇଥିଲା ।

ଦିଲ୍ଲୀରେ ଗ୍ରୀଷ୍ମର କରାଳ ତାଣ୍ଡବ ନୃତ୍ୟ ଦେଖିବାକୁ ମିଳୁଥିଲା । ସାରା ସହର ଅଗ୍ନିବର୍ଷା ହେଉଥିଲା । ସେଦିନ ପାଖ ଦୋକାନକୁ ଯାଇ ବୁଲି ଆସିଥିଲୁ । ପରଦିନ ହରିଦ୍ୱାର ଯିବା ପାଇଁ ପ୍ରସ୍ତୁତ ହେଲୁ ।

## ହରିଦ୍ୱାର ଦର୍ଶନ

ପରଦିନ ବଡ଼ି ସକାଳୁ ଉଠି ନିତ୍ୟକର୍ମ ସାରିଦେଲୁ । କିଛି ଜଳଖିଆ ଖାଇନେଲୁ । ବୋଲର୍ ଗାଡ଼ି ଆସି ଠିଆ ହୋଇଗଲା ସକାଳ ଆଠଟାରେ । କୁନୁ ଘରଠାରୁ ସିଧା ହରିଦ୍ୱାର ଯିବୁ । କୁନୁ ଏବଂ ତା'ର ସ୍ତ୍ରୀ ଟିକି ଅଳ୍ପଦିନ ତଳେ ହରିଦ୍ୱାର ଯାଇଥିଲେ । ପୁନଶ୍ଚ କୁନୁଙ୍କର ଅଫିସ୍ ଥିଲା । ଆବଶ୍ୟକୀୟ ଜିନିଷପତ୍ର ସହ ପ୍ରଚୁର ପାଣି ନେଇଥିଲୁ ।

ସାଢ଼େ ଆଠଟା ବେଳକୁ ଗ୍ରୀଷ୍ମର କଣ୍ଟକମୟ ସ୍ପର୍ଶ ପାଇବାକୁ ଅନୁଭବ କଲୁ । ସୂର୍ଯ୍ୟଙ୍କର ତୀକ୍ଷ୍ଣ ରଶ୍ମି କ୍ରମଶଃ ବଢ଼ିବାକୁ ଲାଗିଲା । ଆମେ ଘର ଛାଡୁଛାଡୁ ପ୍ରାୟ ସମୟ ନଅଟା ବାଜିବାକୁ ପାଞ୍ଚମିନିଟ୍ ଥିଲା । ଗାଡ଼ି ଦିଲ୍ଲୀ ସହର ଭେଦକରି ଆଗକୁ ଆଗକୁ ଗତି କରୁଥାଏ । ଦିଲ୍ଲୀ ସହରର ପ୍ରଧାନ ରାସ୍ତା ଦେଇ ଗଲାବେଳେ ପୁନଶ୍ଚ ଏଏମ୍ସ୍ ପଡ଼ିଲା । ତା' ଆଗରୁ ଫ୍ଲାଇଓଭର ଦେଇ ଦିଲ୍ଲୀ ଉତ୍ତରାଞ୍ଚଳକୁ ପଡ଼ିଥିବା ଜାତୀୟ ରାଜପଥରେ ପଦାର୍ପଣ କଲୁ । ଫ୍ଲାଇଓଭର ଚଢ଼ିବା ପୂର୍ବରୁ ଦୂରରୁ 'ଅକ୍ଷୟଧାମ' ମନ୍ଦିର ଦର୍ଶନ କଲୁ । ହରିଦ୍ୱାରରୁ ଫେରିବା ପରେ 'ଅକ୍ଷୟ ଧାମ' ହିନ୍ଦୁ ମନ୍ଦିର ଦର୍ଶନ କରିବୁ ବୋଲି ମନରେ ସିଦ୍ଧାନ୍ତ କଲୁ । ଦିଲ୍ଲୀ ସହର ଶେଷ ପ୍ରାନ୍ତରେ ଏବଂ ଉତ୍ତର ପ୍ରଦେଶରେ ଗାଡ଼ି ପହଞ୍ଚିବା ପୂର୍ବରୁ ଦଉଡ଼ିରେ ବହୁତ

ପୂର୍ବରୁ ଯମୁନା ନଦୀ ସେତୁ ପାର ହୋଇଥିଲୁ । ଯମୁନାରେ ବିଶେଷ ପାଣି ନ ଥିଲା; କିନ୍ତୁ ଏହାର ପ୍ରଭାବ ଦିଲ୍ଲୀବାସୀ ଅନୁଭବ କରନ୍ତି ବର୍ଷାଋତୁରେ । ପ୍ରଳୟଙ୍କରୀ ବନ୍ୟା ଆସେ ଏବଂ ପାଖାପାଖି ଅଞ୍ଚଳ ବୁଡ଼ାଇଦିଏ । ଗରିବ, ନିମ୍ନମଧ୍ୟବିତ୍ତ ଲୋକମାନେ ବହୁତ ଆର୍ଥିକ ଦୁର୍ଦ୍ଦଶାର ସମ୍ମୁଖୀନ ହୁଅନ୍ତି । ଦିଲ୍ଲୀ ସହରକୁ ପାନୀୟ ଜଳ ଏହି ଯମୁନା ନଦୀରୁ ଯୋଗାଇ ଦିଆଯାଇଥାଏ ।

ନଇଡ଼ା ସହର ଦେଇ ଆସିଲୁ । ଏହି ସହରଟି ଦିଲ୍ଲୀର ଶେଷ ସୀମାରେ ଅବସ୍ଥିତ । ଶିଳ୍ପାଞ୍ଚଳ ଏବଂ ବହୁତ ଫ୍ଲାଟ୍ ତିଆରି ହୋଇ ଜନବସତିର ପୁନରୁଦ୍ଧାର କରାଯାଇଛି । ଦିଲ୍ଲୀର ବଡ଼ ବଡ଼ ବ୍ୟବସାୟୀ ଏବଂ ଶିଳ୍ପପତିମାନେ ନଇଡାରେ ତାଙ୍କର କଳ, କାରଖାନା, ବ୍ୟବସାୟ ଚଳାଇ ରଖିଥା'ନ୍ତି ।

ନଇଡ଼ା ପରେ ଆମେ ଉତ୍ତରପ୍ରଦେଶର କିଛି ବାଟ ଗଲୁ । ଏହାପରେ ଉତ୍ତରାଞ୍ଚଳର ରାସ୍ତାକୁ ଗଲୁ । ପୂର୍ବରୁ ଉତ୍ତରପ୍ରଦେଶର ଏକ ଅଙ୍ଗ ହୋଇ ଉତ୍ତରାଞ୍ଚଳ ଥିଲା । ଜନଗଣନା ଅନୁସାରେ କ୍ରମଶଃ ଜନସଂଖ୍ୟା ବଢ଼ିବାରେ ପାର୍ବତ୍ୟ ଅଞ୍ଚଳକୁ ଶାସନର ସୁବିଧା ପାଇଁ ଏହାକୁ ଗଠନ କରାଗଲା ଉତ୍ତରପ୍ରଦେଶର ଉତ୍ତର ପଶ୍ଚିମରେ ଥିବା ପାର୍ବତ୍ୟ ଅଞ୍ଚଳକୁ ନେଇ । ଏହି ସମୟରେ ମଧ୍ୟପ୍ରଦେଶରୁ ଅଲଗା ହୋଇ ଛତିଶଗଡ଼ ଏବଂ ବିହାରରୁ ଅଲଗା ହୋଇ ଝାଡ଼ଖଣ୍ଡ ପ୍ରଦେଶମାନ ଗଠିତ ହେଲା ।

ଆମମାନଙ୍କର ଯାତ୍ରା କ୍ରମଶଃ ଉତ୍ତର ଦିଗକୁ ଥିଲା । କ୍ରମଶଃ ଦିନ ବଢ଼ିବାକୁ ଲାଗିଲା । ସୂର୍ଯ୍ୟଙ୍କର ତୀବ୍ର ରଶ୍ମି ଆମକୁ ଗାଡ଼ି ଭିତରେ ଥିବା ଏ.ସି. ଯୋଗୁଁ ବିଭ୍ରାନ୍ତ କରିପାରି ନଥିଲା; ଅଥଚ ରାସ୍ତାଘାଟ ଜଳୁଥିଲା ପରି ମନେହେଉଥିଲା । ଜନଗହଳି ରାସ୍ତାରେ ଗାଡ଼ି, ମୋଟର, ବସ୍ ଓ ଟ୍ରକ୍ ଛଡ଼ା କାଁ ଭାଁ ମୋଟର ସାଇକେଲ୍ ଦିଶୁଥିଲା । ରାସ୍ତାର କଡ଼ରେ ଥିବା ଦୋକାନମାନଙ୍କରେ ଚାଲୁଥିବା ଲୋକମାନେ ସାମୟିକ ଭାବରେ ଆଶ୍ରୟ ନେଉଥିଲେ ।

ସନ୍ଧ୍ୟା ସାତଟା ବାଜିଲା । ଆମର ଟ୍ୟାକ୍ସି ହୋଇଥିବାରୁ ଦିଲ୍ଲୀର ଗାଡ଼ି ନିୟମାନୁସାରେ ଉତ୍ତରପ୍ରଦେଶ ସରକାରକୁ କର ଦେବାକୁ ପଡ଼ିଲା ଏବଂ ଉତ୍ତରାଞ୍ଚଳ ସରକାରଙ୍କୁ ମଧ୍ୟ କର ଦେବାକୁ ହେଲା । ଗାଡ଼ିପିଛା ପଚାଶ ଟଙ୍କା ପଡ଼ିଲା ।

ଏହାପରେ ଗାଡ଼ି ଯାଇ ଚିରାଚରିତ ସେହି ବିରାଟ ପରିଚିତ ହୋଟେଲ୍‌ରେ ପହଞ୍ଚିଲା । ପୂର୍ବଥର ପ୍ରାୟ ସାତବର୍ଷ ପୂର୍ବେ ହରିଦ୍ୱାର ଏବଂ ଋଷିକେଶ ଆସିଥିଲାବେଳେ ଏହି ହୋଟେଲ୍‌ରେ ଖାଇଥିଲୁ । ଏଥରକ ଆମେ କିଛି କହିବା ଆଗରୁ ଡ୍ରାଇଭର ଗାଡ଼ି ନେଇ ସେଠି ହୋଟେଲ ଆଗରେ ଠିଆ କରେଇଦେଲା । ସେ ହସି ହସି କହିଲା, "ଏଇଟି ଏକମାତ୍ର ସବୁଠାରୁ ଭଲ ହୋଟେଲ୍, ଆପଣ ଖାଇ ନିଅନ୍ତୁ ।"

ଗାଡ଼ିରୁ ପିଇବା ପାଣି ନେଇ ବାହାରିଲୁ । ଏହି ହୋଟେଲ୍‌ଟି ଦୁଇମହଲା ବିଶାଳ କ୍ଷେତ୍ର ଅଧିକାର କରିଛି । ସ୍ୱାଗତ ଲେଖା ସମ୍ମୁଖରେ ମାରିଛି । ଧୁଆଧୋଇ ହେବାକୁ ଶୀତଳ ଜଳର ବ୍ୟବସ୍ଥା । ଦେଖିବାର କଥା ଗାଧୁଆଘର, ପରିଶ୍ରାଗାର, ପାଇଖାନା ସବ୍ରତ ଶୀତତାପ ନିୟନ୍ତ୍ରିତ ବ୍ୟବସ୍ଥା କରିଛି । ଅସଂଖ୍ୟ ଯାତ୍ରୀଙ୍କର ଭିଡ଼ ଏହି ଆଧୁନିକ ଢାବାରେ ।

ଏଠାକାର ନିୟମ ହେଲା—ଟିକେଟ୍ । ପ୍ରଥମେ ଆବଶ୍ୟକ ଅନୁସାରେ ଖାଇବା ପାଇଁ କିଣିବ । ତାକୁ ଖାଦ୍ୟ କାଉଣ୍ଟର୍‌ରେ ଦେଖାଇଲେ ସେହି ଟିକେଟ୍ ହିସାବରେ ତୁମେ ଖାଦ୍ୟ ନେଇ ନିର୍ଦ୍ଦିଷ୍ଟ ପରିସରରେ ବସି ବା ଠିଆ ହୋଇ ଖାଇବ । ହିମାଂଶୁ ଗଲେ ଟିକେଟ୍ କିଣିବାକୁ । ଆମେମାନେ ଚେଷ୍ଟାକରି ବସିବା ସ୍ଥାନରେ ବସିବା ସକାଶେ ସିଟ୍‌ମାନ ଯୋଗାଡ଼ କଲୁ । ବହୁତ ଯାତ୍ରୀ ଥିବାରୁ ବସିବାରେ ସଦାବେଳେ ସମସ୍ୟା ହୁଏ, ଯାଗା ମିଳେନି । ବାଧ୍ୟହୋଇ ଠିଆ ହୋଇ ଖାଇବାକୁ ପଡ଼େ । ମୁଁ ଆଉ ପପୁଲୁ ଚାଲାକ୍ କରି ଆମପାଇଁ ଛ'ଗୋଟି ଆସନ ସଂରକ୍ଷଣ କଲୁ । ମମି ଏବଂ ବବୁଲୁ ପ୍ଲେଟ୍‌ମାନ ଧରି ଆସିଲେ । ମୋର ସ୍ତ୍ରୀ ମଧ୍ୟ ଏହି କାମରେ ସେମାନଙ୍କୁ ସାହାଯ୍ୟ କରିଥିଲେ ।

ଖାଇବା ପର୍ବ ସରିଗଲା ପ୍ରାୟ ଅଧଘଣ୍ଟାକ ମଧ୍ୟରେ । ଏହାପରେ ଆମେମାନେ ଗାଡ଼ି ଭିତରକୁ ଆସିଗଲୁ । ସମସ୍ତେ ଆରାମରେ ବସିଗଲେ ।

ଆଗରୁ ଗୋଟିଏ ଅପ୍ରତ୍ୟାଶିତ ଘଟଣା ଘଟିଯାଇଥିଲା । ଆମେ ଯମୁନା ପୋଲ ପାର ହୋଇ ଆଗକୁ ପ୍ରାୟ ପନ୍ଦର କି.ମି. ଯିବାପରେ ଦେଖିଲୁ ଆଗରେ ଟ୍ରାଫିକ୍ ବନ୍ଦ । ଗାଡ଼ି ଆଗକୁ ଜମାରୁ ଯାଉନାହିଁ । ତା'ର ବାଇପାସ୍ ଭଲଭାବରେ ତିଆରି ହୋଇ ନ ଥିବାରୁ ଗୋଟିଏ ମାଲବାହୀ ଟ୍ରକ୍ ଧସିଯାଇ ରାସ୍ତା ଅବରୋଧ

କରିଥିଲା । ଆମେ ପ୍ରାୟ ଏକଘଣ୍ଟା ଅପେକ୍ଷା କଲୁ । ଆଗରେ ଏବଂ ପଛରେ ଶହ ଶହ ଗାଡ଼ିମଟର ଲାଇନ୍‌ରେ ଥିଲେ । ଆଗରେ ଦେଖିଲୁ କିଛି ଟ୍ୟାକ୍ସି ଏବଂ କାର୍ ବାମପଟ ଗଳି ଦେଇ ମଫସଲ ରାସ୍ତାରେ ଯାଉଛନ୍ତି । ସେମାନେ ଅନ୍ୟ ଗାଁ ଦେଇ ସେହି ଧସିଯାଇଥିବା ରାସ୍ତାକୁ ପାର୍ କରି ଯିବେ । ଆମର ଡ୍ରାଇଭର ମଧ୍ୟ ସେହି ପନ୍ଥା ଅନୁସରଣ କରି ସେହି ମଫସଲ ମାଟି ରାସ୍ତାରେ ଆଗରେ ଯାଉଥିବା ଟ୍ୟାକ୍ସି ପଛରେ ଗଲା । ମରୁଭୂମିରେ ବୁଲିଲା ପରି ଆମରି ଗାଡ଼ି ସେହି କଚ୍ଚା ରାସ୍ତାରେ ପ୍ରାୟ ଦଶ କି.ମି. ଆଗକୁ ପଛକୁ ହେଲା । ରାସ୍ତା ମଧ୍ୟ ଠିକ୍ ପାଇଲା ନାହିଁ । ଯାହାକୁ ଗୋଟେ ଅଧେ ପଥପ୍ରାନ୍ତ ପଥିକକୁ ପଚାରିଲେ ସେ କହେ— ଆଗକୁ ଗଲେ ରାସ୍ତା ପଡ଼ିବ । ଏହିପରି ରାସ୍ତା ଖୋଜି ଖୋଜି ଆମେ ନିରାଶ ହୋଇଗଲୁ । ଆମରି ପରି ଟ୍ୟାକ୍ସି, କାର୍ ଡ୍ରାଇଭର୍ ଏବଂ ମୋଟର ସାଇକେଲ୍‌ବାଲାମାନେ ହତାଶ ହେଉଥା'ନ୍ତି । ପଛକୁ ଫେରିବାକୁ ଆଉ ଉପାୟ ନାହିଁ । ବହୁତ କଷ୍ଟରେ ପ୍ରାୟ ଏକଘଣ୍ଟା ପରେ ଗୋଟିଏ ଗ୍ରାମ ଭିତରେ ପଶିଲୁ । ସେହି ଗ୍ରାମଟିର କଚ୍ଚା ରୋଡ୍ ଜାତୀୟ ରାଜପଥ ସହିତ ସଂଯୁକ୍ତ ହୋଇଛି; କିନ୍ତୁ ସମସ୍ୟା ଅଧିକ ବଢ଼ିଲା । ଆମର ବିପରୀତ ଦିଗରୁ ସେହି ଛୋଟ ଗ୍ରାମ ରାସ୍ତା ଦେଇ ଟ୍ରକ୍ ଏବଂ କାର୍ ଆସିଥିଲା । ସେହି ଗ୍ରାମର ଅଣଓସାରିଆ ସ୍ଥାନରେ ଦୁଇଟା ଯାନ ପାରି ହେବା ବହୁତ ମୁସ୍କିଲ୍ ଥିଲା । ଗ୍ରାମବାସୀମାନେ ସାହାଯ୍ୟ କଲେ ।

ଆମ ପଛରେ ପ୍ରାୟ ଦଶଟି ହେବ କାର୍ ଟ୍ୟାକ୍ସି ଥିଲା । ଗ୍ରାମବାସୀଙ୍କର ପ୍ରତ୍ୟକ୍ଷ ପରିଚାଳନାରେ ଆମର ଗାଡ଼ିଗୁଡ଼ିକ ଧୀରେ ଧୀରେ ପଛକୁ ଚାଲିଲା । ଅଙ୍କାବଙ୍କା ଏବଂ ଅଣଓସାରିଆ ରାସ୍ତାରେ ଡ୍ରାଇଭର୍ ଖୁବ୍ ସତର୍କ ହୋଇ ପଛକୁ ଗାଡ଼ି ଚଳାଇଲା ପ୍ରାୟ ହଜାର ଫୁଟ ହେବ । ସାମାନ୍ୟ ଓସାରିଆ ଯାଗା ମିଳିଲା । ବିପରୀତ ଦିଗରୁ ଆସୁଥିବା ସମସ୍ତ ଟ୍ରକ୍, ଟ୍ୟାକ୍ସି ଧୀରେ ଧୀରେ ଆମ ଗାଡ଼ିଗୁଡ଼ିକୁ ପାରିହୋଇ ଆଗକୁ ଗଲେ । ଆମ ଗାଡ଼ି ଆଗକୁ ଚାଲିଲା । ଅଣଓସାରିଆ ରାସ୍ତାର ଗୋଟିଏ ପଟେ ଡ୍ରେନ୍ ଖୋଳା ହୋଇଛି । ଆମେମାନେ ଗାଁ ପାରି ହୋଇ କଚ୍ଚା ରାସ୍ତା ଦେଇ ଜାତୀୟ ରାଜପଥରେ ପହଞ୍ଚିଲୁ । ସମୁଦାୟ ମାତ୍ର କୋଡ଼ିଏ କି.ମି. ଯାତ୍ରା ହେଲା; କିନ୍ତୁ ଆମକୁ ପ୍ରାୟ ଦୁଇ ଘଣ୍ଟାରୁ ଅଧିକ ସମୟ ଲାଗିଲା ।

ଏହି ଦୁଇଘଣ୍ଟା ବିଳମ୍ବ ପାଇଁ ଆମେମାନେ ସାଢ଼େ ସାତଟାରେ ହରିଦ୍ୱାରରେ ପହଞ୍ଚିବା କଥା;କିନ୍ତୁ ପହଞ୍ଚିଲୁ ରାତି ପ୍ରାୟ ଦଶଟା ହେବ । ହରିଦ୍ୱାରରେ ଗଙ୍ଗାର ପାଣି ଶବ୍ଦ ସେହି ଅନ୍ଧାର ରାତ୍ରିରେ ଆମକୁ ବେଶ୍ ଭଲ ଶୁଣାଯାଉଥିଲା । ତା'ପରେ ହୋଟେଲ ଖୋଜିବାପାଇଁ ଗଙ୍ଗାନଦୀର କୂଳେ କୂଳେ ପ୍ରାୟ ପାଞ୍ଚ କିଲୋମିଟର ଗଲୁ । ରାତିରେ ଗଙ୍ଗାକୁ ଦେଖି ଆତ୍ମସନ୍ତୋଷ ହେଲା । ମନଭରି ପ୍ରଣିପାତ କଲୁ । ବିଦ୍ୟୁତ୍ ସଂଯୋଗ ହୋଇଛି ନଦୀର କୂଳରେ । ବିଦ୍ୟୁତ୍ ଆଲୁଅ ଖେଳିଆସୁଛି ଗଙ୍ଗାର ପବିତ୍ର ପାଣିରେ । ଗଙ୍ଗାର କଳେବର ପାଣିର ଉର୍ମିମାଳା ଝଟକୁଛି ମନର ଅନ୍ଦର ମହଲରେ । ଶୁଭ୍ର ଆଉ ନୀଳ ପାଣି ଦୂରରୁ ଦିଶୁଛି । ମନ ଲଗାଇ ସେହି ରାତ୍ରି ଦଶଟାରେ ଗଙ୍ଗାକୁ ଚାହିଁ ରହିଥିଲୁ । ହୃଦୟଗ୍ରାହୀ ମନୋରମ ଦୃଶ୍ୟ ଅତୀବ ଆନନ୍ଦଦାୟକ , ଭୁଲିହୁଏନା ମନର ଦର୍ପଣରୁ ।

ଗାଡ଼ି ରଖିଲୁ ଗୋଟିଏ ହୋଟେଲ୍ ପାଖରେ । ହୋଟେଲ୍ ଭିତରକୁ ଗଲୁ । ମନକୁ ପାଇଲା; କିନ୍ତୁ ବହୁତ ଦାମ୍ କହିବାରୁ ମୁଁ ଏବଂ ହିମାଂଶୁ ପାଖରେ ଥିବା ଅନ୍ୟ ଗୋଟିଏ ହୋଟେଲ୍ ଗଲୁ । ଆଠଶହ ଟଙ୍କା ଦୈନିକ ଭଡ଼ାରେ ମିଳିଲା । ଦୁଇଟି ଘର ନେଲୁ ଦୁଇଦିନ ପାଇଁ । ନାମ ରେଜେଷ୍ଟ୍ରି କଲୁ । ଆମେ ସବୁ ଆଉ ଖାଇବାକୁ ଇଚ୍ଛା କଲୁନି । ରାତି ସେତେବେଳକୁ ଏଗାରଟା ଡେଇଁ ସାରିଲାଣି । ହିଂମାଶୁ , ମମିତା , ପପୁଲୁ ଏବଂ ବବୁଲୁ ଗୋଟିଏ ଘରେ ଶୋଇଲେ । ଆମେ ଦୁହେଁ ଗୋଟିଏ ଘରେ ଶୋଇଲୁ । ହାଲିଆ ହୋଇଥିଲୁ । ନିଦ ଲାଗିଗଲା ଖୁବ୍ ଶୀଘ୍ର ।

ନିଦ ଭାଙ୍ଗିଗଲା ବଡ଼ି ସକାଳୁ ଗଙ୍ଗା ନଦୀର କୁଳୁକୁଳୁ ନାଦ ଶୁଣି । ରାତିରେ ଯୋଜନା କରିଥିଲୁ ସକାଳେ ଗଙ୍ଗାରେ ଗାଧୋଇ ଗଙ୍ଗାଦେବୀଙ୍କୁ ପୂଜା ଆରାଧନା କରିବୁ । ସାଥିରେ ଲୁଗାପଟା ନେଇଥିଲୁ ବଦଳାଇବା ପାଇଁ । ରୁମ୍‌ରେ ଦାନ୍ତ ଘସିବା ଏବଂ ଗାଧୁଆଘର କାମ ସାରି ଦେଇଥିଲୁ ।

ଗଙ୍ଗାନଦୀ କୂଳରେ ପ୍ରାୟ ଦିନ ଆଠଟାବେଳେ ସ୍ନାନ ପାଇଁ ପହଞ୍ଚିଗଲୁ । ଡ୍ରାଇଭର୍ ଗାଡ଼ି ନେଇ ପାର୍କିଂ ସ୍ଥାନରେ ରଖିଲା । ଗଙ୍ଗାର ପ୍ରଥମ ଗେଟ୍‌ରେ ଆମେ ଗାଧୋଇବାକୁ ଗଲୁ । ବେଶୀ ଗହଳି ହୋଇ ନଥାଏ । ଲୁଗା ବଦଳାଇ ଗାମୁଛା ପିନ୍ଧି ଗଙ୍ଗାର ପାଣିରେ ଛିଡ଼ା ହୋଇ ପାଣିକୁ ପଶିବାକୁ ଗଲୁ । ଲୁହା ବାଡ଼ ଘେରା

ହୋଇଛି । ଦୁଇପରସ୍ତ ଲୁହାବାଡ଼ ଘେରା ମଧ୍ୟରେ ଭକ୍ତାଳୁମାନେ ସ୍ନାନ କରିବେ । ଏଠାରେ ଗଙ୍ଗାର ପ୍ରଖର ସ୍ରୋତ ଅଛି । ପହଁରା ଜାଣିଥିବା ଲୋକ ମଧ୍ୟ ପାଣିକୁ ଯିବାକୁ ସାହସ କରିବନି । ରାସ୍ତାର ଏ ପଟରୁ ପୋଲ ହୋଇଛି ମୁଖ୍ୟ ହରିଦ୍ୱାର ପର୍ଯ୍ୟନ୍ତ । ଏହି ପୋଲଟିକୁ ଦେଖିବାକୁ ଭାରି ଭଲ ଲାଗେ । କାରଣ ପୋଲର ଉପରୁ ତଳକୁ ଚାହିଁଲେ ଗଙ୍ଗାର ଜଳରାଶି କ୍ରୀଡ଼ା କରୁଥିବା ଜଣାପଡ଼େ । ନୀଳ ଜଳରାଶି କେତେବେଳେ ଧବଳ ବର୍ଣ୍ଣରେ ପରିଣତ ହୁଏ । ଉପର ପୋଲରୁ ତଳକୁ ଆସିବାକୁ କଂକ୍ରିଟ୍ ରାସ୍ତା ଗଙ୍ଗାନଦୀର ଦୁଇ କୂଳରେ ହୋଇଛି ଅସଂଖ୍ୟ ଯାତ୍ରୀଙ୍କ ଗାଧୋଇବା ପାଇଁ ।

କୂଳରେ ଫୁଲ ଫଳ ଏବଂ ଦୀପମାନ ବିକା ହେଉଛି । ସାଧୁ-ସନ୍ନ୍ୟାସୀମାନେ ବୁଲୁଛନ୍ତି , ଗାଧୋଉଛନ୍ତି, ଗଙ୍ଗାକୁ ପୂଜା କରୁଛନ୍ତି, ଦୀପ ପ୍ରଦାନ କରୁଛନ୍ତି ଅନ୍ତରର ଭକ୍ତି ସହ ।

ଆମେମାନେ ଜଣ ଜଣ କରି ସ୍ନାନ କଲୁ ସେହି ପବିତ୍ର ଜଳରେ । ଆତ୍ମସନ୍ତୋଷ ହୋଇଗଲା । ଗଙ୍ଗାକୁ ଫୁଲ, ଫଳ ଏବଂ ଦୀପ ଦେଇ ପୂଜା କଲୁ । ଗଙ୍ଗାର ବକ୍ଷରେ ଗୋଟିଏ ଦୀପ ଫୁଲ ଭରି ପତ୍ର ଠୁଙ୍ଗାରେ ଭସାଇଦେଲୁ । ଦୀପ ଜଳି ଜଳି ଯାଇ ପାଣି ପଶିବା ପର୍ଯ୍ୟନ୍ତ ଜ୍ୟୋତି ପ୍ରଦାନ କରୁଥିଲା । ଆମମାନଙ୍କର ମନ ଓ ସତେଜ ଆତ୍ମା ତୃପ୍ତ ହୋଇଗଲା । ଗଙ୍ଗାରେ ସ୍ନାନକରି ପୂଜା ଅର୍ଚ୍ଚନା କଲେ ମହାପାପରୁ ରକ୍ଷା ମିଳେ । ଅସରନ୍ତି ପୁଣ୍ୟର ଫଳ ମିଳେ ।

## ମନୀଷାଦେବୀ ଏବଂ ମା' ଚଣ୍ଡୀଙ୍କ ଦର୍ଶନ

ପୂର୍ବ ଯୋଜନା ଅନୁସାରେ ଗଙ୍ଗା ସ୍ନାନ ପରେ ପାହାଡ଼ ଉପରେ ଥିବା ମା' ମନୀଷାଦେବୀ ଏବଂ ଗଙ୍ଗାର ଅପରପାର୍ଶ୍ୱରେ ପର୍ବତ ଉପରେ ଥିବା ଚଣ୍ଡୀଠାକୁରାଣୀଙ୍କର ଦର୍ଶନ କରିବାକୁ ଇଚ୍ଛା କରିଥିଲୁ । ହରିଦ୍ୱାରକୁ ଦେବପୀଠ ବୋଲି କୁହାଯାଏ । ବହୁତ ଦେବାଦେବୀ ମନ୍ଦିର ଗଙ୍ଗାକୂଳରେ ସ୍ଥାପିତ ହୋଇଛି କେଉଁ ଅନାଦି ସମୟରୁ । ଆମର ମାତ୍ର ଗୋଟିଏ ଦିନ ହରିଦ୍ୱାରରେ ରହିବାର ଠିକ୍ ହୋଇଛି । ଆଗରୁ ଆମେ ଦହେଁ ସାତବର୍ଷ ପୂର୍ବେ ହରିଦ୍ୱାର ଏବଂ ଋଷିକେଶ

ଆସି ସମସ୍ତ ଦେବାଦେବୀ ଦର୍ଶନ କରିଲୁ । ଏଥର ପିଲାମାନଙ୍କୁ ନେଇ ମା' ମନୀଷା ଠାକୁରାଣୀ ଦେଖାଇବାକୁ ଇଚ୍ଛା ହେଲା ।

ମା' ମନୀଷାଙ୍କ ପାଖକୁ ଗଲେ ପାହାଡ଼ରେ ପାହାଚ କଟା ହୋଇ ତିଆରି ହୋଇଛି । ଯେଉଁ ଭକ୍ତଙ୍କର ମାନସିକ ଥିବ ଅବା ଆର୍ଥିକ ଅବସ୍ଥାକୁ ଚାହିଁ ସେହି ପାହାଚରେ ପାହାଡ଼ ଉପରକୁ ଚଢ଼ନ୍ତି । ଏଥିପାଇଁ ସେମାନଙ୍କୁ ଅତିକମ୍‌ରେ ସାତ ଆଠଘଣ୍ଟା ସମୟ ଲାଗିଯାଏ । ଅନ୍ୟଟି ହେଲା ଝୁଲାବାଟ । ଏହି ଝୁଲାବାଟରେ ବହୁତ କମ୍ ସମୟରେ ସେଠାକୁ ପହଞ୍ଚିହେବ । ଏବେ ହରିଦ୍ୱାରରେ ଝୁଲାପଥର ସର୍ବାଧିକ ଆଦୃତ ହୋଇଛି । ମା' ଚଣ୍ଡୀଙ୍କ ପାଖକୁ ଯିବାକୁ ମଧ୍ୟ ପାହାଡ଼ କଟା ହୋଇ ରାସ୍ତା ହୋଇଛି ଏବଂ ସେଠାକୁ ମଧ୍ୟ ଝୁଲାବାଟ ବ୍ୟବସ୍ଥା ଅଛି । ହିଂମାଂଶୁ ଯାଇ ପ୍ରତ୍ୟେକଙ୍କ ପାଇଁ ପାକେଜ୍ କିଣିଲେ । ପ୍ରତି ପ୍ୟାକେଜ୍‌କୁ ୧୫୦ ଟଙ୍କା ପଡ଼ିଲା । ଏହି ପ୍ୟାକେଜ୍‌ରେ ମନୀଷାଦେବୀଙ୍କ ପାଖକୁ ଝୁଲାପଥରେ ଯିବ ଏବଂ ଦର୍ଶନ ପରେ ଆଗରେ ଥିବା ନିର୍ଦ୍ଦିଷ୍ଟ ବସ୍ ସ୍ଥାନକୁ ଗଲେ, ସେଠାରେ ଅପେକ୍ଷା କରିବାକୁ ହେବ । ଗୋଟିଏ ଛୋଟ ବସ୍‌ରେ ସିଟ୍‌ର ବ୍ୟବସ୍ଥା ମାତ୍ର ପନ୍ଦର ଜଣ । ସବୁ ବ୍ୟବସ୍ଥା ଶୁଣିଲା ପରେ ଆମେ ସଙ୍ଗେ ସଙ୍ଗେ ମନୀଷାଦେବୀଙ୍କ ପାଖକୁ ଯିବାକୁ ଝୁଲାପଥର ରହଣି ସ୍ଥାନକୁ ଯିବାକୁ ବାହାରିଲୁ । ପ୍ରାୟ ଦୁଇ କି.ମି. ବାଟ ପରେ ଗଙ୍ଗାକୂଳରେ ଗୋଟିଏ ସ୍ଥାନ । ଆମେମାନେ ସେଠାରେ ଷ୍ଟେସନ୍ ଭିତରକୁ ଗଲୁ । ଆମର ପାଳି ଆସିବା ପର୍ଯ୍ୟନ୍ତ ସେଠାରେ ପ୍ରତୀକ୍ଷାଳୟରେ ଅପେକ୍ଷା କଲୁ । ଝୁଲାପଥର ସବୁଯାକ ଝୁଲା ଏହିଠାରେ ଯାତ୍ରୀମାନଙ୍କୁ ନେଇଯାଏ । ପ୍ରତି ଝୁଲାରେ ମାତ୍ର ଚାରିଜଣ ବସିପାରିବେ । ଝୁଲାଟି ଦେଖିବାକୁ ଦୋଳିପରି । କାଚର ଘୋଡ଼ଣୀ ଚାରିପାଖ ହୋଇଛି । ବସିବାକୁ ସୁନ୍ଦର ଦୁଇଟିକିଆ ସିଟ୍‌ରେ ଗଦି ପଡ଼ିଛି । ପଛପଟରେ ମଧ୍ୟ ଆଉଜି ବସିବାପାଇଁ ଗଦି ଦିଆହୋଇଛି । ଗ୍ଲାସ୍ ଦେଇ ବାହାରକୁ ସୁବିଧାରେ ତଳକୁ ଚାହିଁହେବ ଏବଂ ଉପରକୁ ମଧ୍ୟ ।

ଗୋଟିଏ ଝୁଲାରେ ହିଂମାଂଶୁ, ମମି, ପପୁଲ, ବବୁଲୁ ବସିଲେ । ଅନ୍ୟଗୋଟିଏ ଝୁଲାରେ ଆମେ ଦୁଇଜଣ ସହିତ ଅନ୍ୟ ଦମ୍ପତ୍ତି ଗଲେ । ଆମ ଆଗରେ ମମି, ପିଲାମାନେ ଷ୍ଟେସନ୍‌ର ଅନ୍ଧାର ଘରୁ ବାହାରି ଆକାଶମାର୍ଗରେ ଉଡ଼ି

ଚାଲିଗଲେ ଦଉଡ଼ି ସାହାଯ୍ୟରେ । ଏହି ଝୁଲାବାଟରେ ଦୁଇଟି ଦଉଡ଼ି ଥାଏ । ଗୋଟିଏ ଦିଗରେ ଝୁଲା ଚାଲେ, ଅନ୍ୟଟି ଝୁଲାକୁ ଭିଡ଼ିନିଏ । ବିଦ୍ୟୁତ୍ ସାହାଯ୍ୟରେ ଯାଏ । ଆମେ ଆକାଶ ମାର୍ଗରେ କ୍ରମଶଃ ଉଠି ଉଠି ଗଲୁ । ତଳେ ଗଙ୍ଗାନଦୀର ପାଣି ଏବଂ ପାହାଡ଼ର ତଳ ପ୍ରଦେଶ ଖାଲଡିପ ଏବଂ ଜଙ୍ଗଲ ଦେଖିବାକୁ ମିଳୁଥାଏ । ଦଉଡ଼ିରେ ଯିବା ଗୋଟିଏ ରୋମାଞ୍ଚକର ଶିହରଣ ମନରେ ଆଣୁଥାଏ । କାଳେ ଦୁର୍ଘଟଣାଗ୍ରସ୍ତ ହୋଇ ଯଦି ଝୁଲା ଛିଣ୍ଡିଯାଏ, ତେବେ ଆମମାନଙ୍କର ଅତଳ ତଳେ ପଡ଼ି ଦେହ, ମୁଣ୍ଡର ଚିହ୍ନ ରହିବ ନାହିଁ । ଏପରି ହୁଏନାହିଁ ।

ମନରେ ଆନନ୍ଦ ତଥା ଆଶଙ୍କା ଦେଇଯିବାକୁ ପଡୁଥିଲା । ବିଦ୍ୟୁତ୍ ହଠାତ୍ ବନ୍ଦ ହୋଇଗଲା । ଆକାଶ ମାର୍ଗରେ ସେଇ ଝୁଲାବାଟରେ ଆମ ସମସ୍ତଙ୍କର ଝୁଲାମାନ ଝୁଲି ରହିଲା । ମନରେ ଅଜଣା ଭୟ ଆସିଥିଲା ; କିନ୍ତୁ ବିଦ୍ୟୁତ୍ ଆସିଗଲା । ଝୁଲାମାନ ଝୁଲି ଝୁଲି ଦଉଡ଼ିରେ ଯିବାଆସିବା କରେ । ଆମେମାନେ ଆଶ୍ୱସ୍ତ ହେଲୁ । ମନୀଷା ମା'ଙ୍କୁ ମୁଣ୍ଡିଆ ମାରିଥିଲୁ ଏପରି ଅଜଣା ବିପଦରୁ ରକ୍ଷା କରିବାପାଇଁ ।

ଆମର ଝୁଲା ଆସି ମନୀଷାଦେବୀଙ୍କ ପାହାଡ଼ର ଷ୍ଟେସନ୍‌ରେ ପହଞ୍ଚିଲା । ଆମ ଆଗରୁ ମମିତା ହେରିକା ଓହ୍ଲାଇ ଆମ ଦୁଇଜଣଙ୍କୁ ଅପେକ୍ଷା କରିଥିଲେ । ମା' ମନୀଷା ଦେବୀଙ୍କ ପାଇଁ ନଡ଼ିଆ, ଫଳ, ପୁଷ୍ପ ଏବଂ ଦୀପ ଆଗରୁ କିଣି ଆଣିଥିଲୁ ।

ପାହାଚରେ ଉପରକୁ ପ୍ରାୟ ଦଶ ଫୁଟ୍ ଉଠିବାକୁ ପଡ଼ିଲା । ତେଣୁ ଧାଡ଼ି ହୋଇ ଚାଲି ଚାଲି ଗଲୁ । ବଡ଼ ଲମ୍ବା ଧାଡ଼ି । ଆମର ଚପଲ, ଜୋତା, ଷ୍ଟାଣ୍ଡରେ ରଖିଲୁ । ଗୋଡ଼ହାତ ଧୋଇ ମନ୍ଦିର ଭିତରକୁ ପଶିଲୁ । ଛୋଟ ଧରଣର ମନ୍ଦିର । ପାର୍ଶ୍ୱଦେବତାମାନଙ୍କୁ ପ୍ରଥମେ ଦର୍ଶନ କଲୁ । ଯଜ୍ଞଶାଳା ଏବଂ ମହାଦେବଙ୍କୁ ଦର୍ଶନ କରି ଆଗକୁ ଧାଡ଼ିରେ ଚାଲିଲୁ । ଆଗରେ ମନୀଷା ଦେବୀଙ୍କର ଖାସ୍ ମନ୍ଦିର ପଡ଼ିଲା । ଦର୍ଶନ କଲୁ । ସୁନ୍ଦର ଦେବୀମୂର୍ତ୍ତି । ଭକ୍ତମାନଙ୍କୁ ଆଶୀର୍ବାଦ ଦେଉଛନ୍ତି । ପୂଜାରୀ ଦୁଇ ଜଣ ବସିଛନ୍ତି । ନଡ଼ିଆ ଭୋଗକରି ଆମକୁ ପ୍ରସାଦ ଦେଲେ, ସିନ୍ଦୂର ମଧ୍ୟ ଦେଲେ । ମା' ମନୀଷା ଦେବୀଙ୍କର ଅପୂର୍ବ ମନୋହର ମୂର୍ତ୍ତି । ହାତରେ ଖଡ୍‌ଗ ଧରିଛନ୍ତି । ସିଂହବାହିନୀ ଅଭୟବାର୍ତ୍ତା ସହିତ ଭକ୍ତମାନଙ୍କୁ ଆଶୀର୍ବାଦ ଦେଉଛନ୍ତି ।

ଭକ୍ତିପୂତ ଭାବରେ ପୂଜା ହେବାପରେ ସେହି ଧାଡ଼ିରେ ଆମେ ଆଗକୁ ଆଗକୁ ଯିବାକୁ ବାଧ୍ୟ ହୋଇଥିଲୁ । ସେହି ମନ୍ଦିରର ଭିତରର ଅପରପାର୍ଶ୍ୱରେ ବୈଷ୍ଣବଦେବୀଙ୍କୁ ଦର୍ଶନ କଲୁ । ହନୁମାନ ଏବଂ ଲକ୍ଷ୍ମୀ-ନାରାୟଣ ମଧ୍ୟ ଦର୍ଶନ କଲୁ । ମନ୍ଦିର ବେଢ଼ା ବୁଲି ପ୍ରତ୍ୟେକ ଦେବଦେବୀଙ୍କୁ ଦର୍ଶନ କଲୁ । ମନ୍ଦିର ପଛପଟେ ନିଷ୍କ୍ରାନ୍ତ ଦ୍ୱାର ଦେଇ ବାହାରକୁ ଆସିବା ପୂର୍ବରୁ ସେଇଠି ଖୋଲାଯାଇଥିବା ଜଳଖିଆ ଏବଂ ବିଭିନ୍ନ ଫଳର ଖଣ୍ଡମାନ ପ୍ଲେଟ୍ କରି ବିକାଯାଉଥିଲା । ସେତେବେଳକୁ ସାଢ଼େ ଏଗାରଟା ହୋଇଥିଲା । ଆମେମାନେ କିଛି ଫଳକଟା ପ୍ଲେଟ୍ ନେଇ ଖାଇଲୁ । ପ୍ଲେଟ୍‌କୁ ପନ୍ଦର ଟଙ୍କା ପଡୁଥିଲା ।

ସମୟ ହୋଇଯାଇଥିଲା । ଆମେଯାଇ ତଳେ ଥିବା ରୋପ୍ ଓୟେର୍ ଷ୍ଟେସନ୍‌କୁ ଯାଇ ଦୁଇଟି ଝୁଲାରେ ତଳ ଷ୍ଟେସନ୍‌କୁ ଯିବାକୁ ବାହାରିଲୁ । ଗଲାବେଳେ ଦଉଡ଼ିର ସ୍ଥିତି ଅଲଗା ପ୍ରକାରର । କେବଳ ତଳକୁ ତଳକୁ ଖସିବାର ମଜା । ଅନ୍ୟପଟର ବିପରୀତ ଝୁଲାମାନେ ଉପରକୁ ଉଠିବାର ଦୃଶ୍ୟ । ଭାରି ମନମୁଗ୍ଧକର ଦୃଶ୍ୟ ତଳ ଏବଂ ଉପରର ସବୁଜ ବନାନୀ ସହ ଉଚ୍ଚନୀଚର ପାର୍ଥକ୍ୟ । ଗଙ୍ଗାନଦୀର ସୁନ୍ଦର ମନୋହର ବକ୍ଷରେ ସୂର୍ଯ୍ୟଙ୍କର ପ୍ରଚଣ୍ଡ କିରଣ ପାଣିର ସୁନେଲି ପ୍ରତିଫଳନ ମନରେ ଯୁଗପତ୍ ଆନନ୍ଦ ଦେଇଥିଲା । ଆମେମାନେ ତଳ ରହଣି ଷ୍ଟେସନ୍‌ରେ ପହଞ୍ଚିଗଲୁ ।

ତରତର ଓହ୍ଲାଇ ଆମେ ଚାଲିବାକୁ ଲାଗିଲୁ । ହରିଦ୍ୱାରର ଗହଳି ଭିତରେ ଯାଇ ଚଣ୍ଡୀ ମନ୍ଦିରକୁ ଯିବାପାଇଁ ବସ୍ ଧରିବାକୁ ପ୍ରାୟ ୧ କି.ମି. ରାସ୍ତା ଆମକୁ ଚାଲିବାକୁ ପଡ଼ିଲା । ଆମେ ସେହି ବସ୍‌ର ରହଣି ସ୍ଥାନରେ ପହଞ୍ଚିଗଲୁ । ଆମର ଟିକେଟ୍ ନମ୍ବର ଅନୁସାରେ ସେହି ଛୋଟ ବସ୍‌ରେ ବସିଗଲୁ । ଏହାପରେ ସେହି ଛୋଟ ବସ୍‌ଟି ହରିଦ୍ୱାର ଡେଇଁ ଗଙ୍ଗାନଦୀର ଅପରପାର୍ଶ୍ୱକୁ ଯିବାକୁ ଲାଗିଲା । ପ୍ରାୟ ଆଠ କିଲୋମିଟର ରାସ୍ତା । ପାହାଡ଼ କଟାହୋଇ ରାସ୍ତାରେ ବସ୍ ଚାଲିବାକୁ ଲାଗିଲା । ତଳେ ଗଙ୍ଗାନଦୀର ବେଗ ଚଞ୍ଚଳ ମନୋରମ ଗତିକୁ ଦେଖୁଥିଲି । ସଂକୀର୍ଣ୍ଣ ରାସ୍ତାଦେଇ ପାହାଡ଼ କଟା ରାସ୍ତରେ ବସ୍ ପ୍ରାୟ ହଜାର ଫୁଟ୍ ଉଚ୍ଚକୁ ଉଠିଲା ।

ବସ୍‌ଟି ଅଟକିଲା ଦଉଡ଼ି ରାସ୍ତା ସମ୍ମୁଖରେ । ଆମେମାନେ ଟିକେଟ୍ ଦେଖାଇ ଷ୍ଟେସନ୍ ଭିତରକୁ ଗଲୁ । ସେହି ଷ୍ଟେସନ୍‌ଟି ପାହାଡ଼ କଟା ହୋଇ ଉଚ୍ଚ ସ୍ଥାନରେ

ହୋଇଛି । ଆଗରେ ସୁନ୍ଦର ବଗିଚା ଏବଂ ଲନ୍ ତିଆରି ହୋଇଛି । କିଛି କୃଷକ ଲୋକ କାମ କରୁଥିବା ମୂର୍ତ୍ତିମାନ ରଖାଯାଇଛି । ସତେ ଜଣାପଡୁଥିଲା କୃଷକଟି କ୍ଷେତରେ କାମ କରୁଥିଲା ।

ଆମେମାନେ ପୂର୍ବଭଳିଆ ଝୁଲାରେ ବସି ସେହି ପର୍ବତ ଦିଗରେ ଯିବାକୁ ଲାଗିଲୁ, ଯେଉଁଠି ଚଣ୍ଡୀଙ୍କର ମନ୍ଦିର ବିଦ୍ୟମାନ । ଏହି ଦଉଡ଼ି ରାସ୍ତାର ଲମ୍ବ ପ୍ରାୟ ୫ କି.ମି. ଥିଲା । ମନୀଷାଦେବୀ ମନ୍ଦିରଠାରୁ ପ୍ରାୟ ଦେଢ଼ଗୁଣ ଅଧିକ ରାସ୍ତା ଏବଂ ଉଚ୍ଚ ପର୍ବତ । ଉପରକୁ ଉଠିଲାବେଳେ କେବଳ ପାହାଡ଼ମାନଙ୍କର ବିଭିନ୍ନ ଆକାରପ୍ରକାର, ଉଚ୍ଚ-ନୀଚ ଏବଂ ପାତାଳରୂପୀ ତଳର ଗହ୍ୱର ରାସ୍ତା ଦେଖି ମନରେ ଅଜଣା ଆଶଙ୍କା ଉଦୟ ହେଉଥିଲା ।

ଷ୍ଟେସନ୍‌ରେ ପହଞ୍ଚିଲୁ । ସେଠାରୁ ପାହାଚ କିଛି ଚଢ଼ି ଚଣ୍ଡୀ ମନ୍ଦିରକୁ ଗଲୁ । ଚଣ୍ଡୀଙ୍କୁ ଦର୍ଶନ କଲୁ । ଭାରି ପ୍ରତ୍ୟକ୍ଷ ଠାକୁରାଣୀ । ଭକ୍ତମାନେ ନଡ଼ିଆ ଭୋଗ କରୁଥିଲେ । ଏଠାରେ ମଧ୍ୟ ସେହି ଧାଡ଼ିରେ ଯିବାକୁ ପଡ଼ିଲା । ମା'ଙ୍କ ଚରଣ ତଳେ ପଡ଼ି ଗୁହାରି ଜଣାଇଲୁ । ପପୁଲୁର ଦେହ ପୂରାପୂରି ଭଲ କରିଦିଅ ମା' । ଆମେ ସମସ୍ତେ ଆତ୍ମବିହ୍ୱଳ ହୋଇଯାଇଥିଲୁ ଚଣ୍ଡୀଙ୍କ ଦର୍ଶନରେ । ଏହାପରେ ବେଢ଼ା ଭିତରେ ଥିବା ମହାଦେବ, ରାଧାକୃଷ୍ଣ ଦର୍ଶନ କଲୁ । ସେତେବେଳକୁ ପ୍ରାୟ ୨.୩୦ ମିନିଟ୍ ହୋଇଥିଲା । ଶୀଘ୍ର ଫେରିଆସିଲୁ । ଚଣ୍ଡୀ ମନ୍ଦିରର ଅନତିଦୂରରେ ଆଉ ଗୋଟିଏ ପର୍ବତ ଉପରେ ରାମ-ସୀତା-ଲକ୍ଷ୍ମଣ ଏବଂ ରାଧାକୃଷ୍ଣଙ୍କର ମନ୍ଦିର ଅଛି । ପାହାଡ଼ ଉପରେ ଚାଲି ଚାଲି ସେଠାକୁ ଯିବାକୁ ପଡ଼ିଥା'ନ୍ତା । ଆମେ ସମସ୍ତେ କ୍ଲାନ୍ତ ହୋଇପଡ଼ିଥିଲୁ ଏବଂ ସମୟର ଅଭାବରୁ ସେହି ମନ୍ଦିରକୁ ଯାଇପାରିଲୁନି ।

ତଳକୁ ଫେରିଆସିଲୁ । ପୁଣି ସେଇ ଛୋଟ ବସ୍‌ରେ ପ୍ରତ୍ୟାବର୍ତ୍ତନ କଲୁ ଆମର ରହଣି ସ୍ଥାନ ହୋଟେଲ୍‌କୁ ।

## ଗଙ୍ଗା-ଆଳତି ଦର୍ଶନ

ସେଦିନ ସନ୍ଧ୍ୟାରେ ଗଙ୍ଗାର ଆଳତି ଦର୍ଶନ ଦେଖିବାକୁ ମନସ୍ଥ କରିଥିଲୁ । ତେଣୁ ସାମାନ୍ୟ ବିଶ୍ରାମ ନେଇ ଠିକ୍ ପାଞ୍ଚଟା ବେଳକୁ ସମସ୍ତେ ବାହାରିଗଲୁ

ଗାଡ଼ିରେ । ଗଙ୍ଗାଙ୍କ ମନ୍ଦିର ହେଉଛି ଆମେ ରହୁଥିବା ହୋଟେଲ୍ ଠାରୁ ପ୍ରାୟ ତିନି କି.ମି. । ଗାଡ଼ି ବହୁତ ଦୂରରେ ପାର୍କିଂ ଯାଗାରେ ରହିଲା । ସେଠୁ ମନ୍ଦିର ପାଖକୁ ଆମେମାନେ ଚାଲି ଚାଲି ଗଲୁ । ଗଙ୍ଗାର ଅପରପଟରେ ଗଙ୍ଗାମନ୍ଦିର ଗଙ୍ଗାନଦୀ କୂଳରେ ଅବସ୍ଥିତ । ଆମେମାନେ ଗଙ୍ଗାମନ୍ଦିରର ପ୍ରାୟ ସାମ୍ନାସାମ୍ନି ଏପଟ କୂଳରେ ବସିଲୁ ଆସନ ପକାଇ । ବସିବାର ବହୁତ ସୁନ୍ଦର ବନ୍ଦୋବସ୍ତ କରାଯାଇଛି । ମୁଁ ଜାଣିବାରେ ଏହା ସନ୍ଧ୍ୟାବେଳକୁ ପ୍ରାୟ ଏକଲକ୍ଷ ଲୋକ ଏକତ୍ର ହୋଇଥିଲେ ଗଙ୍ଗା-ଆଳତି ଦେଖିବାକୁ ।

ପ୍ରତ୍ୟେକ ଘାଟର ଜଣେ ଦୁଇଜଣ ପରିଚାଳକ ଥାଆନ୍ତି । ସେମାନେ ଏହି ବିଶାଳ ଜନତାର କିଛି ଅଂଶକୁ ସମ୍ବୋଧନ କରି ଗଙ୍ଗାନଦୀର ମାହାତ୍ମ୍ୟ କହୁଥାଆନ୍ତି । ସେମାନେ ଗଙ୍ଗା ନଦୀର ରକ୍ଷଣାବେକ୍ଷଣ ଏବଂ ଆଳତିର ଖର୍ଚ୍ଚ ପାଇଁ ଭକ୍ତମାନଙ୍କୁ ନିଜର ସାଧ୍ୟମତେ ସାହାଯ୍ୟ କରିବାକୁ ଅନୁରୋଧ ଜଣାଉଥା'ନ୍ତି । ବହୁତ ଲୋକ ଦାନ ଦେଉଥା'ନ୍ତି । ମୁଁ ମଧ୍ୟ ୫୦ ଟଙ୍କା ଦେଇ ଉପଯୁକ୍ତ ରସିଦ୍ ଆଣିଥିଲି ।

ସନ୍ଧ୍ୟା ପ୍ରାୟ ୬.୩୦ମିନିଟ୍ ବେଳକୁ ଆଳତି ଆରମ୍ଭ ହେଲା । ଏକାବେଳକେ ଦଶଟା ମଶାଲ ଝୁଡ଼ି ଧରି ଆଳତି କରାଗଲା ଘଣ୍ଟ ଓ ଖୋଳର ମାଧ୍ୟମରେ । ସନ୍ଧ୍ୟା ସଂପୂର୍ଣ୍ଣ ହୋଇଯାଇଥିଲା । ଏହି ନିଆଁର ମଶାଲ-ଆଳତି ଅତ୍ୟନ୍ତ ମନୋମୁଗ୍ଧକର ଏବଂ ଭକ୍ତିଭାବ ସଞ୍ଚାର କରୁଥିଲା । ହଜାର ହଜାର ଲୋକ ଠିଆହୋଇ 'ଗଙ୍ଗାମାତାକୀ ଜୟ' ଗାନରେ ଗଙ୍ଗାନଦୀର ପାଣିକୁ ନମସ୍କାର କରୁଥା'ନ୍ତି । ମୋର ଜ୍ୱାଇଁ କିଛି ଫଟୋ ଉଠାଇଥିଲେ । ଗଙ୍ଗା ଆଳତିର ମାଧୁର୍ଯ୍ୟ ବର୍ଣ୍ଣନା କରିବା ଅସମ୍ଭବ । ଆଳତି ମଶାଲର ଅଗ୍ନିର ଝଲକ ଗଙ୍ଗାର ପାଣିରେ ପ୍ରତିବିମ୍ବିତ ହୋଇ ଚମତ୍କାର ଦିଶୁଥିଲା । ଭକ୍ତମାନେ ସେମାନଙ୍କର ଦୀପ ସୁସଜ୍ଜିତ ପୁଷ୍ପର ଠୋଲାରେ ଅବା କଦଳୀ ପାଟୁକାରେ ତିଆରି ଡଙ୍ଗାରେ ଦୀପରଖି ଗଙ୍ଗାମାତା ଚରଣରେ ଅର୍ପଣ କରି ପୂଜା କରୁଥିଲେ ।

ଗଙ୍ଗାନଦୀର ସେହି ମଧ୍ୟମ ବକ୍ଷରେ ଗୋଟିଏ ଆନିକଟ ତିଆରି ଚାଲିଛି ମନ୍ଦିରରୁ ପ୍ରାୟ ହଜାର ଫୁଟ୍ ତଳେ । ତେଣୁ ଗଙ୍ଗାର ପାଣି ଅପର୍ଯ୍ୟାପ୍ତ ଠୁଳ ହୋଇ

ପ୍ରଖର ସ୍ରୋତ ହୋଇଯାଉଛି । କିଛି ସାହସୀ ଯୁବକ ନିଜର ପୁରୁଷତ୍ୱ ଜାହିର କରିବାକୁ ନଦୀକୁ କୂଳରୁ ଡେଇଁ ପହଁରିବାରେ ଲାଗିଛନ୍ତି । ଏମାନଙ୍କର ପହଁରା କୌଶଳ ଦେଖିବାକୁ ସମସ୍ତ ଦେଖଣାହାରୀଙ୍କୁ ଭଲ ଲାଗୁଥିଲା ; କିନ୍ତୁ ସାମାନ୍ୟ ଅସାବଧାନତା ଏବଂ ଅନ୍ୟମନସ୍କ ହେଲେ ବିପଦ ଥିଲା । ସଦ୍ୟ ତିଆରି ହୋଇଥିବା ଆନିକଟ । ବୋଧହୁଏ ଗଙ୍ଗାମାତା ଏହି ଅବୋଧ ଏବଂ ଅବାଧ୍ୟ ଯୁବକମାନଙ୍କର କାନ ଧରି କୋଳେଇ ନେଇ କୂଳର ଅପରପାର୍ଶ୍ୱରେ ଛାଡ଼ି ଦେଉଥା'ନ୍ତି ।

ଆହୁରି ଗୋଟିଏ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଲା । ଆମେ ବସିଥିବା ଅପରପାର୍ଶ୍ୱରେ କୂଳରେ ଦୁଇଜଣ ରମଣୀ ଗାଧୋଉଥିଲେ । ହଜାର ହଜାର ସ୍ତ୍ରୀଲୋକଙ୍କ ମଧ୍ୟରେ ସେମାନଙ୍କର ଗାଧୋଇବାର ଶୈଳୀ ପୂରାପୂରି ନଗ୍ନତାରେ ଭର୍ତ୍ତି ହୋଇଯାଇଥିଲା । ସେମାନଙ୍କୁ ବୋଧହୁଏ ସଂକୋଚ ଲାଗୁ ନ ଥିଲା ଅସଂଖ୍ୟ ଦର୍ଶନାର୍ଥୀଙ୍କ ସମ୍ମୁଖରେ ଉଲଗ୍ନ ହୋଇ ଗାଧୋଇବାକୁ । ଆମମାନଙ୍କର ମୁହଁ ଲଜ୍ଜାରେ ଡାଙ୍କି ହୋଇଗଲା । ବହୁତ ବିଦେଶୀ ପର୍ଯ୍ୟଟକ ଏହି ସନ୍ଧ୍ୟା ଆଳତି ଦେଖିବାକୁ ଜାହିଁ ଆମେରିକା, ବ୍ରିଟେନ୍, ଅଷ୍ଟ୍ରେଲିଆ ଏବଂ ଚୀନ୍‌ରୁ ଆସିଥା'ନ୍ତି । ସେମାନେ ଆମମାନଙ୍କ ଗହଣରେ ବସଥା'ନ୍ତି । ସେମାନେ ବୋଧହୁଏ ଭାରତର ସଂସ୍କୃତିକୁ କଦର୍ଯ୍ୟ ଅର୍ଥରେ ନେଇପାରିଥିବେ । ମୋତେ ଜଣେ ବିଦେଶୀ ପର୍ଯ୍ୟଟକ ପଚାରିଲେ, "ଆଳତି ପରି ମହାପୂର୍ଣ୍ଣ ଅବସର ପୂର୍ବରୁ ଏପରି ନଗ୍ନତାର ସହ ଗାଧୋଇବା କ'ଣ ଭାରତର ସଂସ୍କୃତି ? ତାଙ୍କୁ କ'ଣ ଉତ୍ତର ଦେବି ଭାବୁଛି, ଏହି ସମୟରେ ସେଠାରେ ଉପସ୍ଥିତ ଥିବା ପରିଚାଳକ ମୋତେ ହିନ୍ଦୀରେ କହିଲେ, "ଯେଉଁ ସ୍ତ୍ରୀମାନଙ୍କର ପିଲାପିଲି ଜନ୍ମ ହେଉନି, ବାହା ହେଲାପରେ ସେମାନେ ଯଦି ଗଙ୍ଗାମାତାଙ୍କ ଆଳତି ପୂର୍ବରୁ ଅର୍ଦ୍ଧଲଙ୍ଗଳା ହୋଇ ଗଙ୍ଗାପାଣିରେ ସ୍ନାନ କରିବେ, ନିଶ୍ଚୟ ସେମାନଙ୍କର ସନ୍ତାନସନ୍ତତି ହେବ । ଏଥିପାଇଁ ସ୍ତ୍ରୀର ଲଜ୍ଜା କରିବାର କିଛି ନାହିଁ ।" ଗଙ୍ଗାମାତାଙ୍କ ଚରଣ ତଳେ ନିଜର ସଂପୂର୍ଣ୍ଣ ଯୌବନକୁ ଅର୍ପଣ କରିଛି ମା'ର ଆଶୀର୍ବାଦରେ ସନ୍ତାନ ଜନ୍ମ ସୁଖ ପାଇବ ବୋଲି । ଏହି କଥାକୁ ମୁଁ ବିଦେଶୀଙ୍କୁ ବୁଝାଇଦେଲି ଏବଂ ସେ କହିଲେ, "ଗଙ୍ଗାନଦୀର ପାଣିରେ ପ୍ରଚୁର ଔଷଧୀୟ ଗୁଣ ଅଛି । ତେଣୁ ଗଙ୍ଗାନଦୀ ହେଉଛି ଭାରତର ପବିତ୍ର ଏବଂ ମୁଖ୍ୟ ନଦୀ ।" ତାଙ୍କ

ମନରେ ସେହି ଉଲଗ୍ନ ନାରୀ ପ୍ରତି ସମ୍ମାନ ଜାଗିଉଠିଲା ଏବଂ ଗଙ୍ଗାମାତାଙ୍କୁ ବାରମ୍ବାର ନମସ୍କାର କରିବାକୁ ଲାଗିଲେ। ଏହି ସମୟରେ ସେହି ଦୁଇଜଣ ସ୍ତ୍ରୀଲୋକ ଗାଧୋଇସାରି ଅର୍ଦ୍ଧ ଉଲଗ୍ନରେ କୂଳକୁ ଯାଇ ସେଠାରେ ନୂତନ ବସ୍ତ୍ର ଧାରଣ କଲେ ଏବଂ ଗଙ୍ଗାନଦୀକୁ ସେମାନେ ଆଣ୍ଠୁମାଡ଼ି ନମସ୍କାର କଲେ। ତା'ପରେ ନିକଟରେ ଠିଆ ହୋଇଥିବା ଶାଶୂ, ଶ୍ୱଶୁର, ବାପା, ମା' ଏବଂ ସ୍ୱାମୀର ଗୋଡ଼ତଳେ ମୁଣ୍ଡିଆ ମାରିଲେ। ସେହି ଦୁଇଟି ସ୍ତ୍ରୀଲୋକଙ୍କ ଉପରେ ଦେଖଣାହାରୀଙ୍କର ଅଶେଷ ଶ୍ରଦ୍ଧା ଜାତ ହୋଇଥିଲା। ଏମାନେ ସିମଳାରୁ ଆସିଥିଲେ ବୋଲି ଜଣାପଡ଼ିଲା। ଏପରି ଘଟଣା ସଦାବେଳେ ଘଟେନାହିଁ। କାଁ ଭାଁ ଘଟେ, କେତେବର୍ଷ ଅନ୍ତରରେ।

ବହୁତ ମୁନି, ଋଷି, ମହାତ୍ମାମାନେ ଗଙ୍ଗାଜଳକୁ ଅତ୍ୟନ୍ତ ପବିତ୍ର, ପରିଷ୍କାର ଏବଂ ଔଷଧୀୟ ଗୁଣରେ ପରିପୂର୍ଣ୍ଣ ବୋଲି ମତ ଦିଅନ୍ତି। ଏହି ପାଣିରେ ଗାଧୋଇଲେ ସକଳ ପାପ ଧୋଇହୁଏ ଏବଂ ପୂର୍ଣ୍ଣ ଫଳ ମିଳିଥାଏ। ଲୋକର ଅନ୍ତିମ କାଳରେ ଗଙ୍ଗାପାଣି ପାଟିରେ ଦେଲେ ଲୋକର ଆତ୍ମା ମୋକ୍ଷ ହୁଏ। ତେଣୁ ହିନ୍ଦୁମାନେ ତାଙ୍କ ଗୃହରେ ଏଠାରୁ ପବିତ୍ର ଗଙ୍ଗାପାଣି ନେଇ ତାଙ୍କର ଦିଅଁଙ୍କ ଘରେ ରଖିଥା'ନ୍ତି। ଘରେ ଅଶୌଚ ହେଲେ ଗଙ୍ଗାପାଣି ପକାଇ ସାରା ଘରକୁ ପବିତ୍ର କରାଇଥା'ନ୍ତି। ଏହା ହିନ୍ଦୁ ଲୋକର ବିଶ୍ୱାସ; କିନ୍ତୁ ଅନ୍ୟ ଧର୍ମର ଲୋକେ ମଧ୍ୟ ଏହି ତତ୍ତ୍ୱକୁ ହୃଦୟଙ୍ଗମ କରି ଗଙ୍ଗାପାଣି ନିଜ ଘରେ ରଖିଥା'ନ୍ତି। ଗଙ୍ଗାପାଣିର ଔଷଧୀ ଗୁଣ ସାରା ପୃଥିବୀ ପ୍ରଚଳିତ।

ଗଙ୍ଗାଦେବୀଙ୍କର ଆଳତି ସନ୍ଧ୍ୟା ୬.୩୦ ମିନିଟ୍‌ରୁ ଆରମ୍ଭ ହୋଇ ଅବିରାମ ଗତିରେ ପ୍ରାୟ ଏକଘଣ୍ଟା ଧରି ଚାଲିଲା। ଦିଅଁଙ୍କୁ ଆଳତି ହେଲାପରେ ଗଙ୍ଗାମାତାଙ୍କୁ ଆଳତି କରାଯାଉଥିଲା ଦଶଟି ସ୍ଥାନରୁ। ସେହି ସ୍ଥାନମାନଙ୍କରେ ଗଙ୍ଗାମାତା, ପାର୍ବତୀମାତା, ସରସ୍ୱତୀ ମାତା, ଲକ୍ଷ୍ମୀମାତା, ରାଧାମାତା, ସୀତାମାତା, ହନୁମାନ, ଲକ୍ଷ୍ମଣ, ରାମଚନ୍ଦ୍ର, ମହାଦେବ ଏବଂ କୃଷ୍ଣଙ୍କର ମନ୍ଦିରରୁ ଆଳତି ଗଙ୍ଗାମାତାଙ୍କୁ କରାଯାଉଥିଲା।

ଗଙ୍ଗାର ପାଣିରେ ଦେଖାଯାଉଥିଲା ସାରା ବିଶ୍ୱବ୍ରହ୍ମାଣ୍ଡର ଅଚିନ୍ତ୍ୟନୀୟ ଦର୍ଶନ। ଆଳତିର ଝଲକରେ ଦର୍ଶକମାନଙ୍କର ହୃଦୟର ଭକ୍ତିପୂତ କମ୍ପନ ଅନୁଭୂତ

ହେଉଥିଲା । ଦର୍ଶକମାନଙ୍କର ମନେହେଉଥିଲା ପାପର ଶରୀରରୁ ମ୍ଳେଛମାନେ ବାହାରକୁ ଚାଲିଗଲେ । ଅନ୍ତର ଫୁଟି ଉଠୁଛି ପବିତ୍ରତାରେ । ପ୍ରାୟ୍ ଏକଘଣ୍ଟା ଧରି ଆଳତି ଚାଲିଲା ଭକ୍ତମାନଙ୍କର ହୃଦୟର ଅସୁମାରି ଭାବ, ଭାବନା ଏବଂ କାମନାକୁ ସିଦ୍ଧିକରି । ଆଳତି ଶେଷ ହେଲା । ସେହି କୂଳରେ ସମସ୍ତେ ଆଣ୍ଠୁମାଡ଼ି ଗଙ୍ଗାଦେବୀଙ୍କୁ ନମସ୍କାର କଲେ । ଅଭୀଷ୍ଟ ପୂରଣ ପାଇଁ ପ୍ରାର୍ଥନା କଲେ । ନିର୍ମଳ ପବିତ୍ର ଜୀବନ ପାଇଁ ଗୁହାରି କଲେ ।

ଗହଳି ବଢ଼ିଥିଲା ସେହି ଆଳତି ନିଆଁର ସ୍ପର୍ଶ ପାଇବାପାଇଁ । ଏହି ନିଆଁର ସ୍ପର୍ଶରେ ମନରୁ କଳୁଷିତ ଦୂର ହେବ, ବିଘ୍ନ ଦୂର ହେବ । ଅଭୀଷ୍ଟ ପୂରଣ ହେବ । କିଛି ଦାନ, ଦକ୍ଷିଣା ମଧ୍ୟ ଭକ୍ତମାନେ ଦେଲେ ।

ଆମେମାନେ ସେହି ଗହଳି ଭେଦକରି ଆଳତିର ସ୍ପର୍ଶ ନେଲୁ ଏବଂ ଗଙ୍ଗା ଉପରେ ଥିବା ପୋଲ ଉପର ଦେଇ ଅନ୍ୟପଟକୁ ଗଲୁ । ଆମର ନେତୃତ୍ୱ ନେଉଥିବା ମୋର ନାତି ପପୁଲୁ ଆଗେ ଆଗେ ଯାଉଥାଏ । ଆମେମାନେ ତା'ର ପଛେ ପଛେ ଦୌଡ଼ିଲାପରି ଯାଉଥାଉ । ହିଂମାଂଶୁ ରହିଗଲେ କୋତା ଷ୍ଟାଣ୍ଡ୍ ପାଖରେ । ସେ ଆଗରୁ ମନ୍ଦିର ଦର୍ଶନ କରିଛନ୍ତି ।

ପପୁଲୁ ଆଗେ ଆଗେ ଯାଉଥାଏ । ଗହଳି କଟାଇ ଆଗରେ ସେ ପ୍ରଥମେ ଗଙ୍ଗା ମନ୍ଦିରକୁ ଗଲା । ଆମେମାନେ ଗଲୁ । ସୁନ୍ଦର ଛୋଟ ମନ୍ଦିରଟିଏ । ଦଶଟିଯାକ ମନ୍ଦିର ପାଖାପାଖି । ଆମେମାନେ ଦେବୀ ଦେବତାମାନଙ୍କୁ ଦର୍ଶନ କଲୁ, ଭୋଗ, ପାଦୁକ ନେଲୁ । ଏହି ମନ୍ଦିରଗୁଡ଼ିକ ଗଙ୍ଗାର କୂଳରେ; କିନ୍ତୁ ଗଣେଶ ଏବଂ ମହାଦେବଙ୍କର ମନ୍ଦିର ଗଙ୍ଗାର ମଝିରେ । ଅଣଓସାରିଆ ଛୋଟ ବାଟ ଦେଇ ଗଲାବେଳେ ଗଙ୍ଗାର ଅତଳ ପାଣି ଠିକ୍ ତଳେ ଦେଖି ପ୍ରଫୁଲ୍ଲ ମନ ଆଶଙ୍କାରେ ପରିଣତ ହୁଏ । ବାଡ଼ ନ ଥିବା ଏହି ଅଣଓସାରିଆ ରାସ୍ତାରେ ପାଣି ପଡ଼ି ଖସଡ଼ା ହୋଇଛି । ଟିକିଏ ଅନ୍ୟମନସ୍କ ହେଲେ ଗଙ୍ଗାର ଅତଳ ପାଣିରେ ପଡ଼ିଯିବାର ସମ୍ଭାବନା ଅଛି । ତଥାପି ପପୁଲୁ, ବବୁଲୁ ସାହସ କରି ସେହି ବାଡ଼ ନ ଥିବା ରାସ୍ତାରେ ଗଲେ । ଆମେମାନେ ଭୟ୍ ଛାଡ଼ି ସେହି ରାସ୍ତାରେ ଯାଇ ମନ୍ଦିରରେ

ଦିଅଁଙ୍କୁ ଦର୍ଶନ କରି ପାଦୁକ, ପ୍ରସାଦ ପାଇଲୁ। ପପୁଲୁର ସାହସ ଅଧିକ। ମାସେ ତଳେ ଜରରେ ଘାଣ୍ଟି ହୋଇଥିବା ପପୁଲୁର ଦେହ ଓ ମନକୁ ଭଗବାନ ସବୁଦିନ ପାଇଁ ସୁସ୍ଥ ଏବଂ ନିରୋଧ ରଖିଥା'ନ୍ତୁ। ଦିଅଁଙ୍କ ପାଖରେ ତା'ପାଇଁ ଏବଂ ପରିବାରର ସମସ୍ତଙ୍କ ପାଇଁ ମୁଁ ପ୍ରାର୍ଥନା କରୁଥିଲି। ରାତି ସେତେବେଳକୁ ନଅଟା; ତଥାପି ସେହି ଦେବପୁରୀର ମନୋହର ଦୃଶ୍ୟ ଏବଂ ଭକ୍ତମାନଙ୍କର ଗହଣରେ ଆହୁରି ଅଧିକା ସମୟ ରହିବାକୁ ଇଚ୍ଛା ଥିଲା।

ମମିତାର ଅନୁରୋଧରେ ସେହି ନିକଟସ୍ଥ ଦୋକାନମାନଙ୍କରୁ ପିଲାଙ୍କର ମନଲାଖି ଜିନିଷ କିଣା ହେଲା। ରାତି ଦଶଟା ବାଜିଗଲା ହୋଟେଲରେ ପହଞ୍ଚୁ ପହଞ୍ଚୁ।

## ପତଞ୍ଜଳି ପରିଦର୍ଶନ

ତା'ପରଦିନ ସକାଳ ଆଠଟାରେ ନିତ୍ୟକ୍ରମ ସାରିଦେଲୁ। କିଛି ଜଳଖିଆ ଖାଇ ବାହାରି ପଡ଼ିଲୁ ପତଞ୍ଜଳି ଆଶ୍ରମ ଅଭିମୁଖେ।

ସେହି ଗଙ୍ଗାନଦୀର କୂଳେ କୂଳେ ପଛକୁ ଫେରିଲୁ। ଗଙ୍ଗାକୁ ନମସ୍କାର କଲୁ। ଏହାପରେ ଗଙ୍ଗା ଆଉ ଦିଶିଲେ ନାହିଁ। ଅଠର କି.ମି. ଆସିଗଲୁ ରାସ୍ତାର ଦୁଇପଟର ପ୍ରକୃତିର ନୈସର୍ଗିକ ସୌନ୍ଦର୍ଯ୍ୟ ଦେଖି ଦେଖି। ମନ ଭାରି ପ୍ରଫୁଲ୍ଲ ହୋଇଗଲା। ନିଜକୁ ବିସର୍ଜନ କରିଥିଲୁ ଏହି ବର୍ଣ୍ଣନାତୀତ ପୃଥିବୀର ଶୋଭାରାଶି ଭିତରେ। ଆତ୍ମା ବିଲୁପ୍ତପ୍ରାୟ।

ଆସି ପହଞ୍ଚିଗଲୁ ପତଞ୍ଜଳି ଆଶ୍ରମରେ। ଋଷିପ୍ରତିମ ଦେଶବିଦେଶ ବିଖ୍ୟାତ ଶ୍ରୀରାମଦେବ ଯୋଗକ୍ରିୟା ଆଶ୍ରମ ପ୍ରତିଷ୍ଠା କରିଛନ୍ତି ପତଞ୍ଜଳି ପୀଠରେ। ହରିଦ୍ୱାରରୁ ଦିଲ୍ଲୀ ଫେରିବା ବାଟରେ ଡାହାଣ ପଟେ ଏହି ଆଶ୍ରମର ତୋରଣ ଦେଖାଗଲା। ଗାଡ଼ି ଭିତରକୁ ଗଲା ମୁଖ୍ୟ ଫାଟକ ଦେଇ। ମୁଖ୍ୟ ଫାଟକରେ ସିକ୍ୟୁରିଟି ବିଶେଷ କିଛି ନ ପଚାରି ଗାଡ଼ି ଭିତରକୁ ଛାଡ଼ିଦେଲା। ବିରାଟ ଲନ୍ ତିଆରି ହୋଇଛି। ବାହାର ଗାଡ଼ି ରଖିବାପାଇଁ ସ୍ୱତନ୍ତ୍ର ସ୍ଥାନ ନିର୍ଦ୍ଧାରଣ କରାଯାଇଛି। ଗାଡ଼ିରୁ ଓହ୍ଲାଇଲୁ।

ଲନ୍ ଭିତରେ ସୁନ୍ଦର ସୁନ୍ଦର ଫୁଲଗଛ ଲଗାଯାଇଛି । ଫୁଲ ତୋଳିବା ପାଇଁ ମନା କରାଯାଇଛି । ଲେଖାମାନ କିଛି କିଛି ବ୍ୟବଧାନରେ । ଗୁଡ଼ିଏ ଛୋଟ ଛୋଟ ଔଷଧୀୟ ଗଛ ଲଗାଯାଇଛି । ପାଦ ପକାଇବା ବ୍ୟବସ୍ଥା ମଧ୍ୟ ହୋଇଛି । ପୂରା ପଡ଼ିଆଟି ସବୁଜିମାରେ ଫୁଲପତ୍ରରେ ଶୋଭିତା । ବାକି ସ୍ଥାନଗୁଡ଼ିକ କଂକ୍ରିଟ୍‌ର ଚଟାଣ କରାଯାଇଛି ।

ଆମେମାନେ ଗାଡ଼ିରୁ ସିଧା ଯାଇ ଲନ୍‌ରେ କିଛି ସମୟ ବୁଲିଲୁ । ଦିନ ଦଶଟା ବାକି ଯାଇଥିଲା । ସୂର୍ଯ୍ୟଙ୍କର ପ୍ରଚଣ୍ଡ ରଶ୍ମି କ୍ରମଶଃ ପ୍ରଖର ହୋଇଆସୁଥିଲା । ବହୁତଗୁଡ଼ିଏ ଗାଡ଼ି ପାର୍କିଂ ସ୍ଥାନରେ ରହିଥିଲା । ଗୁଡ଼ିଏ ସ୍ତ୍ରୀ-ପୁରୁଷ ଏବଂ ପିଲା ମୁଖ୍ୟ କୋଠାଘରକୁ ଯାଉଥିବାର ଦେଖିଲୁ । ଆମେମାନେ ସେମାନଙ୍କର ପଛେପଛେ ଗଲୁ । ବିଶାଳ ତିନି ମହଲା ପକ୍କା ଘର । ମୁଖ୍ୟ ଦୁଆର ଦେଇ ଭିତରକୁ ପଶିଲୁ । ରିସେପ୍‌ସନ୍ କାଉଣ୍ଟରରେ ଝିଅ ଦୁଇଟି ବସିଥିଲେ । ସେମାନଙ୍କଠାରୁ ସବୁପ୍ରକାର ତଥ୍ୟ ଯୋଗାଡ଼ କରିନେଲୁ । ଆମେମାନେ ପତଞ୍ଜଳି ଆଶ୍ରମରେ ଦୁଇଦିନ ରହିବାପାଇଁ କହିବାରୁ ଝିଅଟି ଅନ୍ୟ ଏକ କାଉଣ୍ଟରକୁ ଯିବାକୁ କହିଲା । ହିଂମାଂଶୁ ଏବଂ ମମିତା ଗଲେ । ଆମେମାନେ ଆଗରେ ଥିବା ବିରାଟକାୟ ହଲ୍‌ରେ ପଡ଼ିଥିବା ବେଞ୍ଚ୍‌ରେ ବସିଲୁ । ସେହି ହଲ୍‌ଟିର ଲମ୍ବା ପ୍ରାୟ ଶହେ ଫୁଟ୍ ଏବଂ ଓସାର ପ୍ରାୟ ନବେଫୁଟ ହେବ । ଏହାରି ଉପରେ ଛାତ ପ୍ରାୟ ୪୦ ଫୁଟ୍ ଉଚ୍ଚରେ ଅଛି । ଛାତରୁ ସୂର୍ଯ୍ୟକିରଣ ଆସୁଛି ଖୋଲାସ୍ଥାନରେ ମୋଟା ଅଭ୍ର ଟିଣ ଦେଇ । ଏହି ହଲ୍‌ଟି ହେଉଛି ପ୍ରତୀକ୍ଷାଳୟ । ଶହ ଶହ ରୋଗୀ ତଥା ସେମାନଙ୍କର ସାଥିରେ ଆସିଥିବା ସହଯୋଗୀମାନେ ଏଠାରେ ଡାକ୍ତରମାନଙ୍କ ପାଇଁ ଅପେକ୍ଷା କରିଥା'ନ୍ତି । ପ୍ରାୟ ତିରିଶ ଜଣ ଆୟୁର୍ବେଦିକ ଡାକ୍ତରଙ୍କର ସ୍ୱତନ୍ତ୍ର କୋଠରି ଅଛି । ଗୋଟିଏ ସାଧା କାଗଜରେ ଛପା ଫର୍ମରେ ଆବଶ୍ୟକ ମୁତାବକ ବିବରଣୀ ଦେବାକୁ ପଡ଼େ । ଏଥିରେ ରୋଗୀର ଠିକଣା ଏବଂ ରୋଗ ଭୋଗ କରୁଥିବା ବିଷୟ ଲେଖିବାକୁ ପଡ଼ିଥାଏ । ଏହି ଫର୍ମଗୁଡ଼ିକୁ କାଉଣ୍ଟର୍‌ରେ ବସିଥିବା ଝିଅଟି ନେଇ ଡାକ୍ତରଙ୍କର କ୍ୟାବିନ୍ ନମ୍ବର ସହିତ ମୋହର ମାରିଦିଏ ।

ହିଂମାଂଶୁ ଏବଂ ମମି ଦୁଇ ଦିନ ପାଇଁ ଦୁଇଟି ଶୀତତାପନିୟନ୍ତ୍ରିତ କୋଠରି ବୁକ୍ କରାଇଦେଲେ । ଆମେମାନେ ସମସ୍ତ ଜିନିଷ ନେଇ ସଭା ଶେଷ କୋଠରିରେ ଥିବା ଅତିଥିମାନଙ୍କର ରହିବା ସ୍ଥାନ ଦ୍ୱିତୀୟ ମହଲାରେ ପହଞ୍ଚିଲୁ । ସୁରକ୍ଷାକର୍ମୀ ସମସ୍ତ ତଦାରଖ କରିବା ପରେ ଆମକୁ ନେଇ ଦୁଇଟି ରୁମ୍ ଦେଖାଇଦେଲା । କୋଠରି ବନ୍ଦ ନ ଥିଲା । ଭିତରକୁ ଗଲୁ । ଖୁବ୍ ବଡ଼ କୋଠରିରେ ଏ.ସି. ଫିଟ୍ ହୋଇଛି । ବଡ଼ ବେଡ୍‌ରେ ଚାଦର ଏବଂ ତକିଆ ଦିଆହୋଇଛି । ସଂଲଗ୍ନ ଗାଧୁଆଘର ମଧ୍ୟ ବଡ଼ ହୋଇଛି । ପ୍ରାୟ ଆଠଫୁଟ ଓସାରରେ ବାରଫୁଟ ଲମ୍ବ ହେବ । ଆଧୁନିକ ଧରଣର ସମସ୍ତ ପାଇପ୍ ଏବଂ ଗରମ କରିବା ଟାଙ୍କି ଅଛି । କମୋଡ଼ଟି ପୂରା ଧଳା ଏବଂ ବଡ଼ ଧରଣର । ଭିତରେ ହାତ ଧୋଇବା ଏବଂ ଆଲମିରା ଯତ୍ନର ସହିତ ଅଛି । ବେଡ୍‌ରୁମ୍‌ର ଡିଜାଇନ୍ ସୁନ୍ଦର ଭାବରେ ସଜ୍ଜିତ ହୋଇଛି । ଥାକମାନ ସୁନ୍ଦର ଭାବରେ ପ୍ଲାଇ ଉଡ୍‌ରେ ତିଆରି ହୋଇ ସନ୍‌ମାଇକା ପେଷ୍ଟ ହୋଇଛି । କୋଟ ରଖିବା ଷ୍ଟାଣ୍ଡ ଏବଂ ପ୍ୟାଣ୍ଟ୍ ସାର୍ଟ ରଖିବାପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ହୋଇଛି ପ୍ଲାଇଉଡ୍‌ରେ । ଚଟାଣକୁ ଆଧୁନିକ ଟାଇଲରେ ଖଞ୍ଜାଯାଇଛି । ସୁନ୍ଦର ଦିଶୁଛି । ଦୁଇଟି ରୁମ୍‌ରେ ଜିନିଷପତ୍ର ରଖିଲୁ । ଗୋଟିଏ ରୁମ୍‌ରେ ହିଂମାଂଶୁ ମମି ପିଲାମାନଙ୍କର ଓ ଅନ୍ୟଟିରେ ଆମର ଜିନିଷ ରଖିଦେଲୁ ।

ଶୀଘ୍ର ତଳକୁ ଚାଲିଗଲୁ । ସେହି ହଲ୍‌ରେ ଡାକ୍ତରୀ ପରୀକ୍ଷା ଅଂଶୁମାନର କରିବା ଦରକାର ପଡୁଥିଲା । ଓଡ଼ିଆ ଡାକ୍ତର ଆସିଯାଇଥିଲେ । ଆଗରୁ ଥରେ ପପୁଲୁକୁ ଦେଖିଥିଲେ ଓଡ଼ିଶାରେ । ଏଥର ତା'ର ଅଧଘଣ୍ଟାକ ପରେ ସେ ଆସି ପହଞ୍ଚିଲେ । ପପୁଲୁର ଦେହ ପରୀକ୍ଷା କଲେ ଏବଂ ଏମ୍‌ସ୍ ଡାକ୍ତରୀ ରିପୋର୍ଟ ଦେଖିଲେ । ଡାକ୍ତର କହିଲେ, "ଆଉ କିଛି ଭୟ କରିବାର ନାହିଁ ।" ଆୟୁର୍ବେଦୀୟ ଔଷଧ ଲେଖିଦେଲେ । ଏହାପରେ ମୋର ସ୍ତ୍ରୀର ଦେହ ପରୀକ୍ଷା କରି ଝାଡ଼ା ବନ୍ଦ ପାଇଁ ଔଷଧ ଦେଲେ । ସେତେବେଳକୁ ଦିନ ବାରଟା ହୋଇଯାଇଥିଲା ।

ରାମଦେବଙ୍କର ଏହି ପତଞ୍ଜଳି ଆଶ୍ରମରେ ରହିବା ଏବଂ ଖାଇବାର ବ୍ୟବସ୍ଥା ଅଛି । ଖାଇବା ସ୍ଥାନ ସେହି କୋଠାର କିଛି ଦୂରରେ ତିନି ମହଲାର ହୋଇଛି । ତଳ ମହଲାରେ ଜଳଖିଆ ଖାଇବା ବ୍ୟବସ୍ଥା ସହ ଚା' ଏବଂ କଫିର ବ୍ୟବସ୍ଥା

ଅଛି । ଉପର ଦ୍ୱିତୀୟ ମହଲାରେ ଖାଇବା ବ୍ୟବସ୍ଥା ହୋଇଛି ଭଲଭାବରେ । ଏଠାରେ ଭାତ, ଡାଲି, ରୁଟି, ସାଧା ତରକାରି ଇତ୍ୟାଦି ମିଳେ । ସବୁଠାରେ ପ୍ରଥମେ ତୁମର ରୁଚି ଆଉ ପରିମାଣ ରୂପକ ଖାଦ୍ୟର କୁପନ ଟଙ୍କା ଦେଇ ଗ୍ରହଣ କରିବାକୁ ହେବ । ଏହାପରେ କୁପନ୍ ନେଇ ଦିଆଯାଉଥିବା ସ୍ଥାନରୁ ଖାଦ୍ୟ କିମ୍ବା ଜଳଖିଆ ନେଇ ଉପଯୁକ୍ତ ସ୍ଥାନରେ ବସି ଖାଇବାକୁ ପଡ଼ିବ । ନିଜର ପିଇବାପାଣି ନେବାକୁ ହେବ । କୌଣସି ପରଷିବାବାଲା ବା ସଫା କରିବା ଲୋକ ନାହାନ୍ତି । କେବଳ ଜଣେ ଲୋକ ଟେବୁଲ୍‌ଗୁଡ଼ିକୁ ପୋଛି ଦେଉଥାଏ । ଚୌକି ସଜାଡ଼ି ପକାଉଥାଏ ।

ଏଠାରେ ଖାଦ୍ୟପଦାର୍ଥ, ଜଳଖିଆ ସବୁ ଭଲ ଘିଅରେ ତିଆରି ହୋଇ ବିଶୁଦ୍ଧ ଭାବରେ ପ୍ରସ୍ତୁତ କରାଯାଏ । ଏଣୁ ଦାମ୍ ସାମାନ୍ୟ ଅଧିକା ମନେହୁଏ । ପରିଷ୍କାର ପରିଚ୍ଛନ୍ନ ହେଲା ପତଞ୍ଜଳି ଆଶ୍ରମର ପ୍ରତ୍ୟେକ ସ୍ଥାନର ମାଧୁରିମା । ଏହା ଏକ ନୈତିକ ଦାୟିତ୍ୱ ବୋଲି ଏଠାରେ କାମ କରୁଥିବା ପ୍ରତ୍ୟେକ ଲୋକ ଭାବୁଥା'ନ୍ତି । ଏଠାକୁ ଆସୁଥିବା ପ୍ରତ୍ୟେକ ଲୋକ ମଧ୍ୟ ଏହି ଆଶ୍ରମର ନିୟମ ପାଳନ କରି ପ୍ରତ୍ୟେକ ସ୍ଥାନକୁ ପରିଷ୍କାର ରଖନ୍ତି ।

ଆମେମାନେ ପ୍ରାୟ ଗୋଟାଏ ବେଳକୁ ଏହି ବିରାଟ ଖାଇବା ହଲ୍‌କୁ ଆସି ଆବଶ୍ୟକ କୁପନ କ୍ରୟକରି ଖାଇବାପାଇଁ ନେଲୁ । ପ୍ରତି ପ୍ଲେଟ୍‌ରେ କିଛି ଅରୁଆ ଭାତ, ଚାରିପଟ ପରଟା, କିଛି ଡାଲି ଏବଂ ଗୋଟିଏ ସାଧା ତରକାରି ଥିଲା । ତରକାରିରେ ଲାଉ ଏବଂ ବାଇଗଣ, ଭେଣ୍ଡି ପଡ଼ିଥିଲା । ଖାଦ୍ୟ ସୁସ୍ୱାଦୁ ଲାଗିଲା । ଖାଇସାରି ବିଶ୍ରାମ ନେବାକୁ ଫେରିଆସିଲୁ । ଖାଇବା ହଲ୍‌ଠାରୁ ଆମର ଅତିଥି କୋଠରୀଗୁଡ଼ିକର ଦୂରତ୍ୱ ପ୍ରାୟ ହଜାର ଫୁଟ ହେବ । ଅର୍ଥାତ୍ ମୁଖ୍ୟ କୋଠାଘରଟି ପ୍ରାୟ ବାରଶହ ଫୁଟ ଲମ୍ବାରେ ଏକ ଶହ ଫୁଟ୍ ଓସାର ହେବ । ଏଥିରେ ସବୁପ୍ରକାରର ବ୍ୟବସ୍ଥା ଅଛି । ଦ୍ୱିତୀୟ ମହଲାରେ ଗୋଟିଏ ବଡ଼ ଲାଇବ୍ରେରୀ ଅଛି । ଏଥିସହିତ ଗବେଷଣା କରିବାକୁ ଗବେଷଣା ଗୃହ ଅଛି । ଏଲୋପାଥିର ଆଧୁନିକ ଧରଣର ଡାକ୍ତାରେ ଚିକିତ୍ସା କରିବାକୁ ସୁବିଧା କରାଯାଇଛି । ହାର୍ଟ ସର୍ଜରୀ ଏବଂ ମେଡିସିନ୍ ଗୃହ ମଧ୍ୟ ଅଛି । ଆଧୁନିକ ଡାକ୍ତାରେ ଏଲୋପାଥି ମେଡିସିନ୍ ପ୍ରୟୋଗ କରି ରୋଗ ନିଦାନ କରିବାକୁ ଅହରହ ଚେଷ୍ଟା ଚାଲିଛି । ଡାକ୍ତର ଏବଂ

ନର୍ସମାନେ ଉପର ମହଲାରେ ରହିବାର ବ୍ୟବସ୍ଥା ଅଛି। ସମସ୍ତେ ଯାଇ ସେହି ଖାଇବା ହଲ୍‌ରେ ଜଳଖିଆ ଏବଂ ମିଲ୍ ଖାଆନ୍ତି। ଜଳଖିଆକୁ ଦୁଇ ପ୍ରକାରରେ ଦକ୍ଷିଣ ଭାରତୀୟ ଶୈଳୀରେ ଦୋସା, ଇଡ଼ିଲି ଏବଂ ସମ୍ବର, ରସମ୍‌ର ବ୍ୟବସ୍ଥା, ଅନ୍ୟଟି ହେଲା ଉତ୍ତର ଭାରତ ଅନୁସାରେ ପୁରୀ, ତରକାରି, ପରଟା, ସୁଜି ଇତ୍ୟାଦି ସହ ମିଠାର ଆୟୋଜନ ହୋଇଛି। ବିଶୁଦ୍ଧ ଘିଅରେ ସବୁ ତିଆରି ହୁଏ।

ଆମେମାନେ ଦୁଇଘଣ୍ଟା ଧରି ବିଶ୍ରାମ ନେଲୁ। ଏହାପରେ ଯୋଗ ସ୍ଥାନକୁ ପ୍ରାୟ ସାଢ଼େ ଚାରିଟାବେଳକୁ ଗଲୁ। ଯଜ୍ଞକୁଣ୍ଡ ପରି ଉପରକୁ ଜଣାପଡୁଥିଲେ ମଧ୍ୟ ଏଠାରେ ପ୍ରତିଦିନ ତିନିଥର ଆଶ୍ରମବାସୀଙ୍କୁ ଯୋଗ କ୍ଲାସରେ ପହଞ୍ଚିବାକୁ ହୁଏ। ମୁଁ ପପୁଲୁ, ବବୁଲୁ ଯାଇ ଯୋଗ ମଣ୍ଡପରେ ପହଞ୍ଚିଲୁ। ଯୋଗ ଆରମ୍ଭ ହୋଇଯାଇଥାଏ। ପ୍ରାୟ ପଚାଶରୁ ଶହେ ଜଣ ଭିତରେ ଯୋଗ କ୍ଲାସ୍‌ରେ ଉପସ୍ଥିତ ଥିଲେ। ଏହି ଯୋଗ ସ୍ଥାନଟି ମୁଖ୍ୟ ଅଟ୍ଟାଳିକାଠାରୁ ବାହାରେ ଅବସ୍ଥିତ। ଏଠାରେ ପହଞ୍ଚିବାକୁ ତିନିଫୁଟ ରାସ୍ତା ଅଛି। ରାସ୍ତାଗୁଡ଼ିକ କଂକ୍ରିଟ୍‌ର ଉପରେ ପେଭ୍‌ମେଣ୍ଟ ଷ୍ଟୋନ୍ ଲଗାଯାଇ ସୁନ୍ଦର କରାଯାଇଛି। ଚାରିପଟେ ଛୋଟ ଛୋଟ ଫୁଲ ଗଛ ଭର୍ତ୍ତି ହୋଇଛି। ଯୋଗଶାଳରେ ଜଣେ ତରୁଣ ଯୋଗୀ ସମସ୍ତଙ୍କୁ ଯୋଗଶିକ୍ଷା ଦେଉଥିଲେ। ଗୋଲାକାର ଭାବରେ ଶିକ୍ଷାର୍ଥୀମାନେ ବସିଥିଲେ। ଏମାନଙ୍କର ବୟସର ତାରତମ୍ୟ ବାରି ହେଉଥିଲା। ଯୁବକ, ପ୍ରୌଢ଼, ବୃଦ୍ଧମାନଙ୍କ ସହିତ ବୃଦ୍ଧା, ପ୍ରୌଢ଼ା, ଯୁବତୀ, ରମଣୀ ଏବଂ ପିଲାମାନେ ମଧ୍ୟ ଯୋଗ ଶିଖୁଥିଲେ। ବୟସର ତାରତମ୍ୟ ଏଠାରେ ନ ଥିଲା। ପ୍ରକୃତ ନିରୋଗ ହେବାକୁ ହେଲେ ରାମଦେବଙ୍କର ଅନୁସୃତ ଯୋଗ ଏବଂ ପ୍ରାଣାୟାମ କରିବାକୁ ପଡ଼ିବ। ଏଥିପାଇଁ ସାରା ବିଶ୍ୱରେ ରାମଦେବ ଯୋଗ ଏବଂ ପ୍ରାଣାୟମର ସୂତ୍ର ବାହାର କରି ଦେଶ-ବିଦେଶର ବିଭିନ୍ନ ପ୍ରାନ୍ତରେ ନିଜେ ଉପସ୍ଥିତ ରହି ଯୋଗ-ପ୍ରାଣାୟାମ ଶିକ୍ଷା ଦେଉଛନ୍ତି। ଆଜିକାଲି ବିଶ୍ୱବିଦ୍ୟାଳୟରେ ଯୋଗଶାସ୍ତ୍ରର ମାନ୍ୟତା ବୃଦ୍ଧି ପାଇଛି। ସ୍କୁଲ, କଲେଜରେ ଯୋଗ-ପ୍ରାଣାୟାମ ଶିକ୍ଷା ଦେବାର ବ୍ୟବସ୍ଥା କରିଛନ୍ତି। ଏହି ଯୋଗ-ପ୍ରାଣାୟାମ ମଧ୍ୟରେ କପାଳଭାତି, ଅନୁଲୋମ-ବିଲୋମ ସହ ଭାତିକା ମଧ୍ୟ ଅନ୍ତର୍ଭୁକ୍ତ। ଏହା ସହିତ କିଛି ଶାରୀରିକ ବ୍ୟାୟାମ ରଖାଯାଇଛି। କ୍ରମଶଃ ଯୋଗ, ପ୍ରାଣାୟମର ମର୍ଯ୍ୟାଦା ଏବଂ ପ୍ରସାର

ଘଟୁଛି ସାଧାରଣ ଜନତା ଭିତରେ । ଯୋଗ କ୍ଲାସରେ ଆମେ ଯୋଗ କରିବାରେ ଲାଗିଲୁ ।

**ରାମଦେବଙ୍କ ସହ ଭେଟ :**

ଆମେ ଭାବିପାରି ନ ଥିଲୁ ଅକସ୍ମାତ୍ ଆମର ରାମଦେବଙ୍କ ସହ କୋଠାର ପଛ ଫାଟକ ପାଖରେ ଦେଖାହେବ । ବହୁତ ଆଶ୍ରମବାସୀ ଏବଂ ସୁରକ୍ଷାକର୍ମୀଙ୍କୁ ପଚାରିଥିଲୁ ରାମଦେବ ପତଞ୍ଜଳି ଆଶ୍ରମରେ ଅଛନ୍ତି ତ ? କେହି ସଠିକ୍ ଉତ୍ତର ଦେବାରେ ଅକ୍ଷମ ହେଲେ । ଏଣୁ ଭାବୁଥିଲୁ ଆମର ଯୋଗ ନାହିଁ ରାମଦେବଙ୍କ ସହ ଭେଟ ହେବା ।

ଯୋଗଶାଳାରେ ଯୋଗ ଶିକ୍ଷା କରୁଥିଲୁ । ସମୟ ପ୍ରାୟ ୬ଟା ପାଖାପାଖି । ପଛପଟ ଫାଟକ ପାଖରେ କୋଳାହଳ ଶୁଣାଗଲା । ଗୋଟିଏ କାର୍ ଠିଆ ହୋଇଥିଲା । ମୋର ବଡ଼ ନାତି ଅଂଶୁମାନ ମୋ' ପାଖରେ ବସି ଯୋଗ କରୁଥିଲା । "ହେଇ ରାମଦେବଙ୍କ ସେଠି ଠିଆ ହୋଇଛନ୍ତି !" କହି ଦ୍ରୁତ ବେଗରେ ସେଠାରୁ ଦୌଡ଼ି ସେହି କାର୍ ରହିଥିବା ପୋର୍ଟିକୋ ଆଡ଼କୁ ଗଲା । ତା'ର ସାନଭାଇ ଆହ୍ୱାନ ମଧ୍ୟ ତା'ର ଭାଇକୁ ଅନୁସରଣ କରି ପଛେ ପଛେ ଦୌଡ଼ିଲା । ଦେଖିଲି ସେହି ଯୋଗଶାଳାରୁ କିଛି ଲୋକ ମଧ୍ୟ ସେହି ସ୍ଥାନକୁ ଦୌଡ଼ିଲେ । ଏହି ମୌକାରେ ମୁଁ ମଧ୍ୟ ଦୌଡ଼ି ଦୌଡ଼ି ଯାଇ ରାମଦେବଙ୍କ ପାଖରେ ପହଞ୍ଚିଲି । ମୋର ଝିଅ ମମି ଏବଂ ସ୍ତ୍ରୀ ମଧ୍ୟ ମୋର ଦୌଡ଼ିବା ଦେଖି ଯୋଗଶାଳାର ବାହାର ଘାସ ଗାଲିଚା ବସିବା ସ୍ଥାନରୁ ଉଠି ଅନ୍ୟ ସ୍ତ୍ରୀଲୋକଙ୍କ ସହ ରାମଦେବଙ୍କୁ ନିକଟରୁ ଦର୍ଶନ କରିବାକୁ ଇଚ୍ଛା କରି ଦୌଡ଼ିଲେ ସେହି ସ୍ଥାନକୁ ।

ଅଳ୍ପସମୟ ଭିତରେ ରାମଦେବଙ୍କୁ ପ୍ରାୟ ପଚାଶ ହେବ ଭକ୍ତ ଘେରିଗଲେ । ମୋର ବଡ଼ ନାତି ଏବଂ ସାନ ନାତି ରାମଦେବଙ୍କ ଚରଣ ସ୍ପର୍ଶ କରି ଆଶୀର୍ବାଦ ନେଇସାରିଥିଲେ । ଦେଖିଲି ରାମଦେବ ଅବିଚଳିତ ଭାବରେ ସମସ୍ତଙ୍କୁ ଆଶୀର୍ବାଦ ଦେଉଛନ୍ତି ଧୀରସ୍ଥିର ଚିତ୍ତରେ । ସୌମ୍ୟକାନ୍ତିର ଗେଡ଼ା ମଣିଷ । ପରିଧାନ ନାଲିବର୍ଣ୍ଣର ଲମ୍ବା କୁର୍ତ୍ତା ଏବଂ ଲୁଙ୍ଗି । ବେଶଭୂଷା ନିହାତି ସରଳ । ମୁହଁରେ କଳାଦାଢ଼ି ସୁନ୍ଦର ଦିଶୁଛି । ପାଖରୁ ତାଙ୍କୁ ଦର୍ଶନ କଲୁ । କି ଅସମ୍ଭବ ମାନସିକ ଶକ୍ତି ଏହି ଲୋକଟାର !

ସାରାପୃଥିବୀରେ ଯୋଗ-ପ୍ରାଣାୟମର ଶିକ୍ଷା ଦେଉଛନ୍ତି ମଣିଷର ରୋଗ ବିନାଶପାଇଁ। ବୟସ ପ୍ରାୟ ପଚାଶରୁ ଅଧିକ ହେବ। ଅବିବାହିତ। ଆୟୁର୍ବେଦ ବିଦ୍ୟାରେ ମଧ୍ୟ ପାରଙ୍ଗମ। ଦେଶରେ ବିନା ଖର୍ଚ୍ଚରେ ଆୟୁର୍ବେଦ ଚିକିତ୍ସାର ପ୍ରଚଳନ ପାଇଁ ଚେଷ୍ଟା କରୁଛନ୍ତି। ତାଙ୍କୁ ଘେରି ଠିଆ ହୋଇଥିଲୁ ମାତ୍ର ପାଞ୍ଚଫୁଟ୍ ବ୍ୟବଧାନରେ। ଦୂରଦୂରାନ୍ତରୁ ଆସିଥିବା ବୃଦ୍ଧ-ବୃଦ୍ଧାମାନଙ୍କୁ କିଛି ପଚାରି ବୁଝୁଛନ୍ତି। ସେମାନଙ୍କୁ ନିର୍ଭୟର ବାଣୀ ଶୁଣାଉଛନ୍ତି-- ଦେହ ସଂପୂର୍ଣ୍ଣ ସୁସ୍ଥ ହୋଇଯିବ। ନିୟମିତ ଯୋଗ-ପ୍ରାଣାୟମ କଲେ ଏବଂ ଖାଦ୍ୟପଦାର୍ଥରେ ସଂଯମ ହେଲେ, ଅତିରିକ୍ତ ଖାଇବା କମାରୁ ଉଚିତ ନୁହେଁ। ଯେତିକି ଦେହ ପାଇଁ ଖାଦ୍ୟହେଲେ ଚଳିବ, ସେତିକି ନିରାମିଷ ଖାଦ୍ୟ ଖାଇବା ଉଚିତ ବୋଲି କହୁଥିଲେ।

ତାଙ୍କର ଅନ୍ୟଆଡ଼େ ଯିବାର ସମୟ ହୋଇଗଲା। କାର୍‌ର ପଛପଟ ସିଟ୍‌ରେ ବସି ଦୁଆରକୁ ଆଉକାଇ ନେଲେ। ଅଧାଖୋଲା କାଚ ମଧ୍ୟରୁ ହାତ ହଲାଇ ବିଦାୟ ନେଇ ଚାଲିଗଲେ। ଆମେମାନେ ମଧ୍ୟ ହାତଯୋଡ଼ି ନମସ୍କାର କରିଥିଲୁ ତାଙ୍କର କାର୍ ଆମ ଦୃଷ୍ଟିରୁ ଅନ୍ତର୍ହିତ ହେଲା ପର୍ଯ୍ୟନ୍ତ। ସନ୍ଧ୍ୟା ହୋଇଯାଇଥିଲା। ଆମେମାନେ ସେହି ଅଟ୍ଟାଳିକାର ଚାରିପଟେ ବୁଲିବାକୁ ଗଲୁ।

## ପତଞ୍ଜଳିର ଭିତର ସ୍ଥଳ :

ଆମେମାନେ ସନ୍ଧ୍ୟା ପରେ ପ୍ରଥମେ ଆଗପଟେ ଥିବା ଫୁଲବଗିଚା ଆଡ଼କୁ ଗଲୁ। ସୁନ୍ଦର ବିଦ୍ୟୁତ ଆଲୋକର ବ୍ୟବସ୍ଥା ହୋଇଛି। ଗୋଟିଏ ସ୍ଥାନରେ ପାଣିର ସ୍ପ୍ରିଙ୍ଗ୍ କରାଯାଇ ନାଲି, ନେଳି ପାଣିର ଛିଟା ଚାରିଆଡ଼େ ପ୍ରାୟ ଦଶଫୁଟ ଗୋଲେଇରେ ପଡୁଛି। ତା'ରି ପାଖରେ ବନ୍ଧ କରାଯାଇ ପାଣିକୁ ରୋକାଯାଇଛି। କିଛି ସୁନ୍ଦର ସୁନ୍ଦର ପଥରର ମୂର୍ତ୍ତିମାନ ସ୍ଥାପନ କରାଯାଇଛି ସେହି ଗୋଲାକାର ସ୍ଥାନରେ। ଆମେମାନେ ସେଠି ପଡ଼ିଥିବା ବେଞ୍ଚରେ ପ୍ରାୟ ଅଧଘଣ୍ଟା ଧରି ବସି ରହି ରାତ୍ରିକାଳୀନ 'ପତଞ୍ଜଳି ଆଶ୍ରମ'ର ସୌନ୍ଦର୍ଯ୍ୟ ଉପଭୋଗ କରିଥିଲୁ। ଚଳଚଞ୍ଚଳ ଏହି ବିଶାଳ ଅଟ୍ଟାଳିକା କ୍ରମଶଃ ନିର୍ଜନ ହୋଇଆସୁଥିଲା। ଏଥର ଆଶ୍ରମର ଡାହାଣପଟ ସ୍ଥାନ ଦେଖିବାକୁ ଗଲୁ। ବହୁତଗୁଡ଼ିଏ କ୍ୱାର୍ଟର ତିଆରି ହୋଇଛି।

ଏଠାରେ ଆଶ୍ରମର ପରିଚାଳକ, ମୁଖ୍ୟ ଡାକ୍ତର ଏବଂ ପ୍ରଶାସନ ବିଭାଗର ପଦସ୍ଥ ବ୍ୟକ୍ତିମାନେ ରହିଛନ୍ତି । ଏଠାରେ ପ୍ରାୟ ବହୁତ ଅବିବାହିତ ବ୍ୟକ୍ତି ଅଛନ୍ତି । କୋଠାଘର ଗୁଡ଼ିକ ଆଧୁନିକ ଢାଞ୍ଚାରେ ତିଆରି ଏବଂ କମନୀୟ ଦିଶୁଛି ।

ପଞ୍ଚପଟକୁ ଗଲୁ । ସବୁଆଡ଼େ ବିଦ୍ୟୁତ ଆଲୋକର ବ୍ୟବସ୍ଥା । ତେଣୁ ଆଶ୍ରମଟି ସୁନ୍ଦର ସତେଜ ଦିଶୁଛି । ପାଣିର ବ୍ୟବସ୍ଥା ମଧ୍ୟ ଠିକ୍ ଭାବରେ ହୋଇଛି । ସଦାବେଳେ ପାଣି ଆଶ୍ରମରେ ଥାଏ । ଗଙ୍ଗା ନଦୀରୁ ପାଣି ଆସେ ବୋଲି ଶୁଣିଲୁ ;କିନ୍ତୁ ନିଜର ବୋର ଓୟେଲ ଖୋଳାହୋଇ ପାଣି ସଂଗ୍ରହ କରି ଯୋଗାଣ କରାଯାଉଛି ଆଶ୍ରମ ଭିତରେ ।

ରାତ୍ରି କ୍ରମଶଃ ବଢ଼ିବାକୁ ଲାଗିଲା । ନଅଟା ପାଖାପାଖି ହେବ । ଖାଇବା ହଲ୍ ବନ୍ଦ ହୋଇଯିବ ସାଢ଼େ ନଅଟାରେ । କିଛି ଖାଇବାକୁ ସେଠାକୁ ଗଲୁ । ମିଲ୍-ରୋଟି ମଗାଇ ଖାଇଲୁ । ପଞ୍ଚପଟ କୋଠାରେ ଥିବା ଆମର କୋଠରୀକୁ ଫେରିଆସିଲୁ । ଖରାଦିନର ଉଷ୍ଣତା ଅନୁଭବ କରୁଥିଲୁ । କ୍ଳାନ୍ତ ହୋଇପଡ଼ିଥିଲୁ, ତେଣୁ ଶୀଘ୍ର ସମସ୍ତେ ଶୋଇପଡ଼ିଲୁ । ଡ୍ରାଇଭର ମଧ୍ୟ ତା'ପାଇଁ ନିର୍ଦ୍ଦିଷ୍ଟ ସ୍ଥାନରେ ଖାଇସାରି ଶୋଇପଡ଼ିଲା । ସକାଳୁ ଶୀଘ୍ର ଦିଲ୍ଲୀ ବାହାରି ପଡ଼ିବା ଠିକ୍ ହୋଇଥିଲା ।



## ଅକ୍ଷୟଧାମ ଦର୍ଶନ

ସକାଳୁ ଶୀଘ୍ର ଉଠିପଡ଼ି ନିତ୍ୟକ୍ରମ ଶେଷ କଲୁ । ଜିନିଷପତ୍ର ମଧ୍ୟ ବନ୍ଧାବନ୍ଧି କରିଦେଲୁ । ପତଞ୍ଜଳି ଆଶ୍ରମକୁ ଦିନ ଆଠଟା ସୁଦ୍ଧା ଛାଡ଼ିଦେବା ପାଇଁ ଇଚ୍ଛା ଥିଲା ; କିନ୍ତୁ ପପୁଲୁ ସହିତ ସକାଳୁ ପୁଣିଥିରେ ପତଞ୍ଜଳି ଆଶ୍ରମର ସବୁ ଜାଗା ଦେଖିବାକୁ ଠିକ୍ କଲୁ । ବବୁଲୁ ମଧ୍ୟ ମୋ ସାଥିରେ ଗଲା । ଆଶ୍ରମର ସେହି ବିରାଟ ଅଟ୍ଟାଳିକାର ପ୍ରତ୍ୟେକ ମହଲା ବୁଲି ଦେଖିଲୁ । ପ୍ରାୟ ସବୁ ମହଲାର ଘରଗୁଡ଼ିକ ଖୋଲାଯାଇ ସଫାସୁତୁରା କାମ କରାଯାଉଥିଲା । ରାମଦେବଙ୍କର ପ୍ରକୋଷ୍ଠକୁ

ସୁରକ୍ଷାକର୍ମୀମାନେ ଜଗିଛନ୍ତି । ଘରଟି ଖୋଲା ନାହିଁ । ରାମଦେବ ଅଛନ୍ତି କି ନାହିଁ ସେମାନେ କିଛି କହିପାରିଲେ ନାହିଁ । ଯଦି ଥିବେ, ନିଶ୍ଚୟ ଯୋଗରେ ବସିଥିବେ । ଏଥର ବାହାରକୁ ଆସିଲୁ । ସେହି ଅଟ୍ଟାଳିକାର ବାହାରେ ସୁଶୋଭିତ ପୁଷ୍ପରାଜି ଏବଂ ବହୁ ଔଷଧ ଗଛ ପାଖକୁ ଗଲୁ । ଏହି ଆଶ୍ରମର ରାସ୍ତାର ଅପରପାର୍ଶ୍ୱରେ ଔଷଧ ଗଛର ବଡ଼ ଜମି ଅଛି । ପ୍ରାୟ ପାଞ୍ଚ ଏକରରୁ ଅଧିକ ସ୍ଥାନରେ ଗଛ, ଗୁଳ୍ମ, ବୃକ୍ଷ, ଫଳ, ପୁଷ୍ପରେ ଭର୍ତ୍ତି ବୋଲି ସୁରକ୍ଷାକର୍ମୀ ଲୋକଟି କହିଲା । ତା' ଭିତରକୁ ସମସ୍ତଙ୍କୁ ଯିବାକୁ ଅନୁମିତ ମିଳୁନାହିଁ । ସେହିଠାରେ ଗୋଟିଏ ଔଷଧ ପ୍ରସ୍ତୁତ ପାଇଁ ବୃହତ୍ ଟିଣ ଘର ଅଛି । ବହୁତ ଡାକ୍ତର ଏବଂ ଛାତ୍ର ଏହି ଆୟୁର୍ବେଦୀୟ ଔଷଧ ପ୍ରସ୍ତୁତ ପାଇଁ ଅହରହ କାର୍ଯ୍ୟ କରୁଛନ୍ତି । ସାରାଭାରତ ତଥା ପୃଥିବୀର ଅନ୍ୟ ଦେଶମାନଙ୍କୁ ଏହିଠାରୁ ପ୍ରସ୍ତୁତ ଔଷଧ ପଠାଯାଉଛି । ପ୍ରତ୍ୟକ୍ଷ ତତ୍ତ୍ୱାବଧାନ କରିବାକୁ ରାମଦେବ ପାଉଥିବା ସମୟ ଏହିଠାରେ କଟାଇଥା'ନ୍ତି ।

ଆମେ ତିନିଜଣ ସେଠାକୁ ଯାଇପାରିଲୁନି; କିନ୍ତୁ ପତଞ୍ଜଳି ଆଶ୍ରମର ଅନ୍ୟ ସ୍ଥାନମାନ ମନ ଭରି ଦେଖିଲୁ । କିଛିଟା ଆଶ୍ଚର୍ଯ୍ୟ ଲାଗୁଥିଲା । ମନରେ ଆଶ୍ରମ ବୋଲି ଯେଉଁ ଧାରଣା ଥିଲା, କୋଠାଘର ବଦଳରେ ଋଷିମୁନିମାନଙ୍କ ପରି ଝାଟିମାଟି, ଛଣଛପର ଛୋଟ ଛୋଟ ସୁନ୍ଦର ସୁନ୍ଦର କୁଡ଼ିଆଘର ନ ଥିଲା । ପ୍ରତ୍ୟେକ ସ୍ଥାନରେ ବିରାଟ କୋଠାମାନ ସୁନ୍ଦର ଭାବରେ ନିର୍ମିତ ହୋଇଥିଲା । ମନରେ ଥିବା ଆଶ୍ରମର ଧାରଣାକୁ ପ୍ରତିହତ କରୁଥିଲା । ପରନ୍ତୁ ଏହା ଗୋଟିଏ ବଡ଼ ଆୟୁର୍ବେଦୀୟ ଡାକ୍ତରଖାନା ସହ ଯୋଗଶିକ୍ଷାର ଅନୁଷ୍ଠାନ ପରି ମନେ ହେଉଥିଲା । ନିଖୁଣ ସୁନ୍ଦର ପରିବେଶ ସୃଷ୍ଟି ହେଉଥିଲା ମନରେ ।

ପତଞ୍ଜଳି ଆଶ୍ରମର ଯେଉଁ ଅର୍ଥରେ ନାମକରଣ ହୋଇଛି, ସାଧାରଣ ମନୁଷ୍ୟକୁ ସେଇଟା ମହାଆଡ଼ମ୍ବରପୂର୍ଣ୍ଣ ବିରାଟ ଅଟ୍ଟାଳିକା ପ୍ରତୀୟମାନ ହେବ । ପତଞ୍ଜଳି ଆଶ୍ରମର ପରିବେଶ ବେଶ ସୁନ୍ଦର ହୋଇଛି; କିନ୍ତୁ ସାଧାରଣ ଜନତାର ଆଖିରେ ଭାବାନ୍ତର ନିଶ୍ଚୟ ସୃଷ୍ଟି କରିବ । ଡାକ୍ତର ସିନା ମାଗଣା ଦେହ ପରୀକ୍ଷା କରିଦେଲେ, କିନ୍ତୁ ଏହାର ନିର୍ଦ୍ଧାରିତ ଔଷଧ ହିଁ ଏହାର କାଉଣ୍ଟରରୁ ବହୁ ମୂଲ୍ୟରେ କିଣିବାକୁ ପଡ଼ିଥାଏ । ତଥାପି ଲୋକଙ୍କର ରାମଦେବଙ୍କ ଉପରେ ବିଶ୍ୱାସ ଅତୁଟ

ରହିଛି । ସବୁକାର୍ଯ୍ୟ ଏଠି ଶାନ୍ତିଶୃଙ୍ଖଳା ସହ ଶେଷ କରାଯାଉଛି । ମନରେ ଏହି ଭାବନା ନେଇ ଫେରିଲୁ । ଯଦି ଆଶ୍ରମରେ ଥାଆନ୍ତି, ରାମଦେବଙ୍କ ସହ ପ୍ରତ୍ୟକ୍ଷ କଥାବାର୍ତ୍ତା କିମ୍ବା ତାଙ୍କର ଦର୍ଶନ ସହଜରେ ମିଳେନା । ଆମ ତିନି ଜଣଯାକ ବାହାର ପଟ ବୁଲାବୁଲି ସରିଗଲା । ଏଥର ଦିଲ୍ଲୀ ଫେରିଯିବାକୁ ହେବ । ହଂମାଶୁ ସବୁ ଜିନଷପତ୍ର ଗାଡ଼ିରେ ଭର୍ତ୍ତି କରାଇ ସାରିଲେଣି । ଆମ ତିନିଜଣଙ୍କୁ ଅପେକ୍ଷା କରିଥିଲେ ସମସ୍ତେ । ସମସ୍ତେ ଗାଡ଼ିରେ ବସିଲୁ । ଆଗପଟ ଗେଟ୍ ଦେଇ ଗାଡ଼ି ଆଗକୁ ଚାଲିଲା । ମୁଖ୍ୟ ଫାଟକ ଦେଇ ବାହାରକୁ ବାହାରିପଡ଼ିଲୁ । ଆମେମାନେ ପଛକୁ ମୁହଁ ଫେରାଇ ପତଞ୍ଜଳି ଆଶ୍ରମକୁ ଦେଖୁଥିଲୁ । ଗାଡ଼ିର ଗତି ବଢ଼ିଲା । ପତଞ୍ଜଳି ଆଶ୍ରମ ଆଖି ଆଢୁଆଳରେ ରହିଗଲା । ଆମେମାନେ ଏଥର ଆଗକୁ ଚାହିଁଲୁ । ଦିଲ୍ଲୀକୁ ପଡ଼ିଥିବା ଜାତୀୟ ରାଜପଥର ଦୁଇପଟରେ ଥିବା ପ୍ରକୃତିର ବଣ ଜଙ୍ଗଲ ଶୋଭାରାଶିକୁ ଦେଖୁଥିଲୁ ।

କିଛି ଜଳଖିଆ ଖାଇ ନ ଥିଲୁ । ଭୋକ ହେଉଥିଲା ସମସ୍ତଙ୍କୁ । ମମିତା ଆଣିଥିବା କିଛି ପାଉଁରୁଟିକୁ ଜାମ୍ ଲଗାଇ ଖାଇଲୁ । ଅନ୍ୟମାନେ ରଖାଯାଇଥିବା ରୁଟି ତରକାରି ମଧ୍ୟ ଖାଇଲେ । କିଛି ବିସ୍କୁଟ୍, କଦଳୀ ଏବଂ ମିଠା ମଧ୍ୟ ଖାଇଲୁ । ପେଟ ଶାନ୍ତି ପଡ଼ିଲା । ଆମର ଗାଡ଼ି ସେଇ ଅଙ୍କାବଙ୍କା ପାହାଡ଼ିଆ ରାସ୍ତାରୁ କ୍ରମଶଃ ସମତଳ ରାସ୍ତାଦେଇ ଆସିଲା । ଦୁଇଶହ କି.ମି. ଯିବାକୁ ହେବ । ପ୍ରାୟ ଚାରିଘଣ୍ଟା ଲାଗିବ । ଘଣ୍ଟାକୁ ଚାହିଁଲୁ ଏଗାରଟା ବାଜିଛି । ଆଗରେ ଏକାଥରକେ ମଧ୍ୟାହ୍ନ ଭୋଜନ ସେହି ପରିଚିତ ହୋଟେଲରେ ଖାଇନେବାର ନିଷ୍ପତ୍ତି ନିଆଗଲା । ଖରା ବେଳକୁ ବେଳ ପ୍ରବଳ ହେବାକୁ ଲାଗିଲା । ମେ' ମାସର ଖରା । ପ୍ରାୟ ଚାଳିଶି ଡିଗ୍ରୀ ସେଲ୍‌ସିଅସ୍ ହେବ । ଆମ ଗାଡ଼ିର ଶୀତତାପର ବ୍ୟବସ୍ଥା ଥିଲା । ହରିଦ୍ୱାରଠାରୁ ପ୍ରତ୍ୟାବର୍ତ୍ତନ ସମୟରେ ମନଭରି ଦୁଇପଟର ପାହାଡ଼, ପର୍ବତ, ଗାଁ, ସହରମାନଙ୍କୁ ଦେଖି ନେଉଥିଲୁ । ପୁଣି କେବେ ଆସିବାକୁ ହେବ, ତାହା ଭଗବାନ ଜାଣନ୍ତି । ଦିନ ୨.୩୦ ମିନିଟ୍ ବେଳକୁ ସେହି ପରିଚିତ ହୋଟେଲ୍‌କୁ ଆସି ପହଞ୍ଚିଲୁ । ଭୀଷଣ ଖରା ହେଉଥିଲା । ଗୋଡ଼ ହାତ ଧୂଆଧୋଇ କରି ସମସ୍ତେ କୁପନ ଆଣିଲୁ । ଏଥର ସାଧା ବିରିଆନି ଏବଂ ପିଲାଙ୍କମାନଙ୍କ ପାଇଁ ଚିକେନ୍ ଦୁଇ

ପ୍ଲେଟ୍ ଏବଂ ସାଧା ତରକାରି ସହିତ ଛେନା ତରକାରି ମଧ୍ୟ ଆଣିଥିଲୁ । ସେହି ଢାବାରେ ଅସମ୍ଭବ ଭିଡ଼ । ତେଣୁ ବହୁକଷ୍ଟରେ ବସିବା ପାଇଁ ଜାଗା ଠିକ୍ କରିନେଲୁ । ଖାଇସାରି ଉଠିଲାବେଳକୁ ପ୍ରାୟ ଗୋଟିଏ ଘଣ୍ଟା ବିତିଗଲା । ତା'ପରେ ଖୁବ୍ ଶୀଘ୍ର ଗାଡ଼ିରେ ବସି ଦିଲ୍ଲୀ ଅଭିମୁଖେ ବାହାରିପଡ଼ିଲୁ ।

ପତଞ୍ଜଳି ଆଶ୍ରମରୁ ଆସିଲା ପରେ ପ୍ରଥମେ ବାଟରେ ଆଇ.ଆଇ.ଟି. ଇଞ୍ଜିନିୟରିଂ କଲେଜ ପଡ଼ିଲା । ଏହାର ପ୍ରବେଶ ପଥକୁ ମାତ୍ର ଚାହିଁ ରହିଥିଲୁ । ଏଠି ଅଞ୍ଜୁର ପୁଅ ବବୁଲୁ ଇଞ୍ଜିନିୟରିଂରେ ଦ୍ୱିତୀୟ ବର୍ଷ ହେଲାଣି । ସେ ଇଲେକ୍ଟ୍ରୋନିକ୍ ଇଞ୍ଜିନିୟରିଂ ପାଠ ପଢୁଛି ।

ମୁଁ ପପୁଲୁ ଏବଂ ବବୁଲୁଙ୍କୁ କହିଲି, "ମନଦେଇ ପାଠ ପଢ଼ିଲେ ଏହି କଲେଜରେ ଆସି ପାଠ ପଢ଼ିବ ।" ଦୁହେଁ ସମ୍ମତିସୂଚକ ମୁଣ୍ଡ ହଲାଇଲେ ।

ଆମେ ପ୍ରାୟ ଦିନ ଚାରିଟାବେଳକୁ ନଇଡ଼ା ପାଖରେ ପହଞ୍ଚିଗଲୁ । ସହର ଗହଳି ଏବଂ ଜନଗହଳିରେ ଟ୍ରାଫିକ୍ ବ୍ୟବସ୍ଥା ଆଶାନୁରୂପକ ନ ଥିଲା । ଟ୍ରାଫିକ୍ ବ୍ୟବସ୍ଥା ବହୁତ ନିମ୍ନଧରଣର ଏବଂ ରାସ୍ତାର ଖାଲ-ଡିପ ସହିତ ପ୍ରାୟ ସମାନ ଥିଲା । ଉତ୍ତରାଖଣ୍ଡ ଅପେକ୍ଷା ଉତ୍ତରପ୍ରଦେଶ ଶାସନ ବ୍ୟବସ୍ଥା କମ୍ ଥିଲା ବୋଲି ମନେହେଲା ।

ଆମର ଗାଡ଼ି ଦିଲ୍ଲୀର ପ୍ରବେଶ ପଥରେ ପହଞ୍ଚିଲା । ଯମୁନା ନଦୀ ପୋଲ ଡେଇଁ ଆସିଲୁ ସୁବିଧାରେ । ଦିଲ୍ଲୀର ଷ୍ଟେସନ୍ ଦିଶୁଥିଲା ପାଖରୁ । ଏହାପରେ ଫ୍ଲାଇଓଭର ଦେଇ ଆମର ଗାଡ଼ି ଚାଲିଲା 'ଅକ୍ଷୟଧାମ' ଦିଗରେ । ମାତ୍ର ପାଞ୍ଚ କି.ମି. ବାଟ ଅଧିକା ଯିବାକୁ ପଡ଼ିଲା । ଆମେ ଯାଇ "ଅକ୍ଷୟଧାମ"ର ପ୍ରବେଶ ଦ୍ୱାର ପାଖରେ ଅଟକିଲୁ । ଆମ ଗାଡ଼ି ଆଗରେ ପ୍ରାୟ ଦଶଗୋଟି କାର୍, ଟ୍ୟାକ୍ସି ଥିଲା । ଡ୍ରାଇଭରକୁ ଛାଡ଼ି ଅନ୍ୟମାନେ ଓହ୍ଲାଇ ପଡ଼ିଲେ । ଭିତରକୁ ଯିବାକୁ ଟିକେଟ୍ କିଣିଲୁ । ଗାଡ଼ି ଭିତର ତନ୍ନତନ୍ନ କରି ସୁରକ୍ଷାକର୍ମୀମାନେ ଚେକ୍ କରୁଥିଲେ । ସନ୍ତ୍ରାସବାଦ, ଅଖ୍ୟାତ ଏବଂ ତାଲିବାନର ଆକ୍ରମଣର ଆଶଙ୍କା ସଦାବେଳେ ରହିଛି । ତେଣୁ ବୋମା ବା ଅସ୍ତ୍ରଶସ୍ତ୍ର ଏବଂ କୌଣସି ଛୁରୀ, ଖଣ୍ଡା, ରିଭରଭର୍ ଇତ୍ୟାଦି

ମାରଣାସ୍ତ୍ରର ତନଖି ନିଆଯାଉଥିଲା । ଆମେମାନେ ପ୍ରାୟ ଶହେଫୁଟ ଚାଲି ଚାଲି ମେନ୍ ଗେଟ୍‌ରେ ସୁରକ୍ଷାକର୍ମୀଙ୍କ ଦ୍ୱାରା ଚେକ୍ ହୋଇସାରିଲାପରେ ଭିତରକୁ ପଶିଲୁ । ଗାଡ଼ି ନେଇ ଡ୍ରାଇଭର ସେହି ଭିତରେ ନିର୍ଦ୍ଦିଷ୍ଟ ପାର୍କିଂ ସ୍ଥାନରେ ଗାଡ଼ି ରହିଲା ।

ଏଠି ମଧ୍ୟ ଗୋଟିଏ ସ୍ଥାନରେ ଦ୍ୱିତୀୟ ଥର ଚେକ୍‌ର ସମ୍ମୁଖୀନ ହେଲୁ । ଏଠି ନିର୍ଦ୍ଧାରିତ କେତେକ ଜିନିଷ ଭିତରକୁ ନେବାକୁ ଅନୁମତି ମିଳେ । ପୁରୁଷ ଲୋକମାନେ ଗୋଟିଏ ଧାଡ଼ିରେ ଏବଂ ସ୍ତ୍ରୀ ଲୋକମାନେ ଅଲଗା ଧାଡ଼ିରେ ଯିବାକୁ କୁହାଗଲା । ଆମେମାନେ ପପୁଲୁ ବବୁଲୁ, ହିଂମାଶୁ ଏବଂ ମୁଁ ପୁରୁଷ ଧାଡ଼ିରେ ଗଲାବେଳେ, ମମିତା ଏବ ଶୈଳବାଳା ଅନ୍ୟ ଏକ ଧାଡ଼ିରେ ବହୁତ ଆଗେଇ ଯାଉଥିଲେ । ଶେଷ ଚେକ୍ ଥିଲା । ଅଣ୍ଟାରୁ ବେଲ୍‌ଟ କାଢ଼ି ଗୋଟିଏ ଚାଙ୍ଗୁଡ଼ିରେ ରଖିଲୁ । ବେଲ୍‌ଟ ପାଖରେ ଥିବା ଅନ୍ୟ କିନିଷମାନ ରଖାହେଲା । ଗୋଟିଏ ମେଟାଲିକ୍ ଯନ୍ତ୍ର ଉପର ଦେଇ ଆମେମାନେ ଆଗେଇଗଲୁ । ସୁରକ୍ଷାକର୍ମୀ ତଥାପି ପ୍ୟାଣ୍ଟ ସାର୍ଟରେ ହାତ ମାରି ତା'ର ସନ୍ଦେହ ଦୂର କରିଥିଲା ।

ଅପରପାର୍ଶ୍ୱରେ ପହଞ୍ଚି ଆମର ବେଲଟ୍ ଏବଂ ଅନ୍ୟାନ୍ୟ ସରଞ୍ଜାମ ନେଇଗଲୁ । ସ୍ତ୍ରୀଲୋକମାନେ ଭ୍ୟାନିଟି ବ୍ୟାଗ୍ ତଥା ରୁମାଲ୍ ସଂଗ୍ରହ କରି ନେଇଥିଲେ । ଆମେମାନେ ଗୋଟିଏ ସ୍ଥାନରେ ଏକତ୍ର ହେଲୁ । କାରଣ ଭୀଷଣ ଗହଳିରେ ହଜିଯିବାର କିଛିଟା ଆଶଙ୍କା ରହିଛି । ଆମେମାନେ ଭିତରକୁ ପହଞ୍ଚିଲା ବେଳକୁ ମାତ୍ର ୫.୩୦ ମିନିଟ୍ । ଭୀଷଣ ଗ୍ରୀଷ୍ମ ତାପ, ଅସହ୍ୟ ଗରମ । ଖାଲି ଗୋଡ଼ ତାତି ଯାଉଥାଏ । କାରଣ ଜୋତାଷ୍ଟାଣ୍ଡରେ ଚପଲ ଜୋତା ବେଲ୍‌ଟ୍ ରଖିଆସିଥିଲୁ ।

ଏହି ଅକ୍ଷୟ ଧାମଟି ହେଉଛି-- ଜଣେ ସାଧୁସନ୍ଥଙ୍କର ସ୍ଥାପିତ ମୂର୍ତ୍ତିକୁ ଭକ୍ତି ସହକାରେ ସମସ୍ତେ ପୂଜା କରନ୍ତି । ବିଷ୍ଣୁଙ୍କର ଅବତାର ବୋଲି ଏହାଙ୍କୁ ଗ୍ରହଣ କରାଯାଏ । ସାଧୁ ଏଗାର ବର୍ଷରେ ନିଜର ପିତାମାତାଙ୍କୁ ହରାଇଥିଲେ । ସାତବର୍ଷରେ ଅଖଣ୍ଡ ବିଦ୍ୟା ଓ ସମସ୍ତ ବେଦର ଅଧିକାରୀ ଥିଲେ । ପିତାମାତାଙ୍କର ଦେହାନ୍ତ ପରେ ସନ୍ନ୍ୟାସୀ ବ୍ରତ ଆଚରଣ କରିଥିଲେ । ଏହି ସମୟରେ ତାଙ୍କର ସାତଶହ

ଭକ୍ତ ଥିଲେ । ସମସ୍ତେ ପ୍ରାୟ୍ ବୟସ୍କ ଥିଲେ । ଏହାପରେ ସାରା ଭାରତରେ ସେ ହିନ୍ଦୁଧର୍ମର ସତ୍ୟ, ମୈତ୍ରୀ ଏବଂ ସଦ୍ଭାବସ୍ଥାନର ଆଦର୍ଶ ପ୍ରଚାର କରିବାକୁ ଲାଗିଲେ । ତାଙ୍କର ଶାନ୍ତଶିଷ୍ଟ ଏବଂ ସୌମ୍ୟ ଚେହେରା ସହ ପାଣ୍ଡିତ୍ୟ ସମସ୍ତଙ୍କୁ ଆକର୍ଷିତ କରିଥିଲା । ହଜାର ହଜାର ଭକ୍ତ ତାଙ୍କ ସହିତ ବୁଲୁଥିଲେ । ସମସ୍ତେ ଏହି ଅକ୍ଷୟ୍ ଧର୍ମ (ହିନ୍ଦୁଧର୍ମ)କୁ ସୁନ୍ଦର ଭାବେ ପ୍ରଚାର କରୁଥିଲେ ।

ମୁଖ୍ୟ ମନ୍ଦିରଟିରେ ଅଧିକ ସୁରକ୍ଷା ବ୍ୟବସ୍ଥା ଥିଲା । କାରଣ ଦେଉଳର ଉପର ଦଧିବାବନ ଅଂଶରେ ସୁନାର ଲେପ ଦିଆଯାଇଛି । ସୁନାର ଗରାମାନ ପତାକା ତଳେ ରଖାଯାଇଛି । ଦେଉଳ ମଧ୍ୟରେ ମଝିରେ ସ୍ୱୟଂ ଅକ୍ଷୟ୍ ମୂର୍ତ୍ତି ଏବଂ ଦୁଇ ପଟରେ ଚାରିଜଣ ବିଶ୍ୱସ୍ତ ଭକ୍ତ ଦଣ୍ଡାୟମାନ ହୋଇଛନ୍ତି । ସବୁଗୁଡ଼ିକ ମୂର୍ତ୍ତି ସୁନାରେ ନିର୍ମିତ । ପାଖକୁ ଯାଇ ସ୍ପର୍ଶ କରି ହେବନି । ଦଶଫୁଟ୍ ଦୂରରୁ ସମସ୍ତ ମୂର୍ତ୍ତିଙ୍କୁ ଭଲଭାବରେ ଦେଖିହେବ । ମଝି ସ୍ଥାନରେ ଏହି ମୂର୍ତ୍ତିଗୁଡ଼ିକ ସ୍ଥାପିତ ହୋଇଛନ୍ତି । ଏହାର ମନ୍ଦିରର ଭିତରର ପ୍ରତ୍ୟେକ ପାର୍ଶ୍ୱରେ ରାଧାକୃଷ୍ଣ, ରାମ, ଲକ୍ଷ୍ମଣ, ସୀତା, ଗଣେଶ ଏବଂ ମହାଦେବଙ୍କର ଲିଙ୍ଗ ପ୍ରତିଷ୍ଠା କରାଯାଇଛି । ମନ୍ଦିରର କାନ୍ଥମାନଙ୍କରେ ଶ୍ରୀଅକ୍ଷୟ୍ ମୂର୍ତ୍ତିଙ୍କର ବାଲ୍ୟଜୀବନ ଠାରୁ ଶେଷପର୍ଯ୍ୟନ୍ତ ବିଭିନ୍ନ କାର୍ଯ୍ୟାବଳୀ ଅଙ୍କିତ ଚିତ୍ରରେ ପରିଷ୍କାର ଭାବରେ ଚିତ୍ରଣ କରାଯାଇଛି ।

ଏହା ଭିତରେ ବୁଲି ଦର୍ଶନ କରିବାକୁ ଆମକୁ ପ୍ରାୟ୍ ଦୁଇଘଣ୍ଟା ଲାଗିଲା । ଯାହାର ଦାନ କରିବା କଥା, ଯଥାସ୍ଥାନମାନଙ୍କରେ ହୁଣ୍ଡି ସ୍ଥାପନ କରାଯାଇଛି । ଭକ୍ତମାନେ ନିଜ ଶକ୍ତି ଅନୁସାରେ ଦାନ କରୁଛନ୍ତି । ଏହି ମନ୍ଦିରରେ ମୂର୍ତ୍ତିମାନଙ୍କ ଆଗରେ କିଛି ପୂଜା କରିବା, ଦୀପଦାନ କରିବା ଫୁଲ ଚଢ଼ାଇବା ଦେଖାଗଲା ନାହିଁ । କେବଳ ମାତ୍ର ଦର୍ଶନ କରି ଚାରିପଟେ ବୁଲି ବାହାରକୁ ଆସିବ ।

ମୁଖ୍ୟ ମନ୍ଦିର ସହିତ ଆହୁରି ଅନେକ ମନ୍ଦିର ଦୁର୍ଗ ସଦୃଶ ସୀମାର କାନ୍ଥ ଉପରେ ନିର୍ମିତ ହୋଇଛି । ଏଠାରେ କୌଣସି ଦିଅଁ ନାହାନ୍ତି । ଖରାର ତାପ ସେପରି ଥିଲା । ଆମେମାନେ ମୁଖ୍ୟ ମନ୍ଦିର ବାହାରକୁ ଆସି ବାହାରେ ବୁଲିବାକୁ ଗଲୁ । ଏଠାରେ ଗୋଟିଏ ସୁନ୍ଦର ପୁଷ୍କରିଣୀ ଅଛି । ଏହି ପୁଷ୍କରିଣୀରେ ନୌକାବିହାର

ହୋଇଥାଏ। ତା' ପାଖରେ ଖାଇବା ପାଇଁ କିଛି ହୋଟେଲ୍ ଜଳଖିଆ ଓ ମିଲ୍ ଖାଇବା ପାଇଁ ପ୍ରତିଷ୍ଠା ହୋଇଛି। ସନ୍ଧ୍ୟାକାଳ, ସବୁଆଡ଼େ ସୁନ୍ଦର ଭାବରେ ବିଦ୍ୟୁତର ସଂଯୋଗ ହୋଇଛି। ସବୁଆଡ଼ ଉଜ୍ଜ୍ୱଳରେ ପୂରି ଯାଉଛି। ସେଠି ମଧ୍ୟ ଶୌଚାଗାରର ବ୍ୟବସ୍ଥା ଅଛି। ସବୁସ୍ଥାନ ପରିଷ୍କାର ପରିଚ୍ଛନ୍ନ ରଖାଯାଇଛି। ଏହି 'ଅକ୍ଷୟ୍ ଧାମ'ଟି ପ୍ରାୟ୍ ପଚାଶ ଏକର ଜମି ଉପରେ ପ୍ରତିଷ୍ଠିତ ହୋଇଛି। ଏହି ଧାମରୁ ସନାତନ (ହିନ୍ଦୁ) ଧର୍ମର ପ୍ରଚାର କରାଯାଉଛି। ଦେଶବିଦେଶରୁ ହଜାର ହଜାର ସଂଖ୍ୟାରେ ଲୋକ ପ୍ରତିଦିନ ଏହି 'ଅକ୍ଷୟ୍ ଧାମ' ପରିଦର୍ଶନ କରି ମନରେ ଅଶେଷ ଧର୍ମ ଭାବ ସହିତ ଅମ୍ଳାନ ଜ୍ଞାନ ପରିବର୍ଦ୍ଧନ କରୁଛନ୍ତି। ଏଠାରୁ ଜ୍ଞାନକୌଶଳ, ପାଣ୍ଡିତ୍ୟ ଇତ୍ୟାଦି ଶିଖିହେବ। ଏହି ମନ୍ଦିରର ନିର୍ମାଣରେ ପଥରର କାରୁକାର୍ଯ୍ୟ ପରିଲକ୍ଷିତ ହୁଏ।

ଆମେ ପ୍ରାୟ୍ ରାତି ଆଠଟା ବେଳକୁ ଅକ୍ଷୟ୍‌ଧାମ ଛାଡ଼ି ଗାଡ଼ିରେ ବସିବା ପୂର୍ବରୁ କିଛି ଫଟୋ ଅନୁମତିପ୍ରାପ୍ତ ସ୍ଥାନରେ ନେଇଥିଲୁ।

ଫେରିଆସିଲୁ କୁନୁର ବସାକୁ। ରାତ୍ରି ପ୍ରାୟ୍ ଦଶଟା ହୋଇଥିଲା। ମନ ସମସ୍ତଙ୍କର ଖୁସିରେ ପୂରି ଉଠିଥିଲା। ପପୁଲୁର ଦେହ ପରୀକ୍ଷା ସହିତ ହରିଦ୍ୱାର, ପତଞ୍ଜଳି ଆଶ୍ରମ ଏବଂ ପରିଶେଷରେ 'ଅକ୍ଷୟ୍ ଧାମ' ଦର୍ଶନ ଆମକୁ ଆନନ୍ଦ ଦେଇଥିଲା।

ଆସନ୍ତାକାଲି ରାତିରେ ଭୁବନେଶ୍ୱର ଫେରିଯିବୁ ନୀଳାଚଳ ଏକ୍ସପ୍ରେସ୍‌ରେ। ରାତ୍ରିଭୋଜନ ପରେ କ୍ଳାନ୍ତ ଶରୀରକୁ ନିଦ୍ରାଦେବୀଙ୍କ କୋଳରେ ଦେଇଥିଲୁ।

ସକାଳୁ ଉଠିଲୁ ସମସ୍ତେ। ଏହି କେତେଦିନର କ୍ଳାନ୍ତି ମେଣ୍ଟାଇବାକୁ ମନେ ମନେ ସ୍ଥିର କରିଥିଲୁ। ତେଣୁ ଧୀରେସୁସ୍ଥେ ନିତ୍ୟକ୍ରମ ଶେଷ କଲୁ। ଦିନ ଦଶଟା ବେଳକୁ ଜଳଖିଆ ପ୍ରସ୍ତୁତ ହୋଇଥିଲା। ଇଡ୍‌ଲି, ପୁରି ଏବଂ ତରକାରି। ସମସ୍ତେ ଏକାଠି ବସି ଖାଇନେଲୁ। କୁନୁ ତାଙ୍କର ଅଫିସକୁ ଚାଲିଗଲେ କାର୍ ଧରି। ଆମେ ଚାରିଜଣ ହିଂମାଂଶୁ, ପପୁଲୁ, ବବୁଲୁ ଆଉ ମୁଁ ପଦବ୍ରଜରେ ପ୍ରାୟ୍ ଏକ କି.ମି. ବାଟ ଗଲୁ। କୌଣସି ଟ୍ୟାକ୍ସି କିମ୍ବା ଅଟୋ ପାଇଲୁ ନାହିଁ। ମେନ୍ ଗେଟ୍‌ରୁ ପ୍ରାୟ୍ କିଛି

ଦୂରରେ ଗୋଟିଏ ରିକ୍ସାବାଲା ବସିଥିବାର ଦେଖିଲୁ । ହିଂମାଂଶୁ ତା' ସହିତ କ'ଣ କଥାବାର୍ତ୍ତା କରି ନିକଟସ୍ଥ ମାର୍କେଟରୁ ଯିବା ଆସିବା ୬୦ ଟଙ୍କାରେ ଠିକ୍ କଲେ । ଖରା ଭୀଷଣ ହେଉଥିଲା । ଏହି ଦ୍ୱାରକାପୁରୀରେ ଜନବସତି କମ୍ ଥିଲା । ତେଣୁ ବେଶୀ କାର୍, ଟ୍ୟାକ୍ସି କିମ୍ବା ଅଟୋର ଚଳାଚଳ ଦେଖିବାକୁ କମ୍ ଥିଲା । ଏହି ଅଞ୍ଚଳଟି ମୁଖ୍ୟ ଦିଲ୍ଲୀର ବ୍ୟବସାୟୀ ସେଣ୍ଟରଠାରୁ ପ୍ରାୟ ୩୦ କି.ମି. ରୁ ବେଶୀ । ଏହି ସ୍ଥାନରୁ ଇନ୍ଦିରାଗାନ୍ଧୀ ଇଣ୍ଟରନ୍ୟାସନାଲ୍ ଏରୋଡ୍ରମ୍ ପ୍ରାୟ ପନ୍ଦର କି.ମି. । ଆଉ ସବୁ ଦୂର ଜାଗା । ପରିବାପତ୍ର ଏବଂ ଦୈନନ୍ଦିନ ଖାଉଟି ପଦାର୍ଥ ପାଖରେ ମିଳେନା । ତେଣୁ ପ୍ରାୟ ଦୁଇ କି.ମି. ସ୍ଥାନରେ ଗୋଟିଏ ସ୍ଥାନୀୟ ବଜାରର କୋଠା ନିର୍ମାଣ କରାଯାଇ ଗୁଡ଼ିଏ ଦୋକାନ ଅଛି । ଏଠାରେ ପୋଷାକପତ୍ର, ଜୋତା, ବହି ଦୋକାନ, ତେଜରାତି ଏବଂ ପରିବା ସହିତ ଫଳମୂଳ ଦୋକାନ ଅଛି । ଆମେମାନେ ରିକ୍ସାରେ ସେଠାକୁ ଗଲୁ । ରିକ୍ସା ତିଆରି ବିଚିତ୍ର ପ୍ରକାର । ଆଗରେ ଦୁଇଜଣ ବସିବେ ଏବଂ ପଛପଟକୁ ଟାଣି ସିଟ୍ ବାହାର କଲେ ଆଉ ଦୁଇଜଣ ବସିବେ ।

ଆଗରେ ମୁଁ ଆଉ ହିଂମାଶୁ ବସିଲୁ । ପଛରେ ନାତି ଦୁହେଁ ଆନନ୍ଦରେ ରାସ୍ତାର ପଛପଟକୁ ମୁହଁ କରି ବସିଲେ । ଉପରେ କିଛି ଛାତ ନାହିଁ । ଭୀଷଣ ଖରା ଆମ ଦେହ ମୁଣ୍ଡରେ ଭର୍ତ୍ତି ହୋଇଗଲା ପରି ଲାଗୁଥିଲା । ଏତେବଡ଼ ଖରା ହେଲେ ମଧ୍ୟ ଦେହରେ ଝାଳ ନ ଥିଲା । ଦିଲ୍ଲୀରେ ଆର୍ଦ୍ରତା ନାହିଁ କହିଲେ ଚଳେ ।

ସେହି ଛୋଟ ବଜାରରେ ପହଞ୍ଚିଲୁ । କିଛି ଜିନିଷମାନ କିଣିଲୁ । ପପୁଲୁର ଜୋତା କିଣାହେଲା । ସମସ୍ତଙ୍କର ପାଇଁ ବରାଦ ମୁତାବକ ଜାମା, ପ୍ୟାଣ୍ଟ୍ କିଣାହେଲା । ଭାରି ଶୋଷ କରୁଥିଲା । ସେଠି ଫଳରସ ପିଇଲୁ । ସେତେବେଳକୁ ପ୍ରାୟ ବାରଟା ବାଜି ଯାଇଥିଲା । ଘରକୁ ଫେରିଆସିଲୁ । ଖାଇବାକୁ ହୋଇଯାଇଥିଲା । ମଧ୍ୟାହ୍ନ ଭୋଜନ ପରେ କିଛି ସମୟ ଶୋଇପଡ଼ିଲୁ ।

## ଭୁବନେଶ୍ୱର ପ୍ରତ୍ୟାବର୍ତ୍ତନ--

ଏଥର ଭୁବନେଶ୍ୱର ରାତ୍ରି ଟ୍ରେନ୍‌ରେ ଫେରିଯିବା ପାଇଁ ସମସ୍ତ ଯୋଗାଡ଼ କରିନେଲୁ । କ୍ରମଶଃ ସନ୍ଧ୍ୟା ହୋଇଗଲା । କୁନୁ ଅଫିସରୁ ଫେରିଆସିଲା ।

ଆମେମାନେ ତା' ସହିତ ଶୀଘ୍ର ରାତ୍ରିଭୋଜନ ଶେଷକଲୁ । ପୂର୍ବ ନିର୍ଦ୍ଧାରିତ ସେହି ଟ୍ୟାକ୍ସିରେ ପ୍ରାୟ ଆଠଟା ବେଳକୁ ଜିନିଷ ଲଦିଲୁ । କୁନୁ ଏବଂ ଟିକି ଦୁଇଜଣ ଆମକୁ ଲୋତକଭରା ନୟନରେ ବିଦାୟ ଦେଲେ । ଟିକି କହୁଥିଲା, "ମଉସା ଆଉ ଥରେ ନିଶ୍ଚୟ ଆସିଲେ ସାଥୀହୋଇ ଅମରନାଥ ଯିବା ।" ହଁ କଲି । ସବୁ ସେହି ଭଗବାନଙ୍କର ନିର୍ଦ୍ଦେଶରେ ପାଳିତ ହେବ । ଷ୍ଟେସନ୍‌ରେ ପହଞ୍ଚିଲୁ ନଅଟା ବେଳକୁ । କୁଲି ଏବଂ ଆମେମାନେ କିଛି ଜିନିଷ ବୋହିନେଇ ନିର୍ଦ୍ଧାରିତ ୨୨ ନମ୍ବର ପ୍ଲାଟ୍‌ଫର୍ମକୁ ଆସିଲୁ । ଜିନିଷତକ ସେଠାରେ ରଖି କୁଲିଟି ପଇସା ମାଗିଲା ଯିବାପାଇଁ । କୁଲିକି କହିଲୁ-- ତୁମ ସହିତ ଚୁକ୍ତି ହୋଇଥିଲା ଟ୍ରେନ୍‌ରେ ବସାଇଦେଲା ପରେ ପଇସା ନେବ । ସେହି ଟ୍ୟାକ୍ସି ଡ୍ରାଇଭରଟି କୁଲି ବୁଝି କହିଥିଲା ଟ୍ରେନ୍‌ରେ ବସାଇଲା ପରେ ମଜୁରୀ ଶହେଟଙ୍କା ଦେବେ; କିନ୍ତୁ ଟ୍ୟାକ୍ସି ଡ୍ରାଇଭରର ଅନୁପସ୍ଥିତିର ଫାଇଦା ନେଲା ଏହି କୁଲିଟି । ଉଚ୍ଚସ୍ୱରରେ ପାଟିକରି ଶହେ ଟଙ୍କା ମାଗିଲା । ଉପସ୍ଥିତ ଲୋକମାନେ କ୍ରମଶଃ ଜମା ହେବାକୁ ଲାଗିଲେ । ବାଧ୍ୟ ହୋଇ ହିଂମାଂଶୁ ତାକୁ ୮୦ ଟଙ୍କା ଦେଲେ ଏହି ଗହଳି ପରିସ୍ଥିତିରୁ ଆମମାନଙ୍କୁ ମୁକୁଳେଇବାପାଇଁ । ଦିଲ୍ଲୀ ଷ୍ଟେସନ୍‌ରେ ଗୁଣ୍ଡାଏ ନକଲି ଏବଂ ବଦମାସ୍ କୁଲି ଅଛନ୍ତି ବୋଲି ଜନୈକ ଯାତ୍ରୀ ମନ୍ତବ୍ୟ କରିଥିଲେ ।

ଅସୁବିଧା ହେଲା, ଆମ ସମସ୍ତଙ୍କର ବ୍ୟାଗ୍, ସୁଟ୍‌କେଶ୍ ଇତ୍ୟାଦି ଷ୍ଟେସନ୍‌ର ମଝି ସ୍ଥାନରେ ରହିଲା । ଆମେ ତୃତୀୟ ଶ୍ରେଣୀ ଏ.ସି.ରେ ଟିକେଟ୍ କରିଥିଲୁ । ବି-୧ କେଉଁ ସ୍ଥାନରେ ରହିବ କେହି ସଠିକ୍ କହିପାରିଲେନି । ତେଣୁ ଗାଡ଼ି ପ୍ଲାଟ୍‌ଫର୍ମରେ ପହଞ୍ଚିଲେ ଜିନିଷ ନେବାର ସ୍ଥିର ହେଲା ।

ଏହି ଷ୍ଟେସନ୍‌ରୁ ରକ୍ଷା ପାଇବାପାଇଁ ଷ୍ଟେସନ୍‌ରୁ ଭଲ କଫି କିଣି ପିଇଲୁ । ସମୟ ଧୀରେ ଧୀରେ କଟିବାକୁ ଲାଗିଲା । ହଠାତ୍ ଦେଖିଲୁ ବିନା ସତର୍କ ଘଣ୍ଟି ବଜାଇ ଆମର ଟ୍ରେନ୍ ନୀଳାଚଳ ଏକ୍ସପ୍ରେସ୍ ପ୍ଲାଟ୍‌ଫର୍ମ ଉପରେ ଧୀରେ ଧୀରେ ଆଗକୁ ଆଗକୁ ଚାଲିଲା । ଯାତ୍ରୀମାନେ ଧାଁ-ଧପଡ଼ ହେଲେ ନିଜ ନିଜର ବଗିରେ ବସିବାପାଇଁ । ଏହି ପ୍ଲାଟ୍‌ଫର୍ମରେ ପ୍ରାୟ ଦଶମିନିଟ୍ ରହିବ ବୋଲି ଜଣକଠାରୁ ବୁଝିନେଲୁ । ଟ୍ରେନ୍ ସ୍ଥିର ହୋଇ ଠିଆହେଲା । ଆମର ନିର୍ଦ୍ଦିଷ୍ଟ ବଗିଟି ଆମର ଜିନିଷପତ୍ର ସ୍ଥାନର ପ୍ରାୟ ୫୦୦ ଫୁଟ ଦୂରରେ ପଛକୁ ଠିଆହେଲା । ପ୍ରାୟ ଚାରୋଟି

ବଗି ଆମକୁ ଡେଇଁକରି ଯିବାକୁ ହେବ। ନାତି ଦୁଇଜଣ ଦୁଇଟି ଠେଲା ବ୍ୟାଗ୍ ଏବଂ ଆମେମାନେ ସମସ୍ତେ ଓହଳାଇବା ବ୍ୟାଗ୍ ଧରି ଜୋରରେ ବଗି ପରେ ବଗି ଅତିକ୍ରମ କରୁଥିଲୁ। ବେଳେବେଳେ ଅନ୍ୟମନସ୍କ ଯାତ୍ରୀ ଆସି ଆମ ଦେହରେ ଧକ୍କା ଦେଉଥା'ନ୍ତି। ଏହି ଭିଡ଼ ଭିତରେ ନାତି ଦୁହେଁ ଆଗକୁ ଚାଲିଥା'ନ୍ତି ବୀରଦର୍ପରେ। ତାଙ୍କ ପଛେ ପଛେ ହିଂମାଶୁ ଏବଂ ମମି ଏବଂ ସଭା ପଛରେ ମୋର ସ୍ତ୍ରୀ ଏକ ବଡ଼ ବ୍ୟାଗ୍ ଧରି ଧଇଁସଇଁ ହୋଇ ଚାଲିଥା'ନ୍ତି। ପ୍ରେରଣା ଆଉ ସାହସ ଭରିଥିଲା ସମସ୍ତଙ୍କର ଶରୀର ଏବଂ ମନରେ। ପ୍ରାୟ ଆମକୁ ଆଠମିନିଟ୍ ଲାଗିଥିଲା ସେହି ଶୀତତାପ ନିୟନ୍ତ୍ରିତ ବଗି ଧରିବାକୁ। ସମସ୍ତେ ଜିନିଷପତ୍ର ଧରି ଭିତରକୁ ପଶିଗଲୁ। ଯାହାହେଉ, ଆଶ୍ୱସ୍ତ ହେଲୁ। ହିଂମାଶୁ ସମସ୍ତ ପ୍ରକାର ଯୋଗାଡ଼ କରି ଜିନିଷପତ୍ରକୁ ସିଟ୍‌ର ତଳେ ଏବଂ ସଭା ଉପର ସିଟ୍‌ରେ ରଖିଦେଲେ। ପିଲାମାନେ ସିଟ୍ ଦେଖି ବସିଲେ। ଆମେମାନେ ଜିନିଷକୁ ଶେଷଥର ପାଇଁ ଗଣିନେଲୁ ଠିକ୍ ଅଛି। ଶିକୁଳି ଏବଂ ଲକ୍ ଦେଇ ସବୁ ସୁରକ୍ଷିତ କରାଗଲା। ବାହାରର ଗରମ କ୍ରମଶଃ ଶୀତଳ ହେବାକୁ ଲାଗିଲା ଦେହମୁଣ୍ଡ।

ଟ୍ରେନ୍ ଆସ୍ତେ ଆସ୍ତେ ଛାଡ଼ିଲା ଦିଲ୍ଲୀ ଷ୍ଟେସନ୍। ସେତେବେଳକୁ ବାଜିଥିଲା ରାତି ୧୦.୩୦ମିନିଟ୍। ଦିଲ୍ଲୀ ଷ୍ଟେସନ୍ ସହିତ ଦିଲ୍ଲୀ ସହରକୁ ମୋର ନମସ୍କାର ଜଣାଇଲି। ରାସ୍ତାଘାଟର ଆଲୁଅ କ୍ରମଶଃ କ୍ଷୀଣ ଦେଖାଯାଉଥିଲା। ଟ୍ରେନ୍‌ର ଗତି ବଢୁଥିଲା। ଆଗରୁ ନୈଶ୍ୟ ଭୋଜନ ସାରି ଦେଇଥିଲୁ। ଏଥର ଶୋଇବା ପାଇଁ ହିଂମାଶୁ ବ୍ୟବସ୍ଥା କଲେ। ମଝି ସିଟ୍‌କୁ ଉପରକୁ ଉଠାହେଲା। ସଭା ଉପର ଦୁଇଟି ସିଟ୍‌ରେ ହିଂମାଶୁ ଏବଂ ପପୁଲୁ ଶୋଇଲେ କମ୍ବଳକୁ ପାଖରେ ଧରି। ମଝି ଦୁଇଟା ସିଟ୍‌ରେ ମୁଁ ଏବଂ ବବୁଲୁ ଶୋଇଲୁ। ତଳ ସିଟ୍ ଦୁଇଟାରେ ଶୈଳବାଳା ଏବଂ ମିମିତା ଶୋଇଲେ। ନିଦ ଆଖିକୁ ଆସୁ ନଥାଏ। ତଥାପି ଦେହଟାକୁ ବିଶ୍ରାମ ଦରକାର। ରାତ୍ରି ସହିତ ଟ୍ରେନ୍‌ର ଗତି ବଢ଼ି ଚାଲିଥାଏ। ଦିଲ୍ଲୀ ସହର ଆଉ ଦେଖାଯାଉନାହିଁ। କିଛି ଆଲୁଅର କ୍ଷୀଣ ପ୍ରଭା ଦିଶୁଛି। ଆମେମାନେ ଶୋଇଗଲୁ ଆରାମରେ।

ସକାଳ ହେଲା ଆହ୍ଲାବାଦ ସହରରେ। ନିଜର ନିତ୍ୟକ୍ରମ ଟ୍ରେନ୍‌ରେ କଲୁ। ଦାନ୍ତ ଘଷିବା ପରେ ଟ୍ରେନ୍ ଭିତରକୁ ଚା' ଆସିଥିଲା। ଗୋଟିଏ କପ୍ ଚା' ପିଇଲା

ପରେ ମନରେ ବିଶେଷ ଶାନ୍ତିଭାବ ଆସିଥିଲା । ହିଂମାଶୁ ବେଶୀ ଚା' ଖାଆନ୍ତିନି । ତଥାପି ମଝିରେ ମଝିରେ ଚା' ହେଲେ ମନା କରନ୍ତି ନାହିଁ । ପିଲାମାନେ କିଛି ଜଳଖିଆ ଖାଇଲେ । କ୍ରମଶଃ ଦିନର ବେଗ ବଢ଼ିବାକୁ ଲାଗିଲା । ଗ୍ରୀଷ୍ମର ପ୍ରବଳ ତାପ ବାହାରେ ଅନୁଭୂତ, ହେଉଥିଲା ବିଶେଷକରି ପ୍ଲାଟ୍‌ଫର୍ମରେ । ଉତ୍ତରପ୍ରଦେଶ ସରିଲା ପରେ ଆମେ ବିହାର ରାଜ୍ୟରେ ପଶିଲୁ । ଶେଷକୁ ଟାଟା ଅତିକ୍ରମ କରି ଖଡ଼ଗ୍‌ପୁରରେ ପହଞ୍ଚିଲୁ ରାତ୍ରି ପ୍ରାୟ ଆଠଟା ବେଳକୁ । ଦିନବେଳା ଲଞ୍ଚ୍ ଖାଇଥିଲୁ ଟ୍ରେନ୍‌ରେ । ରାତିରେ ଆଉ ବିଶେଷ କିଛି ଖାଇବାକୁ ଇଚ୍ଛା କାହାର ନ ଥିଲା । ଗାଡ଼ି ଷ୍ଟେସନ୍ ଛାଡ଼ିଲା ରାତି ନଅଟାରେ । ଓଡ଼ିଶାର ବାଲେଶ୍ୱରରେ ପହଞ୍ଚିଲା ବେଳକୁ ରାତି ପ୍ରାୟ ବାରଟା ହୋଇଯାଇଥିଲା । ଶୋଇପଡ଼ିଲୁ । ନିଦ ଭାଙ୍ଗିଲାବେଳକୁ ଟ୍ରେନ୍ ଚାଲିଛି ମହାନଦୀ ପୋଲ ଉପରେ । କିଛିସମୟ ପରେ କଟକ ଷ୍ଟେସନ୍ ହେଲା । ସମସ୍ତେ ଉଠି ଜିନିଷପତ୍ର ଠିକ୍‌ଠାକ୍ କରିନେଲୁ । କଟକରେ ପ୍ରାୟ ବଡ଼ି ସକାଳ ହୋଇଥିଲା । ସଙ୍ଗେସଙ୍ଗେ ନିତ୍ୟକ୍ରମ ସାରିଦେଲୁ । ଗୋଟିଏ ଗୋଟିଏ କଫି ପିଇଲୁ । ପିଲାମାନେ ଅଳ୍ପ ପିଇଲେ । ଦେହମୁଣ୍ଡ ତାଜା ହୋଇଗଲା । ଟ୍ରେନ୍ କଟକ ଷ୍ଟେସନ୍ ଛାଡ଼ିଲା । ଆଗରେ ଭୁବନେଶ୍ୱର ଷ୍ଟେସନ୍ ପଡ଼ିବ । ମନ ସମସ୍ତଙ୍କର ଖୁସି । ପପୁଲୁର ଦେହ ଭଗବାନଙ୍କ କୃପାରୁ ପୂରାପୂରି ଭଲ ଅଛି । ଦଶଦିନର ପ୍ରୋଗ୍ରାମ୍ ଆଉ କିଛି ସମୟ ପରେ ଶେଷ ହେବ ।

ଚାହୁଁ ଚାହୁଁ ଟ୍ରେନ୍ ଆସି ଭୁବନେଶ୍ୱର ଚାରିନମ୍ବର ପ୍ଲାଟ୍‌ଫର୍ମରେ ଲାଗିଲା । ସମସ୍ତେ ଲଗେଜ୍ ଧରି ଓହ୍ଲାଇଲୁ । ବୁବୁ ଆସିଥିଲା ଷ୍ଟେସନ୍‌କୁ ଆମ ଦୁଇଜଣଙ୍କୁ ନେବାପାଇଁ । ହିଂମାଶୁଙ୍କର ଗୋଟିଏ ଟ୍ୟାକ୍ସି ଆସି ପହଞ୍ଚିଲା । ଭୁବନେଶ୍ୱର ପ୍ଲାଟ୍‌ଫର୍ମରୁ ଜିନିଷପତ୍ର ଧରି ବାହାରକୁ ଆସିଲୁ । ବୁବୁ ଏବଂ ହିଂମାଶୁ କିଛି କଥାବାର୍ତ୍ତା ହେଲେ । ମମି ଏବଂ ପିଲାମାନେ ମାମୁଙ୍କୁ ଗୋଡ଼ ଛୁଇଁ ନମସ୍କାର କରିଥିଲେ ।

ବାହାରକୁ ସମସ୍ତେ ଆସିଲୁ । ହିଂମାଶୁ, ମମି ଏବଂ ପିଲାମାନଙ୍କୁ ଆମର ଶୁଭେଚ୍ଛା ଏବଂ ଆଶୀର୍ବାଦ ଦେଲୁ । ସେମାନେ ଗୋଡ଼ ଛୁଇଁ ନମସ୍କାର କରି ଆସିଥିବା ସେହି ଟ୍ୟାକ୍ସିରେ ବସିଲେ । ସେମାନଙ୍କୁ ହାତ ହଲାଇ ବିଦାୟ ଦେଲୁ ।

ଦେବାଶିଷଙ୍କ ଗାଡ଼ିରେ ନେଇ ଆମର ଜିନିଷପତ୍ର ଭରି କରିଦେଲା । ଆମେ ଦୁହେଁ ତା'ରି କାର୍‌ରେ ବସି ଗୃହ ଅଭିମୁଖେ ବାହାରିଲୁ । ସେତେବେଳକୁ ପ୍ରାୟ ଦିନ ୬.୩୦ ମିନିଟ୍ ହେବ ।

କାର୍ ଚଳାଇଲା ଜୟଦୁର୍ଗା ଅଭିମୁଖେ । ବାଟରେ ବୁଢେଶ୍ୱରୀ ମନ୍ଦିର ପାଖରେ କାର୍ ଅଟକାଇଲୁ । ଘରେ କିଛି ପନିପରିବା ନାହିଁ । ଏହି ସ୍ଥାନରୁ କିଛି ତଟକା ପନିପରିବା ନେବା କହି ଗାଡ଼ିରେ ଆମେ ଦୁହେଁ ବସିଲୁ । ସେ ଗଲା ପରିବା କିଣିବାକୁ । ତଟକା ପରିବା ଏଠାରେ ପ୍ରତିଦିନ ସକାଳେ ମଫସଲ ଗାଁର ଲୋକ, ବ୍ୟବସାୟୀମାନେ ଆଣି ବିକନ୍ତି । ଦେଖିଲୁ ଏହାଭିତରେ ଦେବାଶିଷର ଘରକରଣା ପ୍ରତି ଧ୍ୟାନ ଦେଇଛି । ତଟକା ପନିପରିବାରେ ବାଇଗଣ, କଖାରୁ, ଭେଣ୍ଡି, ଜହ୍ନି, ପୋଟଳ, କଞ୍ଚା କଦଳୀ ଏବଂ ତଟକା କୋଶଳା ଶାଗ ଦୁଇବିଡ଼ା କିଣିଛି । ଏହାପରେ କାର୍ ଚଳାଇଲା ସନ୍ତୋଷୀମାତା ନିକଟସ୍ଥ ଦୋକାନକୁ । ସେଠାରୁ ସରକାରୀ କ୍ଷୀର ତିନି ପ୍ୟାକେଟ୍ କିଣିଲି । ସେଠି ସେ ଅସ୍ତବ୍ୟସ୍ତ ହୋଇ ତା'ର ମନିପର୍ସ ଖୋଜିବାକୁ ଲାଗିଲା । ଦୋକାନୀ ପାଖକୁ ଗଲା । ସେ ମନିପର୍ସ ଦେଖିନାହିଁ କହିଲା । ଆମମାନଙ୍କର ଉତ୍କଣ୍ଠା ବଢ଼ିବାକୁ ଲାଗିଲା । ଭଲଭାବରେ ଗାଡ଼ିର ତଳ ସିଟ୍ ଦେଖିବାକୁ ଲାଗିଲା । ତା'ର ମୁହଁ ଉଜ୍ଜ୍ୱଳ ଦିଶିଲା । ବହୁତ ତଳକୁ ନଇଁ ସିଟ୍ ତଳୁ ମନିପର୍ସଟି ବାହାର କରିଲା । ତା' ଅନ୍ୟମନସ୍କରେ ମନିପର୍ସଟି କାର୍ ଉପରେ ରଖିଥିଲା । ପର୍ସ ଜର୍କିଂରେ ଖସିପଡ଼ି ତଳକୁ ଚାଲିଯାଇଥିଲା । ଘରମୁହାଁ ହେଲୁ । ସେ ମଧ୍ୟ ପାଖ ମିଠାଦୋକାନରୁ ବରା, ପୁରି, ତରକାରି ନେଇ ଆସିଥିଲା ସକାଳ ଜଳଖିଆ ପାଇଁ ।

ଜୟଦୁର୍ଗା ନଗର ପ୍ଲଟ୍ ନମ୍ବର ୧୮୪ (ଏଫ୍) ରେ ପହଞ୍ଚିଲାବେଳକୁ ସାଢ଼େ ସାତଟା ବାଜି ଯାଇଥିଲା । ନାତି ବିଭାନ୍ ଦାଣ୍ଡ ଦୁଆରରେ ଠିଆହୋଇ ଆମକୁ ସ୍ୱାଗତ କରିଥିଲା । ଜିନିଷପତ୍ର, ପରିବାପତ୍ର, ଜଳଖିଆ କାର୍‌ରୁ ଆଣିଲୁ । ବିଭନ୍ ଦୌଡ଼ିଆସି ଆମକୁ ଗୋଡ଼ ଛୁଇଁ ନମସ୍କାର କଲା । ତା'ର ମୁହଁକୁ ଚାହିଁଲୁ ଏବଂ ଆଶୀର୍ବାଦ ଦେଲୁ । କିଛି ଜିନିଷ ସେ ବୋହିନେଲା ଘରକୁ ।

ଘରର ଉପର ମହଲାରେ ସମସ୍ତେ, ଆମେଦୁହେଁ ଦେବାଶିଷ ତା'ର ସ୍ତ୍ରୀ

ନିରୂପମା ଏବଂ ନାତି ବିଦ୍ୟମାନ ରହୁଛୁ । ଉପର ମହଲାରେ ଦୁଇଟି ରୁମ୍ ଡାଣ୍ଡଘର, ରୋଷେଇଘର ଏବଂ ଗୋଟିଏ ଗାଧୁଆଘର ଅଛି । ରୁମ୍ ଦୁଇଟିରେ ଏ.ସି. ଲାଗିଛି । ବଡ଼ ରୁମ୍‌ଟିରେ ପୁଅ ବୋହୂ ଏବଂ ନାତି ବିଭନ୍ ରହୁଛି । ସେହି ଘରେ ତା'ର ବହିପତ୍ର ରଖୁଛି । ଚତୁର୍ଥ ଶ୍ରେଣୀ ହେଲା । କେନ୍ଦ୍ରୀୟ ବିଦ୍ୟାଳୟ ରାମମନ୍ଦିର ପାଖରେ ଅବସ୍ଥିତ । ପାଠ ପଢ଼ିବାକୁ ଅଟୋରେ ଯିବାଆସିବା କରେ ।

ଆମେ ଆସିବାର ଦେଖି ବିଭନ୍ ଭାରି ଖୁସି ହୋଇଗଲା । ଘର ଭିତରକୁ ଗଲୁ । ବୋହୂ ଲିନୁ ଆସି ଗୋଡ଼ଛୁଇଁ ମୁଣ୍ଡିଆ ମାରିଲା । ତାକୁ ଆଶୀର୍ବାଦ ଦେଲୁ । ଜିନିଷପତ୍ର ଗୋଟିଏ କୋଣରେ ରଖିଲୁ । ମୁଁ ଗାଧୁଆ ଘରକୁ ଯାଇ ଗୋଡ଼ ହାତ ଧୋଇ ଆସିଲି । ଏହା ଭିତରେ ଶୈଳବାଳା ବାକ୍ସ ଫିଟାଇ ବିଭନ୍‌କୁ ଗୋଟିଏ ଖେଳନା ସହ ଟି. ସାର୍ଟ ଏବଂ ଲିନୁକୁ ଗୋଟିଏ ଶାଢ଼ୀ, ନାଇଟି ଦେଇଥିଲେ । ଦେବାଶିଷ ଆସି ପ୍ୟାଣ୍ଟସାର୍ଟ ବଦଳାଇ ଚା' କପ୍‌ରେ ମୁହଁ ଲଗାଇ ଆଜିର ସମ୍ବାଦପତ୍ର ପଢ଼ିବାକୁ ଲାଗିଲା ।

ମୁଁ ଆଶ୍ୱସ୍ତିର ସହ ପ୍ୟାଣ୍ଟସାର୍ଟ ଖୋଲି ଗୋଟିଏ ଧଳା ଲୁଗା ଗଞ୍ଜି ପିନ୍ଧି ଡାଣ୍ଡଘର ସୋଫାରେ ବସିପଡ଼ିଲି । ବିଭନ୍ ମୋ ମୁହଁକୁ ଚାହିଁ କିଛି ପ୍ରଶ୍ନ ପଚାରୁଥିଲା ।





ଇଂ. ଗୌରଚନ୍ଦ୍ର ମହାପାତ୍ର, ୧୯୩୯ ମସିହା ମଇ ମାସ ୧୪ ତାରିଖରେ ନୟାଗଡ଼ ଜିଲ୍ଲା ରଣପୁର ଗଡ଼ରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ପିତା ସ୍ୱର୍ଗୀୟ ନରସିଂହ ମହାପାତ୍ର ଜଣେ ପ୍ରତିଷ୍ଠିତ ଓକିଲ, ସରପଞ୍ଚ ଏବଂ ସମାଜସେବୀ ହିସାବରେ ପରିଚିତ। ତାଙ୍କର ମାତା ସ୍ୱର୍ଗୀୟା ଚଞ୍ଚଳା କୁମାରୀ ମହାପାତ୍ର, ଜଣେ ସତ୍ୟନିଷ୍ଠ, ପରୋପକାରୀ, ଧର୍ମପ୍ରାଣା ମହିଳା ଥିଲେ। ତାଙ୍କର ଶ୍ୱଶୁର ସ୍ୱର୍ଗୀୟ ଭାସ୍କର ଶତପଥୀ ଅବସରପ୍ରାପ୍ତ ହେବା ପର୍ଯ୍ୟନ୍ତ ପ୍ରଖ୍ୟାତ କଟକ ରେଭେନ୍ସା କଲେଜିଏଟ୍ ସ୍କୁଲର ଆଦର୍ଶ ଭୂଗୋଳ ଶିକ୍ଷକ ଥିଲେ ଏବଂ ରାଜ୍ୟପାଳ ପୁରସ୍କାରପ୍ରାପ୍ତ ଶିକ୍ଷକ ରୂପେ ଗଣା ହୋଇଥିଲେ। ମାଡ୍ରାସରୁ ଇଂଜିନିୟରିଂ ଶିକ୍ଷା ସମାପ୍ତ ପରେ ଓଡ଼ିଶା ସରକାରଙ୍କର ଜାତୀୟ ରାଜପଥ, ପୂର୍ତ୍ତବିଭାଗ ଓ ଗୃହନିର୍ମାଣ ସଂସ୍ଥାରେ ଡେପୁଟି ଜେନେରାଲ ମ୍ୟାନେଜର ହୋଇ ୧୯୯୭ ମସିହାରେ ଅବସର ଗ୍ରହଣ କରିଥିଲେ। ବିଶ୍ୱବ୍ୟାଙ୍କ ସହାୟତାରେ ସ୍ୱାସ୍ଥ୍ୟବିଭାଗ ଦ୍ୱାରା ହେଉଥିବା ଖୋର୍ଦ୍ଧା, ନୟାଗଡ଼ ଓ ଫୁଲବାଣୀରେ ଅବସ୍ଥାପିତ କେତେଗୁଡ଼ିଏ ଡାକ୍ତରଖାନାର ଗୃହନିର୍ମାଣ ସଂପ୍ରସାରଣ ଓ ମରାମତି କାର୍ଯ୍ୟ ସୁଚାରୁରୂପେ ପରିଚାଳନା କରି ସମ୍ପୂର୍ଣ୍ଣ କରିଥିଲେ।

ଇଂ. ମହାପାତ୍ରଙ୍କର ୨୦୦୪ ମସିହାରେ ପ୍ରକାଶିତ ହୋଇଥିଲା 'କବିତାର ସ୍ନେହ ପୁଷ୍ପଗୁଚ୍ଛ' ଏବଂ ୨୦୦୬ରେ ଉପନ୍ୟାସ ପୁସ୍ତକ 'ଆହତ ମୂର୍ଚ୍ଛନା ଓ ଅସ୍ତିତ୍ୱରେ ଅଶିକ୍ଷିତା'। ଛାତ୍ରାବସ୍ଥାରୁ ଶ୍ରୀ ମହାପାତ୍ର ଲେଖାଲେଖିରେ ମନୋନିବେଶ କରୁଥିଲେ। ମାନ୍ଦ୍ରାଜ ଉତ୍କଳ ସମାଜ ଦ୍ୱାରା ପ୍ରାୟୋଜିତ ସଂସ୍କୃତି ସମାରୋହରେ ଅଂଶଗ୍ରହଣ କରି ସ୍ୱର୍ଗୀୟ ରାଜଗୋପାଳଚାରୀଙ୍କ ସ୍ୱହସ୍ତରୁ ଉତ୍କୃଷ୍ଟ ଓଡ଼ିଆ ଗଳ୍ପ ଏବଂ ଇଂରାଜୀ କବିତା ରଚନାପାଇଁ ପୁରସ୍କୃତ ହୋଇଥିଲେ।

ଜୀବନର ସାମଗ୍ରିକ କୃତିତ୍ୱ ପାଇଁ ନୂଆଦିଲ୍ଲୀସ୍ଥ ଜାତୀୟ ଏକତା ଏବଂ ବନ୍ଧୁତ୍ୱ ସମାଜ **(Society for Friendship & National Unity)** ତରଫରୁ **"Vikas Ratna Shiromani Award" and "Certificate of Excellence"** ସମ୍ମାନରେ ଶ୍ରୀ ମହାପାତ୍ର ଭୂଷିତ ହୋଇଛନ୍ତି।

-ପ୍ରକାଶିକା